ପ୍ରାଚୀ ଗ୍ରନ୍ଥମାଳା

ସପ୍ତଚତ୍ୱାରିଂଶ

# ବିଦଗ୍ଧ-ଚିନ୍ତାମଣି

ଅଭିମନ୍ୟୁ

## ତୃତୀୟ ଖଣ୍ଡ




ଉତ୍କଳ ବିଶ୍ୱବିଦ୍ୟାଳୟ

Digitized by srujanika@gmail.com

An

Authenticated Edition

of

# VIDAGDHA-CHINTAMONI

by

**ABHIMANYU SAMANTASINHAR**

Edited with different reading, introduction
and notes by Rai Bahadur Prof. A. B. Mohanti, M. A.

## Part III

# ବିଦଗ୍ଧ-ଚିନ୍ତାମଣି

ରସିକଭକ୍ତ କବିବର ଅଭିମନ୍ୟୁ ସାମନ୍ତସିଂହାର ବିରଚିତ

**ତୃତୀୟ ଖଣ୍ଡ**

ବିଶୁଦ୍ଧ ଦ୍ୱିତୀୟ ସଂସ୍କରଣ

୧୯୫୦

ବିଭିନ୍ନପାଠ, ମୁଖବନ୍ଧ ଓ ଟୀକାସହ ରେଭେନ୍ସା କଲେଜର ଅଧ୍ୟାପକ
**ରାଏ ବାହାଦୁର ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି,** ଏମ୍. ଏ.ଙ୍କ ଦ୍ୱାରା
ସଙ୍କଳିତ

ପ୍ରକାଶକ

**ଉତ୍କଳ ବିଶ୍ୱବିଦ୍ୟାଳୟ**

ବର୍ଦ୍ଧିତ ମୂଲ୍ୟସହ ଏକଟଙ୍କା ଆଠଅଣା ମା। ୫

Digitized by srujanika@gmail.com

# ବିଦଗ୍ଧ-ଚିନ୍ତାମଣି



## ସପ୍ତଚତ୍ୱାରିଂଶ ଛାନ୍ଦ

---

### ଶ୍ରୀକିଶୋରୀଜୀଙ୍କ ସଖୀପ୍ରତେ ବନଦର୍ଶନ
### ଶ୍ରୀକୃଷ୍ଣ ଶୋଭା କଥନ

ରାଗ—କେଦାର ଗଉଡ଼ା

ପ୍ରଶସ୍ତରେ ଦୁଃଖୀ ହୋଇ ପକ୍ଷ୍ମଲାକ୍ଷୀ ସଖୀ ପାଣି ଧୀରେ ଧରେ ।
ଆନନ୍ଦ ଉତ୍କଣ୍ଠା ଗଦ୍‌ଗଦ ପିଶାଚ କହନ୍ତି ଲାଳସା ଭରେ । ଗୋ ମିତ ।
ଚନେକି ଶୋଭା ଦେଖିଲୁଟି ଗୋ ।
ସେ ତ ମଦନ ସାମନ୍ତ ସତ ଗୋ । ମନ ଧନ ଚୋର ପରତେକ ଗୋ । ୧ ।
କଳାକଞ୍ଜ ଦଳାଅଞ୍ଜନ ମର୍କତ ଇନ୍ଦ୍ରନୀଳମଣି ଘନ ।
ସୁଧା ଆନନ୍ଦ ଆହ୍ଲାଦ ମାଦକ ଶୃଙ୍ଗାର ପ୍ରେମ ମିଳନ । ଗୋ ମୁଖି ।
ଶୋଭାସମୁଦ୍ର-ମନ୍ଥା ଲବଣୀ ଗୋ ।
କୋଟି ସୃଷ୍ଟି କାନ୍ତି ସାରଶ୍ରେଣୀ ଗୋ । ମହା ଲାବଣ୍ୟ-ରତନ ଖଣି ଗୋ ॥

---

୧ । ପକ୍ଷ୍ମଲାକ୍ଷୀ—ସୁନ୍ଦର ପତା ଥିବା ଆଖି ଯାହାର, ସେ । ଆନନ୍ଦ (କୃଷ୍ଣଙ୍କୁ ଦେଖି), ଉତ୍କଣ୍ଠା ( ତାଙ୍କୁ ପାଇବାକୁ ), ଗଦ୍‌ଗଦ (ତାଙ୍କୁ ନ ପାଇବା ଦୁଃଖରେ) ପିଶାଚ ଲାଳସା କରି (ଖୁବ୍ ବେଶୀ ଇଚ୍ଛା ) କହନ୍ତି । ସତ—ସତରେ, ପ୍ରକୃତରେ । ମଦନ ସାମନ୍ତ—କନ୍ଦର୍ପ ରଜା ବା ମଦନର ପ୍ରଭୁ ।

୨ । କଳାକଞ୍ଜ—ନୀଳପଦ୍ମ । ଦଳା—ଟିପଣା ହୋଇଥିବା । ମର୍କତ—ପୀତ ଓ ଶ୍ୟାମବର୍ଣ୍ଣର ମଣି । ଇନ୍ଦ୍ରନୀଳମଣି—ଗାଢ଼ ନୀଳରଙ୍ଗର ମଣି । ଘନ—ମେଘ । କୃଷ୍ଣ ଏମାନଙ୍କ ପରି କଳା । ସୁଧା—(ଅମୃତ) ଆନନ୍ଦ, ଆହ୍ଲାଦ, ମାଦକ, ଶୃଙ୍ଗାର ଓ ପ୍ରେମର ମିଳନ ଅର୍ଥାତ୍ ଏମାନେ ସମସ୍ତେ ଏକାଠି ମିଳିଅଛନ୍ତି । ଶୋଭା······ଲବଣୀ—ଶୋଭା ହେଲା ସମୁଦ୍ର ପରି । ତାକୁ ମନ୍ଥିବାରୁ ଯେଉଁ ଲହୁଣୀ ହେଉଛି, ତାହାର ପରି । କୋଟି···ଶ୍ରେଣୀ—କୋଟିଏ ସଂସାରର ସାର ଶୋଭା ଅର୍ଥାତ୍

Digitized by srujanika@gmail.com

କେତେ କାଳ କଳି କଳି ବିଧି ସିଦ୍ଧି କଲା ବିରଚନ ପ୍ରତିମା ।
ମୋହନ ମନରେ ଜୀବନ୍ୟାସ କରି ଭୂଷିତ ନଲ ବରିମା । ଗୋ ଭାବ ।
କଲା ଲଳିତ-ମାଧୁର୍ଯ୍ୟାର୍ଣ୍ଣବ ଗୋ ।
ହେଲା ଗୁଣନିଧି ରଖା ଠାବ ଗୋ । ମାର ଦେବାର୍ଚ୍ଚନ ଦେବ ହେବ ଗୋ ।
କେତକୀ ପାଖୁଡ଼ା ଚୋଟି ମଲ୍ଲୀ-ବେଢ଼ା ଚୂଡ଼ା ଭୁଲାଉଛି ଘର ।
ଅର୍ଦ୍ଧଚନ୍ଦ୍ରକ ପରେ କେକୀଚନ୍ଦ୍ରକ ଧାରି ଦେଉଛନ୍ତି ସଂସାର । ଗୋ ତହିଁ ।
ନବ ଜାମ୍ବୁଡାଳ ଶୋଭା କେଡ଼େ ଗୋ ।
ଖଞ୍ଜା ଗୁଞ୍ଜା ଗୁଞ୍ଜର ମୁଣ୍ଡହିଁ ଗୋ । ପୁଷ୍ପସ୍ତବ ତୋରା ଲକ୍ଷ କାହିଁ ଗୋ । ୪ ।
ଲଳିତ ମାଧୁର୍ଯ୍ୟ ଆହ୍ଲାଦ ପ୍ରଦାନ ସୁଧା ସ୍ୱାଦୁ ଗୁଣ ଧାଳା ।
କୋଟିପର୍ବ ଶର୍ବରୀଶ ଖର୍ବ କରି ମୁଖ ଦେଖା ଦନୁ ହେଲା । ଗୋ ଯେଣୁ ।
ତହିଁ କଳଙ୍କ, ଏ ଚିହ୍ନହୀନ ଗୋ ।
ସେ ତ କ୍ଷୟୀ ଏ ଅକ୍ଷୟ ସ୍ୱାଦୁ ଗୋ । କଳା-କର ସେ, ଏ କଳାପୂର୍ଣ୍ଣ । ଗୋ । ୫ ।
୩-୧—କେତେକାଳ କଳି ବିଧି ସିଦ୍ଧି କଲା ବିରଚନ ତାର ପ୍ରତିମା କ, ଖ ।

---

ସବୁ ଶୋଭାର ସାର କୃଷ୍ଣଙ୍କଠାରେ ଏକାଠି ହୋଇଅଛି । ହେଲା......ଖଣି— ରତନମାନ ଖଣିରେ ଥାଏ । ଭଲ ଲାବଣ୍ୟ ହେଲା ରତନ । କୃଷ୍ଣ ତାର ଖଣି ।

୩ । ବିଧି—ବିଧାତା, ବ୍ରହ୍ମା । କଳି କଳି—ବିଗୁଣ କରି କରି । ସିଦ୍ଧି କଲା—ଗଢ଼ିଲା । ବରିମା—ସୌନ୍ଦର୍ଯ୍ୟ ଠାଣିରେ । ଲଳିତ—ସୁନ୍ଦର, ମାଧୁର୍ଯ୍ୟ— ଶୋଭାର ଅର୍ଣ୍ଣବ—ସମୁଦ୍ର-କଲା । କୃଷ୍ଣଙ୍କ ମୂର୍ତ୍ତି ଲଳିତ ଓ ମଧୁର ଥିଲା । ହେଲା ......ଠାବ—ଗୁଣମାନ ହେଲା ନିଧି ଯେଣୁ: କୃଷ୍ଣ ହେଲେ ସେଗୁଡ଼ିକର ରହିବା ସ୍ଥାନ । ମାର......ଦେବ—କନ୍ଦର୍ପଙ୍କର ମଧ୍ୟ ପୂଜା କରିବାର ଦେବତା ଅର୍ଥାତ୍ କୃଷ୍ଣ କାମଠାରୁ ବେଶୀ ସୁନ୍ଦର ।

୪ । କେତକୀ ଫୁଲର ପାଖୁଡ଼ା ଓ ଚୋଟା ମଲ୍ଲୀଫୁଲ ଗୁନ୍ଥ ପାଖରେ ଦିଆ ହୋଇଥିବା ଚୂଡ଼ା ବା ଜୂଡ଼ା ଘର ଭୁଲାଉଛି ଅର୍ଥାତ୍ ତାକୁ ଦେଖି ଗୋପୀମାନେ ଭୁଲି ଯାଉଛନ୍ତି । ଅର୍ଦ୍ଧଚନ୍ଦ୍ରକ—କପାଳ କମ୍ପା ଲାଗିଏ ଗହଣା । କେକୀଚନ୍ଦ୍ରକ— ମୟୂର ଚନ୍ଦ୍ରିକା । ଗୁଞ୍ଜ—କାଇଁଚ । ଗୁଞ୍ଜର—ଡେଣା ବା ମାଳୀ । ମୁଣ୍ଡହି—ମୁଣ୍ଡରେ । ପୁଷ୍ପସ୍ତବ ତୋରା—ଫୁଲଥୋପର ଶୋଭା । ଲକ୍ଷ—ତୁଳନା ।

୫ । ସ୍ୱାଦୁ—ସୁନ୍ଦର । କୋଟି...ଖର୍ବ—କୋଟିଏ ପୁନେଇ ଜହ୍ନର ବଡ଼ାଇ ଭାଙ୍ଗିଦେଲା । କଳଙ୍କ—ଦୋଷ ବା ମୃଗ ଚିହ୍ନ । ଚିହ୍ନହୀନ—ନିର୍ଦ୍ଦୋଷ । ତହିଁ— ଜହ୍ନରେ । ସେହି ଦିନକୁ ଦିନ (କ୍ଷୟୀ) ଊଣା ହୁଏ ବା କ୍ଷୀଣ ହୁଏ, କିନ୍ତୁ କୃଷ୍ଣଙ୍କ ମୁହଁ ସବୁଦିନେ ସମାନ । କଳାକର—ଷୋଳକଳାଯୁକ୍ତ । କଳାପୂର୍ଣ୍ଣ—୬୪ କଳାଯୁକ୍ତ ।

Digitized by srujanika@gmail.com

ନିନ୍ଦାଇବାକୁ ଇଚ୍ଛା କି କରିବ ଅମଳ କଳାକମଳ ।
ଆନନ ପ୍ରସନ୍ନ ବିଶ୍ୱଜନମନମୋହନ ମାଦକ ସ୍ଥଳ । ଗୋ ସଖି ।
ଭଙ୍ଗୀ କେମନ ନାହିଁ କି ଦେଖି ଗୋ ।
ସୁଖ ମୁକୁତକ ମୂର୍ଚ୍ଛିବ ଅଙ୍ଗ ଗୋ । ଧିକ ଯେ ବୋଲେ ମୁକୁର ଲକ୍ଷି ଗୋ ।୬।
ଲୀଳ ବ୍ୟାଜ ଓଜ ଗାମ୍ଭୀର୍ଯ୍ୟ ଭଙ୍ଗିମା ପ୍ରସନ୍ନାଚ୍ଛନ୍ନ ଘୂର୍ଣ୍ଣନ ।
ଶ୍ରୀ ମୃଦୁ ମାଦକ ଲାଳସ ଅଳସ ପ୍ରୀତି ଲୋଳ ଲୀଳା ସ୍ଥାନ । ଗୋ ନେତ୍ର ।
ସୁଧା ଅନୁରାଗ କଳାପାତ୍ର ଗୋ ।
ଚିତ୍ର ଶତପତ୍ର ଗୋତ୍ର ମିତ୍ର ଗୋ । ଲକ୍ଷ ଲକ୍ଷ ଲକ୍ଷ୍ୟ ମୋକ୍ଷ କ୍ଷେତ୍ର ଗୋ ।୭।
ବିଷାମୃତ ମିଶା ବିଷମ ବିଶିଖ ଚଞ୍ଚଳ ଗତି ଗୃତୁସି ।
ଦୃଷ୍ଟି ବୃଷ୍ଟି ହେବା କୋଟି ନୂଆ ସୃଷ୍ଟି ପ୍ରଳୟ ପାରଇ କରି । ତା ଡୋଳା ।
ରଣି ତୁରଙ୍ଗ ତରଙ୍ଗ ଲୀଳା ତା ।
ଖେଳା-ଖଞ୍ଜନ-ରଞ୍ଜନ କଳା ତା । ରଙ୍ଗେ କୁରଙ୍ଗେ ନୋହିବେ ତୁଳା ତା ॥

---

୬ । ଅମଳ କଳା କମଳକୁ—ସୁନ୍ଦର ନୀଳପଦ୍ମକୁ ନିନ୍ଦାଇବାକୁ—ହରାଇବାକୁ ଅର୍ଥାତ୍ କୃଷ୍ଣଙ୍କ ମୁଖ ସଙ୍ଗେ ତୁଳନା କରିବାକୁ ଇଚ୍ଛା କରିବ କି ? କରିବ ନାହିଁ । ବିଶ୍ୱଜନମନମୋହନ ମାଦକ ସ୍ଥଳ—ସବୁଲୋକଙ୍କ ମନକୁ ମୋହିଦିଏ ଓ ପାଗଳ କରିଦିଏ । ମୂର୍ଚ୍ଛିବ—ଗଢ଼ିବ । ସୁଖମୁକୁତକ—ସୁଖକର ସୁବର୍ଣ୍ଣର ପଦାର୍ଥ ଯେ ମୁଖ । ଧିକ......ଲକ୍ଷି—ଆରସିକୁ ତୁଳନା କରିବାକୁ ଯେ କହେ ତାକୁ ଧିକ୍ ।

୭ । ବ୍ୟାଜ—ବାହାନା । ଓଜ—ମନର ଟାଣ । ଗାମ୍ଭୀର୍ଯ୍ୟ—ଗମ୍ଭୀରପଣ । ଭଙ୍ଗିମା—ଠାଣି । ପ୍ରସନ୍ନ—ଆନନ୍ଦ । ଆଚ୍ଛନ୍ନ—ଭାବରେ ତନ୍ମୟ । ଘୂର୍ଣ୍ଣନ—ଘୂରାଇବା । ଶ୍ରୀ—ଶୋଭା । ମୃଦୁ ମାଦକ—ଅଳ୍ପ ନିଶା କରାଇବା । ମଦ—ଦର୍ପ । ଲାଳସ—ବେଶି ଇଚ୍ଛା । ଅଳସ—ଅଳସପଣ । ଲୋଳ—ଚଞ୍ଚଳତା । ଲୀଳା—ବିଳାସ ଖେଳା । ସେ ନେତ୍ର ଏ ସବୁର ସ୍ଥାନ ଅଟେ । ସୁଧା—ଅମୃତ । ଅନୁରାଗ—ସ୍ନେହ । କଳାପାତ୍ର—କଳାବଦାର ସ୍ଥାନ ବା କୃଷ୍ଣବର୍ଣ୍ଣର ଆଧାର । ଚିତ୍ର—ନାନାରଙ୍ଗର । ଶତପତ୍ର ଗୋତ୍ର ମିତ୍ର—ପଦ୍ମଜାତିର ମିତ୍ର ଅର୍ଥାତ୍ ସେ ଆଖି ନାନାରଙ୍ଗର ପଦ୍ମ ପରି ସୁନ୍ଦର । ଆଖିରେ ଅଳ୍ପ ଲାଲ, କଳା ଓ ଧଳା ରଙ୍ଗ ଥିବାରୁ ଏଠାରେ ନାନା-ରଙ୍ଗର ପଦ୍ମ ସଙ୍ଗେ ତୁଳନା କରା ଯାଇଅଛି । ଲକ୍ଷ ଲକ୍ଷ ମୋକ୍ଷର ଅର୍ଥାତ୍ ଅନେକ ଅନେକ ମୁକ୍ତିର ଲକ୍ଷ୍ୟ ଅର୍ଥାତ୍ ଉଦ୍ଦେଶ୍ୟ ବା ସ୍ଥାନ । ସୁଧା—ଧଳା, ଅନୁରାଗ—ଲାଲ; କଳା—କାଳିଆ ।

୮ । ବିଷ ଓ ଅମୃତ—କଳା ଓ ଧଳା ଥିବାରୁ ମିଶିଥିବା ବିଷମ—ବିଶିଖ ବାଣର ଚଞ୍ଚଳ ଗତାଗତ ପରି ଆଖିର ଛଟକ । ଦୃଷ୍ଟି ବୃଷ୍ଟି ହେବାରେ—ଆଖି

Digitized by srujanika@gmail.com

ରାଗାମୃତ ବୋଳା କଳାପଦ୍ମ ତୁଳା ବୋଲିବାର କେଉଁ ଅଣି ।
ବୁଲାଇବା ବେଳେ ଭୁଲାଇବା କେହ୍ନ କାମ କୁତୁକସାରଣୀ । ଗୋ ମିତ ।
ଭାତି-ଭୂତି ମୂର୍ତ୍ତିବନ୍ତ ସେ ତ ଗୋ ।
କୋଟି ଲକ୍ଷ୍ମୀ ଜାତ ପଦ୍ମ ସତ ତୋ । ଲୋଳ କଲ୍ଲୋଳ ମାଧୁର୍ଯ୍ୟବନ୍ତ ଗୋ ॥
ସୁତନୁ-ତନୁ ଦାରଣ ଫୁଲଧନୁ ଅତନୁଠାରୁ ଛଡ଼ାଇଁ ।
ଘନ ଘନ ଅମଞ୍ଜନ କଲା ଶୋଭା ପ୍ରଭାକୁ ହସି ଦଅଇ । ତା ଭୁରୁ ।
କାଳବ୍ୟାଳବାଳ ଖେଳା ଗୁରୁ ତା ।
ଧୈର୍ଯ୍ୟକତ୍ତୁରୀ କତୁରୀ ଚୂରୁ ତା । ଜାତ ପତ୍ର ଅସିତ-ବୀଜରୁ ତା । ୧୦ ।
ନାସା ପ୍ରଶଂସା ଭାଷାରେ ଧନ୍ୟ ହେବେ ତିଳ ସୁମନ ତୂଣୀର ।
ଅତ ଜ୍ୟୋତି ମୋତି ବସୁଣୀ କହୁଣୀ ଥୁଅ କାମଦେବର । ସେ ତୋର ।
କବା ନିରଞ୍ଜନି କରେ ପର ସେ ।
ବାଧୂ କୋଳେ କ ମୋହନୀ ଗାର ସେ । କ ସେ ଦେବଗୁରୁ-ଧର-କାର ସେ ॥

---

ସ୍ୱଦାଣୀରେ । ପ୍ରଳୟ—ନାଶ । ଲଣ ତୁରଙ୍ଗ—ଯୁଦ୍ଧ ଭୂମିର ଘୋଡ଼ାଙ୍କ ଚଞ୍ଚଳ ଝମ୍ପଟ ପଣ ଆଖିର ଢେଉଝୁଲି ଖେଳା । ଖେଳା······ବଳା—ଖେଳୁଥିବା —ବାଳକ ତଦ୍ୱୈୟର ଶୋଭାକୁ ବଳ ପଡ଼ୁଛି । ରଙ୍ଗେ—ଚଞ୍ଚଳତାରେ । କୁରଙ୍ଗେ ହରିଣମାନେ ।

୯ । ରାଗାମୃତ ଅର୍ଥାତ୍ ସ୍ନେହ ଓ ଅମୃତରେ ( ଲାଲ ଓ ଧଳା ) ବୋଳା ହୋଇଥିବା (କଳା) ନୀଳପଦ୍ମକୁ ( ତୁଳା ) ସମାନ ବୋଲି କହିବାରେ କେଉଁ ( ଅଣି ) ବଡ଼ କଥା ହେବ । କେହ୍ନ—କପଟ । କାମକୁତୁକ ସାରଣୀ—କନ୍ଦର୍ପର ଖେଳିବା ସାରଣୀ ( ଏକପ୍ରକାର ଖେଳନା ) । ଭାତି—ଶୋଭା । ଭୂତି—ସମ୍ପଦ । ମୂର୍ତ୍ତିବନ୍ତ—ଦେହ ଧରିଛି । କୋଟି······ସତ—କୋଟି କୋଟି ପଦ୍ମର ଶୋଭା ଜାତ ହୋଇଛି । ଲୋଳ—ଚଞ୍ଚଳ । ମାଧୁର୍ଯ୍ୟବନ୍ତ—ମାଧୁର୍ଯ୍ୟଯୁକ୍ତ ।

୧୦ । (ସୁତନୁ ) ତନୁପାତଳୀ ଅର୍ଥାତ୍ ସୁନ୍ଦରୀ ନାରୀର (ତନୁଦାରଣ, ଦେହକୁ ବିଦାରୁଥିବା ଫୁଲଧନୁ । ଅତନୁଠାରୁ—କାମଠାରୁ । ଅମଞ୍ଜନ କଲା—ହାଣିଲା, ଶୋଭାର ପ୍ରଭାକୁ ମଣ୍ଡଳୀକୁ । କାଳ······ଗୁରୁ—କାଳୀସର୍ପ ସାପୁଚୁଆକୁ ଖେଳାଇବାର ଗୁରୁ । ଧୈର୍ଯ୍ୟ···ଚୂରୁ—ଧୈର୍ଯ୍ୟକୁ କାଟି ପକାଉଥିବା ସୁନ୍ଦର କତୁରୀ । ଜାତ···ବୀଜରୁ—ନୀଳଗଛ ମଞ୍ଜିରୁ ପତର ଜନ୍ମିଛି ।

୧୧ । ନାସା······ତୂଣୀର—ନାକର ପ୍ରଶଂସା କଲେ ରାଶିଫୁଲ ଓ ଶରମୁଣା ଧନ୍ୟ ହେବେ ଅର୍ଥାତ୍ ନାକ ସହିତ ଉପମାନ ହେଲେ ଏ ଦୁହେଁ ନିଜକୁ ଧନ୍ୟ ମଣିବେ । (ଅତଜ୍ୟୋତି) ବେଶୀ ଶୋଭା ବା ଉଜ୍ଜ୍ୱଳ ମୋତିର ବସୁଣୀ ଦେଖି

କସ୍ତୂରୀ ତିଳକ ଗୋରଚନା ଶତା ଊର୍ଦ୍ଧ୍ୱରେଖା ଚେତା ହରେ ।
କଟାକ୍ଷ ଜରି ଉଷ୍ଣୀଷ ଥୋଇ ମାର ନେତ୍ରସରେ ସ୍ନାନ କରେ । ସେ ଶୋଭା
ରତି ପତି ମତି ଅତିଲୋଭା ସେ ।
ରମା ଦେଖି ବଳେ ହେବେ ବନ୍ଧା ସେ ; ଗୃହୀ କେ ରଖିବ ଦମ୍ଭପ୍ରଭା ସେ ॥
ମଞ୍ଜୁଳ ନୀଳ ଅଳକ ଲୋଳଲୀଳା ଝଳା ଭାଲଦେଶେ ଦଣେ ।
ଅମଳ କଳାକମଳକୁ ଭ୍ରମରଛୁଆ ବେଢ଼ିଛନ୍ତି କି ସେ । ସେ ଭାଲ ।
କଣ୍ଟିବାର କେ କରିବ ମୂଲ ତା ।
ଅର୍ଦ୍ଧଫଳ କି କରିବ ତୁଲ ତା । ଅର୍ଦ୍ଧ ଚନ୍ଦ୍ରହିଁ କି ଲଭି ଭ୍ରୂଲତା । ୧୩ ।
ଆହ୍ଲାଦ ମନ୍ଦ ମନ୍ଦର ମଧୁର ସ୍ୱଚ୍ଛ ମହୋତ୍ସବ ପ୍ରଦ ।
ପ୍ରସନ୍ନ ସଜନମତ ମତ୍ତ ମାଦକ ଶୁଣି ତ ଆନନ୍ଦ ପଦ । ମା ହାସ ।
ନିନ୍ଦେ କର୍ପୂର ଦର ପୀୟୂଷ ତା ।
ଜିଣେ କାଶ କୁଶ କଇଲାସ ତା । ଦଳେ ଶଶିକିରଣ ସାରସ ତା । ୧୪ ।

୧୩-୪— ଲକ୍ଷ ସ୍ଥଳ ଖ, ଗ, ଘ,

---

ମନୋଜ୍ଞ ଏ (କାମଦେବର) କନ୍ଦର୍ପ (କପୂଣୀ) ଶର ଟାଣିବା ପାଇଁ ଅଗ୍ରଠିରେ ଲଗାଉଥିବା ମୋହିଆ ଥୁଆ ହୋଇଛି କି ? କବ—ଶୁକ୍ରତାରା (ସ୍ୱଚ୍ଛ ଉଜ୍ଜ୍ୱଳ) । ନଉଜ୍ଜଳ—ବନାଇବା । ବଧୂ—ଚନ୍ଦ୍ର, ଏଠାରେ ମୁଖକୁ ଲକ୍ଷ୍ୟ କରାଯାଇଅଛି । କ······କାର—କପୂଣୀ ବୃହସ୍ପତିଙ୍କର କଇଦଖାନା କି ଅର୍ଥାତ୍ ତାକୁ ଦେଖିଲେ ବୃହସ୍ପତିଙ୍କ ଭଳିଆ ବୁଦ୍ଧିମାନ ଏବଂ ପଣ୍ଡିତର ମଧ୍ୟ ବୁଦ୍ଧିଭ୍ରଂଶ ଘଟିବ ।

୧୨ । ଊର୍ଦ୍ଧ୍ୱରେଖା—ଯୋଗୀ । ଚେତା—ଜ୍ଞାନ । ମାର—କନ୍ଦର୍ପ । କଟାକ୍ଷ—ଚାହାଣିବା ଯନ୍ତ୍ର କଟୂର—ଏଠାରେ କସ୍ତୂରୀ ତିଳକକୁ ଲକ୍ଷ୍ୟ କରାଯାଇଅଛି । ଜରି ଉଷ୍ଣୀଷ—ଜରିଲଗା ପଗଡ଼ି—ଏଠାରେ ଗୋରଚନା ଶତାକୁ ଲକ୍ଷ୍ୟ କରା-ଯାଇଅଛି । ରତି·· ଲୋଭା—କାମର ମନରେ ବେଶୀ ଲୋଭ ଜନ୍ମାଇବ । ରମା—ଲକ୍ଷ୍ମୀ । ଦମ୍ଭ ପ୍ରଭା (ପ୍ରଭାବ) – ଟାଣପଣର ତେଜ ।

୧୩ । ମଞ୍ଜୁଳ – ସୁନ୍ଦର । ଅଳକ—ଚୂନ୍‌ଚୁନିଆ ବାଳ । ଲୋଳଲୀଳା—ଫର-ଫର ହୋଇ ହଲିବାର ଶୋଭା । କଳାକମଳ—ନୀଳପଦ୍ମ । ଭ୍ରମର—ଭଅଁର । କଣ୍ଟିବାର—କଣ୍ଟାବାରେ କମ୍ପା ଫୁଲ ଉଠିବାରେ । ଅର୍ଦ୍ଧ ଫଳ-ଅଧାଫଳକ ।

୧୪ । ଆହ୍ଲାଦ—ଆହ୍ଲାଦ ଦେଉଥିବା । ସ୍ୱଚ୍ଛ—ନିର୍ମଳ, ଧଳା । ମହୋତ୍ସବ-ପ୍ରଦ – ଭାରି ହର୍ଷ ଦେଉଥିବା । ସଜନମତ—ସମସ୍ତଙ୍କ ମନଯୋଗା । ମତ୍ତ—ସ୍ୱେଳ । ଶୁଣି ତ ଆନନ୍ଦପଦ—ଶୁଣିବାକୁ ଆନନ୍ଦର ସ୍ଥାନ । ଦର—ଶଙ୍ଖ (ଧଳା) । ପୀୟୂଷ—ଅମୃତ । କାଶ—ତଣ୍ଡିଫୁଲ । ସାରସ—ହଂସ ।

Digitized by srujanika@gmail.com

ରାଗ ଅନୁରାଗ ଅମୃତ ମାଧୁର୍ଯ୍ୟ ଶ୍ରୀ-ସରଘର ଅଧର ।
ପତିବ୍ରତା-ଧୃତି-ଭୂତି ଜୁର ପାଇଁ ଚଳନଛଳନ ଚୋର । ତା ଦନ୍ତ ।
କୁନ୍ଦା କୁରୁବକ ହୀରାବତ ତା ।
କୋଞ୍ଚ-ମୋତି ପନ୍ତି ଉପମିତ ତା । କୁନ୍ଦକଳୀ କରକ ବୀଜ ଭ ତା । ୧୫ ।
ସ୍ମିତ ଅଧର ପରସ୍ପର ସୁନ୍ଦର ଦର୍ପକ-ଦର୍ପବର୍ଦ୍ଧନ ।
ପ୍ରବାଳ ଆଳବାଳରେ କଳ ସୁଧା କନ୍ଦଳୀ ଜାତ ଶୋଭନ । ତା ଠୋର ।
କ୍ଷୀରେ କ୍ଷାଳିତ ମାଣିକ୍ୟ ପରି ତା ।
ପ୍ରବାଳରେ ବୃଷ୍ଟି ସୁଧାଧାର ତା । ଶଶୀ ସୂର ଆଲିଙ୍ଗନ ଧାର ତା । ୧୬ ।
ସୁଧାପିଣ୍ଡ ଭିନ୍ନ ଖଣ୍ଡ ପରି ଗଣ୍ଡ ମଧୁକ ଫୁଲ କି ତୁଲ ।
କନ୍ଦ ମାକନ୍ଦ ଆନନ୍ଦ ମକରନ୍ଦ ଥୁଆ କେ କରିବ ମୂଲ । ଗୋ ସଖି ।
କବୁକେ କି କ୍ଷୀଣ ଚନ୍ଦ୍ର ଲକ୍ଷି ଗୋ ।
ଅର୍ଦ୍ଧମାତ୍ରା ହେଲେ ହେବ ସାମ୍ୟ ଗୋ । ଦେଖି ଲେଉଟି ନ ଆସେ ଅକ୍ଷି ।୧୭।

---

୧୫ । ଅଧର—ଓଠ ରାଗ । ଅନୁରାଗ - ଅମୃତ ମାଧୁର୍ଯ୍ୟ ଓ ଶ୍ରୀ (ଶୋଭା)—ଏ ସମସ୍ତଙ୍କର (ସରଘର) ଭଣ୍ଡାର ଅଟେ । ପତିବ୍ରତା ···· ଚୋର—ପତିବ୍ରତା ସ୍ତ୍ରୀମାନଙ୍କର ଧୈର୍ଯ୍ୟ ରୂପକ ଧନ ଦଉଲତକୁ ଲୁଟି କରିବା ପାଇଁ କୃଷ୍ଣଙ୍କ ଓଠ ଛଳରେ (ଚଳନ) କମ୍ପିତ ହେଉଛି । ତା ଦନ୍ତ କୁନ୍ଦା ହୋଇଥିବା କୁରୁବକ (ଝାଉଁଏ-ପଦ୍ମରାଗମଣି)ଓ ହୀରାପରି । କୋଞ୍ଚ ମୋତି ଅର୍ଥାତ୍ ଉଜ୍ଜ୍ୱଳ ମୋତି ଧାଡ଼ି ସହିତ ଉପମା ହେଉଅଛି । କୁନ୍ଦଫୁଲର କଢ଼ି ଏବଂ କରକ ଡାଳିମ୍ବ ମଞ୍ଜି ପରି ତା ଦାନ୍ତ ।

୧୬ । ସ୍ମିତ—ମନ୍ଦହାସ । ପରସ୍ପର—ଦୁହିଁଙ୍କ ଦୁହେଁ । ଦର୍ପକ ଦର୍ପବର୍ଦ୍ଧନ—କନ୍ଦର୍ପର ପରାକ୍ରମକୁ ବଢ଼ାଉଛି । ପ୍ରବାଳ······ଶୋଭନ - ପୋହଳାମାନଙ୍କରେ । ଅମୃତର ଗଜା ଜନ୍ମିବା ଶୋଭା ବୋଲି ( କଳ ) କଳନା କରୁଅଛି । କ୍ଷୀରେ··· ପରି—ଦୁଧରେ ଧୁଆ ହୋଇଥିବା ମାଣିକ୍ୟ କି ? ପ୍ରବାଳ···ଧାର—ପୋହଳାରେ ଅମୃତ ଧାରର ବର୍ଷାପରି । ଶଶୀ—ଚନ୍ଦ୍ର । ସୂର—ସୂର୍ଯ୍ୟ । ଆଲିଙ୍ଗନ —ଆଲିଙ୍ଗନ ହୋଇ ଲାଗି ରହିଥିବା ।

୧୭ । ଗଣ୍ଡ—ଗାଲ । ସୁଧାପିଣ୍ଡ ଭିନ୍ନଖଣ୍ଡ ପରି—ଚନ୍ଦ୍ରର ଭିନ୍ନ ଭାଗରୁ ଭାଗେ । ମଧୁକଫୁଲ - ମହୁଲ ଫୁଲ । କନ୍ଦ—କର୍ପୂର ବା ଝାଉଁଏ ମୂଳ । ମାକନ୍ଦ—ଅଳପ ହଳଦିଆ ଚନ୍ଦନ ବା ଆମ୍ବ କଉଳ । ଆନନ୍ଦ — ହର୍ଷ । ମକରନ୍ଦ—ମହୁ । କେ କରିବ ମୂଲ ଅର୍ଥାତ୍ ତୁଳନା ନାହିଁ । କବୁକେ— ଥୋଡ଼କୁ । କ୍ଷୀଣଚନ୍ଦ୍ର—ଦ୍ୱିତୀୟା ଚନ୍ଦ୍ର । ଅର୍ଦ୍ଧମାତ୍ରା —ଚନ୍ଦ୍ରବିନ୍ଦୁର ତଳ ମାତ୍ରା ।

Digitized by srujanika@gmail.com

ଶ୍ରୁତି କୀର୍ତ୍ତି ପରସ୍ପର ଚରାଚର-ବନ୍ଦୀ-ପାଶ ମନୋହର
ମକରକୃତି କୁଣ୍ଡଳ ଆନ୍ଦୋଳନ ଦର୍ପ ଧ୍ୱଜେ ମଦନର । ସେ ଶୋଭା ।
ନିନ୍ଦେ ଚନ୍ଦ୍ରାର୍କମଣ୍ଡଳ ପ୍ରଭା ହେ ।
ଗୁରୁ କବି କି ବର୍ଣ୍ଣିବେ ଆନ ହେ । ପଣ୍ଡିତ୍ରାଣୀପଣ୍ଡି ମନଲୋଭା ସେ । ୧୮ ।
ଶଙ୍ଖ ଶଙ୍ଖ ଶଙ୍ଖ କପୋତ ପ୍ରମତ୍ତ-ହୁଁ-କୃତବେଳ ମଞ୍ଜୁଳ ।
ତ୍ରିଜଗ ମୋହିବା ଶାର୍ଙ୍ଗଗ୍ରୀବା ତିନି ରେଖା ଦେଖା ପରି ଛଳ । ଗୋ ତହିଁ ।
ଯତ୍ନ ରତ୍ନ ସାର ହାର ବନ୍ଧ ଗୋ ।
ବନମାଳା ଶୋଭା ଦଶେ କେନ୍ଦ୍ର ଗୋ । ମୁଦ୍ରା କେ ବା ନିକାଶିବ ନାହିଁ ଗୋ
ବାହୁଦଣ୍ଡ ପୁଣ୍ଡରୀକ ଶୁଣ୍ଡ ପୁଣ୍ଡରୀକଷଣ୍ଡ ଦଣ୍ଡକର ।
ବାହୁଟି ବାଘଟି ବାହୁଟିଆ ପରି ନାଶି ନରକ କାତର । ଗୋ ଜନେ ।
ବଳା ବଳାଶ୍ରିତ ମୋହିପାରେ ଗୋ ।
ମୁଦି ମୁଦିତ ଉଦିତ କରେ ଗୋ । ଲୀଳାପଦ୍ମ ଧାରୀ କଂହୃନ୍ଦରେ ଗୋ । ୨୦ ।

---

୧୮ । (ଶ୍ରୁତି କୀର୍ତ୍ତି) କାନ ଶୋଭାର ପ୍ରଶଂସା (ପରସ୍ପର) ପ୍ରସିଦ୍ଧ ହେଉଛି । ଚରାଚର ବନ୍ଦୀ ପାଶ—ସାରା ସଂସାରକୁ ବନ୍ଦୀ କରିବାର ପାଶ । ମକରକୃତି କୁଣ୍ଡଳ—ମଗରମୁହାଁ କାନର କୁଣ୍ଡଳ । ଆନ୍ଦୋଳନ—ଝୁଲିବା । ଦର୍ପଧ୍ୱଜେ ମଦନର—କନ୍ଦର୍ପର ଦର୍ପଧ୍ୱଜସ୍ୱ ପତାକା ବା ନିଶାଣି । ନିନ୍ଦେ······ପ୍ରଭା—ଚନ୍ଦ୍ର ସୂର୍ଯ୍ୟଙ୍କ ମଣ୍ଡଳର ଜ୍ୟୋତିକୁ ନିନ୍ଦୁଛି । ସେ ଶୋଭାକୁ ଗୁରୁ ଅର୍ଥାତ୍ ବୃହସ୍ପତି ଏବଂ କବି ଅର୍ଥାତ୍ ଶୁକ୍ର କ'ଣ ବର୍ଣ୍ଣିବେ । ପଣ୍ଡିତ୍ରାଣୀ······ଲୋଭା- ପଣ୍ଡିତାଙ୍କର ମନରେ ଲୋଭ ଜନ୍ମାଉଅଛି ।

୧୯ । ଶଙ୍ଖ ଶଙ୍ଖ—ଅସଂଖ୍ୟ, ଅଗଣନା । ଶଙ୍ଖ—ଶଙ୍ଖପରି (ଧଳା ଓ ବଙ୍କା) କପୋତ······ମଞ୍ଜୁଳ—ମାତିଥିବା କାପତାର ହୁଁକାର ଶବ୍ଦ ଭଳି ବେଳପରି ସୁନ୍ଦର । ସେତେବେଳେ କାପତାର ବେକଟା ଟିକିଏ ଅଗକୁ ଫୁଲି ବଙ୍କା ହୋଇଥାଏ । ଶାର୍ଙ୍ଗଗ୍ରୀବା—ଅଳ୍ପ ବଙ୍କା ବେକ । ତ୍ରିଜଗ···ପରିଛଳ—ତିନି ଲୋକକୁ ମୋହୁଥିବା ତିନିରେଖା ( ଗାର ) ଦେଖାଇବାର ବାହାନା ପରି ହୋଇଛି ଅର୍ଥାତ୍ ବେକଟି ବଙ୍କେଇ ଥିବାରୁ ତିନୋଟି ଭଙ୍ଗ ଦେଖାଯାଉଅଛି । ତେଣୁ ସେ ବେକ ତିନି ଲୋକକୁ ମୋହୁଛି ବୋଲି ଏଟା ଗାର ଦେଖା ଯାଉଛି କି ? ଯତ୍ନ—ସୁନ୍ଦର । ରତ୍ନସାର—ଭଲ ରତନର ହାର । କେନ୍ଦ୍ର—ଛପନ୍ଥ ।

୨୦ । ପୁଣ୍ଡରୀକ—ଦକ୍ଷିଣ ପୂର୍ବଦିଗ ଅର୍ଥାତ୍ ଅଗ୍ନି କୋଣର ଅଧିଷ୍ଠାତା ହାତୀ । ପୁଣ୍ଡରୀକ ଷଣ୍ଡ—ଧଳାପଦ୍ମ ଷଣ୍ଡ । କୃଷ୍ଣଙ୍କ ବାହୁ ପଦ୍ମଷଣ୍ଡକୁ ଦଣ୍ଡ କରୁଥିବା ହାତୀର ଶୁଣ୍ଡ ପରି । ବାହୁଟି—ହାତର ଗହଣା । ବାଘଟି—ବାଘ ପଛ ।

Digitized by srujanika@gmail.com

ବନ୍ଦ ମରକତ ପାଞ୍ଜିଳ କପାଟ ମୁଦ୍ରା ଉରତଟ ଭ୍ରାନ୍ତ ।
ରଙ୍ଗମୃତ୍ତିକା ରଚିତ ଅନୁରାଗଲତାପତ୍ର ପରତୀତ । ଯେ ସ୍ଥଳେ ।
କଉସ୍ତୁଭ ବରମଣି ଲସେ ଯେ ।
ପୁର ସ୍ମର ରତ କମଳମାଳେ ଯେ । ଲମ୍ବ କଦମ୍ବମାଳା ତା ତଳେ ଯେ ।୨୧।
ବନ୍ଧୁଂ ଝଟପଟ ପରି ପୀତପଟ କଟିତଟରେ ବିରାଜେ ।
ପିନ୍ଧା ପରିପାଟି କବି କୋଟିପାଟି ହେଲେ ବର୍ଣ୍ଣିବ କି ହେଜେ । ଗୋ ଧେନା ।
ମୋଡ଼ା ଦୋପଡ଼ା ଭିଡ଼ା ଯତନ ଗୋ ।
କୁଞ୍ଚା ରଞ୍ଚା ଧଡ଼ି କି ଶୋଭନ ଗୋ । କିଣି କିଙ୍କିଣୀ ହରେ ଜୀବନ ଗୋ ।୨୨।
ପୁର-ପର-ପର ଭୂର କି ନୂପୁର ନିପୁର କାତର ସ୍ୱର ।
ତରସ୍କାର ପୁରନ୍ଦର ଦ୍ୱିରଦର ଗତି ମତ୍ତ ବୃଷଭର । ଗୋ ମଦ ।
ଅରୁଣକୁ ଅରୁଣ [illegible]ଣଦ ଗୋ ।
ମରଦଇ ମାରମଦ ମଦ ଗୋ । ରମା ଆସ୍ପଦ ସମ୍ପଦ ପଦ ଗୋ ।୨୩।

---

ବାହୁଟିଅ—ଲାଗିଏ ହରଣ । କରେ—ହାତରେ । ଲୀଳା—ଲାଗିଏ ଗହଣା । କଳାଗ୍ରହ ଚନ୍ଦ୍ର । ମୁଦ ଅଙ୍ଗୁରେ—ହାତ ଅଙ୍ଗୁଠିରେ ପିନ୍ଧିଥିବା ମୁଦି ଆନନ୍ଦ ଜାତ କରାଏ । ଲୀଳା ପଦ୍ମ—ଖେଳିବା ପାଇଁ ହାତରେ ଧରିଥିବା ପଦ୍ମଫୁଲ । ସୁନ୍ଦର—ନବରଙ୍ଗରେ ।

୨୧ । ଉରତଟ ଖଣ୍ଡ—ସ୍ତନପଟର ଶୋଭା । ବର—ଉତ୍କୃଷ୍ଟ । ମରକତ··· ମୁଦ୍ରା—ନୀଳମଣିରେ ତିଆରି ପାଞ୍ଜିଳ କବାଟରେ ମୁଦ୍ରା (ବନ୍ଦ) ହୋଇଅଛି । ରଙ୍ଗ ··· ··ପରତୀତ—କୃଷ୍ଣ ଦେହରେ ମାଟିରେ ଗୁଣ୍ଡରେ ଲତା ଯେଉଁଛନ୍ତି: ତାହା ଚିହ୍ନ ସ୍ନେହରୂପ ଲତା ପତର ପରି ପ୍ରତୀତ ହେଉଛି । ବରମଣି—ଉତ୍କୃଷ୍ଟ ମଣି । ଲସେ—ଶୋଭୁଛି । ପୁର କମଳମାଳେ—ପଦ୍ମମାଳାରେ ପୂର୍ଣ୍ଣ ଶୋଭାପାଉଛି ।

୨୨ । ବନ୍ଧୁ—ହନ୍ଦୁଳ । ପୀତପଟ—ହଳଦିଆ ଲୁଗା । ପରିପାଟି—ଶୋଭା, ଯତନ । କବି ···· ହେଜେ—ଶହେ ବା କବି କୋଟିଏ ମୁହଁ ପାଇଲେ ବର୍ଣ୍ଣିବ କି ? ଅର୍ଥାତ୍ ବର୍ଣ୍ଣିପାରିବ ନାହିଁ ବୋଲି ( ହେଜେ ) ସ୍ଫୁରୁଛି । ଦୋପଡ଼ା—ଚଦର । ଯତନ—ଶୋଭା । କୁଞ୍ଚା·····ଶୋଭନ– ଧଡ଼ି କୁଞ୍ଚ କରିଥିବା କି ଶୋଭା ପାଉଅଛି ।

୨୩ । ଏ ନୂପୁର (ପୁର-ପର) । ଶିବଙ୍କର (ପର) ଶତ୍ରୁ କାମଦେବଙ୍କର (ଭୂର) ଭୁଷା କି ? ତାର ସ୍ୱର ନିପୁଣ କାତର ଜନ ଲୋକଙ୍କୁ କାତର କରୁଛି । (ପୁରନ୍ଦର) ଇନ୍ଦ୍ରଙ୍କ (ଦ୍ୱିରଦର) ହାତୀର ଅର୍ଥାତ୍ ଐରାବତର ଏବଂ (ମତ୍ତ ବୃଷଭର) ମତ୍ତ ଷଣ୍ଢର ଗତିକୁ କୃଷ୍ଣଙ୍କ ଗତି (ତିରସ୍କାର) ହଟେଇ ଦେଉଛି । ( ଅରୁଣ ରଙ୍ଗପାଦ

Digitized by srujanika@gmail.com

ଚରାଚର ଦ୍ରବକର ମନୋହର ସୁସ୍ୱର ମଧୁରତାର ।
ବିଶ୍ୱଜନ ମନମୋହନ ମାଦକ ଦକ ପତିବ୍ରତାଙ୍କର । ଗୋ ବଂଶୀ ।
ବଶୀକରଣ ଅଟଳ ସିଦ୍ଧି ଗୋ ।
ପଞ୍ଚଶର ସ୍ୱରେ ଥାଇ ବସି ଗୋ । କୁଞ୍ଚିତକେଶ ପଟେ ଥିଲେ ଖୋସି ଗୋ ।୨୪।
ତ୍ରିଭଙ୍ଗିମା ଭଙ୍ଗୀ ସଙ୍ଗୀତ ସଙ୍ଗୀତ ନଟବର ମନୋହର ।
କଟି ପାଦ ପାଣି ଗ୍ରୀବା ମୁଖ ଠାଣି ଶୃଙ୍ଗାରିଣି କାଳିମା ତାର । ଗୋ ମନ୍ଦ ।
କୁଞ୍ଜେ ଲୁଚି ଗୃହୁଁ ଥିଲେ ରନ୍ଧ୍ର ଗୋ ।
କେତେ ଅଶ୍ରବ୍ୟ ଘେନିଲି ତହିଁ ଗୋ । ବିଶ୍ୱମୋହନ ମୋହନ ସେହି ।୨୫।
ମର୍କତ ଦରପଣେ ହୀର ମାଣିକ୍ୟ ଇନ୍ଦ୍ରନୀଳମଣି ମୋତି ।
ଖଞ୍ଜନଗଞ୍ଜନ ଜଗତରଞ୍ଜନ ଧାଇ କର ରତିପତି । ଗୋ ମିତ ।
କୁଞ୍ଜେ କରିଥିଲା କି ଗୁପତ ଗୋ ।
ମୋର ପ୍ରାଣ ଆକର୍ଷଣ ସେ ତ ଗୋ । କି କହିବି ମୋ ଦୁଃଖ ଯେମନ୍ତ ଗୋ ॥
୨୫—ସଙ୍ଗୀତ ଇଙ୍ଗିତ କ, ଖ, ଟ, ଠ.

---

ଅରୁଣକୁ (ରକ୍ତ) ଧାର ଦେଉଛନ୍ତି ଅର୍ଥାତ୍ ରକ୍ତମାନେ ସେ ପାଦ ବାଳସୂର୍ଯ୍ୟକୁ ବଳ ପଡ଼ୁଛି । ପକ୍ଷାନ୍ତରେ ସେ ଜନେ ଋଣଶୂନ୍ୟ (ଅରୁଣ); କିନ୍ତୁ ଋଣଶୂନ୍ୟ ଲୋକଙ୍କୁ ଋଣ ଦେଉଛନ୍ତି । ସାରସ—ପଦ୍ମ । ମଦ—ଢଳେଇ । ମରଦଇ—ଦଳି ଦେଉଛି । ରମା···ପଦ—ଲକ୍ଷ୍ମୀ ବା ଶୋଭା ଏବଂ ସମ୍ପଦର (ପଦ) ସ୍ଥାନ ।

୨୪ । ଚରାଚର ଦ୍ରବକର—ସାରା ସଂସାରକୁ ତରଳାଉଥିବା । ଦକ—ଭୟ । ପତିବ୍ରତାଙ୍କ—ପତିବ୍ରତା ସ୍ତ୍ରୀଙ୍କର । ବଶୀକରଣ—ବଶ କରିବାର ଉପାୟ । ପଞ୍ଚଶର କନ୍ଦର୍ପ । କୁଞ୍ଚିତକେଶ ପଟେ—ଅଣ୍ଡାର ଲୁଗାରେ ।

୨୫ । ସଙ୍ଗୀତ ସଙ୍ଗୀତ—ଗୀତଟା ତାଙ୍କର ସାଥି ବା ଗୀତଟା ସେଠି ଭଲ ଗାଆ ହେଉଛି । ନଟବର—ନାଟୁଆ ଶ୍ରେଷ୍ଠ । ଅଶବ୍ୟ—ମନର କଥା, ଭାବ । ବିଶ୍ୱମୋହନ ମୋହନ—ସମସ୍ତଙ୍କୁ ମୋହୁଥିବା କାମର ମୋହନ, ମଦନମୋହନ କୃଷ୍ଣ ସେ ମୋହନ କୃଷ୍ଣ ସଂସାରକୁ (ବିଶ୍ୱମୋହନ) ମୋହି ଦଅନ୍ତି ।

୨୬ । ମର୍କତ ଦର୍ପଣରେ—ନେଳିଆ ମଣିର ଅର୍ଶିରେ (ଏଠାରେ କୃଷ୍ଣଙ୍କ ଦେହକୁ ଲକ୍ଷ୍ୟ କରାଯାଇଛି) ହୀର (କୃଷ୍ଣଙ୍କ ଦାନ୍ତକୁ ଲକ୍ଷ୍ୟ କରାଯାଇଛି) ମାଣିକ୍ୟ (କୃଷ୍ଣଙ୍କ ଓଠକୁ ଲକ୍ଷ୍ୟ କରାଯାଇଛି) ଓ ଇନ୍ଦ୍ରନୀଳମଣି ମୋତି (କୃଷ୍ଣଙ୍କ ଆଖିକୁ ଲକ୍ଷ୍ୟ କରାଯାଇଅଛି ଖଞ୍ଜା ହୋଇଥିଲେ ଯେପରି ସୁନ୍ଦର ଦିଶନ୍ତା, ତାକୁ (ଖଞ୍ଜନ ଗଞ୍ଜନ) ଅର୍ଥାତ୍ ସେହି ଖଞ୍ଜା ଶୋଭାକୁ ଗଞ୍ଜି ଦେଉଥିବା ବା ବଳପଡୁଥିବା ଏବଂ (ଜଗତରଞ୍ଜନ) ସଂସାରର ମନକୁ ରଞ୍ଜି ଦେଉଥିବା କୃଷ୍ଣଚନ୍ଦ୍ରଙ୍କୁ (ରତିପତି) କାମ ପାଇ କରି କୁଞ୍ଜବନରେ ଲୁଚାଇଥିଲା । ଆକର୍ଷଣ—ଓଟାରି ନେବା ।



Digitized by srujanika@gmail.com

କେକୀ ଟେକ ଡାକବାରେ ମୁଁ ମେଲଣି ଲକ୍ଷଣ ଟେଣିକି ଦେଲି ।
ଶୃଙ୍ଗାଣି ବିଶିଖ ବନଲୁବ୍ଧ ଶ୍ୟାମ ଧାଉଁକି ଦକ୍ଷିଣୀ ହେଲି । ତା ସ୍ମିତ ।
ଗଳା ଗବାକ୍ଷେ ଚନ୍ଦ୍ରାଭ ବତ ତା ।
ବନ୍ଦୀ ପଞ୍ଜରେ କି ରୂପାମୃତ ତା । ଜାଲି ବାଟେ କି ହୀରା ଲେଖିତ ତା ।୧୭।
ତମବାମରେ କି ରାମଚନ୍ଦ୍ର କାମ ମିତବର୍ଣ୍ଣ ଅଙ୍ଗୀକୃତ ।
ତଥାପି ତ ଡର ଭୀତ ହୃତ ନୋହେ କୁଞ୍ଜାନ୍ତରେ କି ଗୋପିତ । ତୋ ଅବା ।
ନୀଳ ଚନ୍ଦ୍ରୋଦୟ ଜଳିବା ଗୋ ।
ସର୍ବକଳାକାର ବିଗ୍ରହବା ଗୋ । ମାର ହରଙ୍କୁ ଲଗୁ ଦେଖିବା ଗୋ ।୧୮।
ନୀଳେନ୍ଦ୍ରମଣି କିରଣ ମଣି କାସଳାସ୍ୟ ମନ୍ଦ୍ର ଭେଦକର ।
ବନଲୁବ୍ଧ ପଶୁପକ୍ଷୀ ଘନ ପ୍ରତିବିମ୍ବିତ ପର ମାଧୁରୀ । ଗୋ ଦେଖ ।
ପ୍ରେମାମୃତ ପିଇଥି ଧାନ ଧନ ଗୋ ।
ବ୍ୟାପିଲା କି କାଳିନ୍ଦୀ ବର୍ଦ୍ଧନ ଗୋ । ରଙ୍ଗ ଲାବଣ୍ୟ ଭଙ୍ଗୀ ଶୋଭନ ଗୋ ।

୧୭-୧—ଇନ୍ଦ୍ରନୀଳମଣି କ୍ଷୋଭ ଗ, ଘ, ଜ, ଠ, ୧୭-୨- ତା ଶୋଭା-ଗ ଘ, ଜ, ଝ, ଠ,

---

୧୭ । କେକୀ ଟେକ ଡାକବାରେ—ମୟୂର ଲାଞ୍ଜ ଟେକି ଟେକି ବା ଉଚ୍ଚରେ ବୋବାଇବାରୁ । ଲକ୍ଷଣ-ଅକ୍ଷି । ବନଲୁବ୍ଧ ବ୍ୟାଧର—ବଣରେ ଲୁଚିଥିବା ବାଣୁଆର ଅର୍ଥାତ୍ କୃଷ୍ଣଙ୍କର ଶୃଙ୍ଗାଣି (ଦୃଷ୍ଟି) ବାଣ ପାଇଁ ମୁଁ ଦକ୍ଷିଣୀପରି ହେଲି । ସ୍ମିତ—ମୃଦୁ ହସ । ଗବାକ୍ଷ– ଝରକା । ଗଳା······ବତ ଝରକାରେ ଚାଲି ଆସୁଥିବା ଚନ୍ଦ୍ରକିରଣ ପରି । ବନ୍ଦୀ ରୂପାମୃତ—ଅମୃତ ରୂପଟା ପିଞ୍ଜରାରେ ବନ୍ଦୀ ହୋଇଅଛି କି ? ଜାଲି···ଲେଖିତ—ଝରକା ବାଟରେ ହୀରା ଦେଖା-ଯାଉଅଛି କି ?

୧୮ । ତମ···ଅଙ୍ଗୀକୃତ—ଅନ୍ଧାର ବାଦ ବା ଶତ୍ରୁତାରେ ସୁନ୍ଦର ଶ୍ୟାମ ନିଜ ମିତ କାମଦେବର ରଙ୍ଗକୁ (କଳା) ନେଇଅଛି କି ? ତେବେହେଁ ତାର ମନରେ ଡର ଅଛି । ନ ମାନି ଡରର ଆଶି କୁଞ୍ଜରେ ଲୁଚିଛି କି ? କୃଷ୍ଣଙ୍କ ମୁହଁ କଳା ଏବଂ ଶ୍ୟାମ ପରି ଗୋଲ । ସେ କୁଞ୍ଜରେ ଲୁଚିଥିବାରୁ କବି ଏଠାରେ ଏପରି ତର୍କଣା କରୁ-ଅଛନ୍ତି । ସର୍ବକଳାକାର—ସବୁ କଳାରଙ୍ଗର କାରିଗର ଘର । ମାର— କନ୍ଦର୍ପ । ହର—ଶିବ ।

୧୯ । ନୀଳେନ୍ଦ୍ରମଣି···ମାଧୁରୀ—କୃଷ୍ଣଙ୍କର ଦେହର ଶୋଭା । କୁଞ୍ଜର ଚାରିପାଖ ପତର ଫାଙ୍କ ଦେଇ ଆସୁଅଛି । ବଣବୁଲିର ପଶୁପକ୍ଷୀରେ ( ଘନ ) ମେଘର ଛାଇ ପଡ଼ିଲା ପରି ସୁନ୍ଦର ଦିଶୁଥିବାର (ମଣି) ମନେହେଉଛି । ଶୋଭାଟା

Digitized by srujanika@gmail.com

ଘନଘନ ଘନଶ୍ୟାମ ଘନ ରସ ବୃଷ୍ଟି ସୃଷ୍ଟି ବୁଡ଼ାଇଲା ।
ଜ୍ଞାନ ବିବେକ ଶଶୀ ସୂର୍ଯ୍ୟ ଅସ୍ତରେ ଭ୍ରମ ତମ ଅଚ୍ଛାଦିଲା । ଗୋ ମିତ ।
ନ ପାଇଲି ଦୃଢ଼ ଧୈର୍ଯ୍ୟପୋତ ଗୋ ।
ହେଲି ବ୍ୟାକୁଳ ଅଥଳ ବତ ଗୋ । ଝଡ଼ିଗଲା କୁଳବ୍ରତବାନ୍ଧ ଗୋ । ୩୦ ।
ସେ ନାହିଁ, ମୁଁ କାହିଁ, ସତ କି ସ୍ୱପନ କହ ସାହି କର ମିତ ।
ଜାଣିଲି ଭାବନା ହେଲି ଜୀବଘେନା ଭିନ୍ନ କଲି କି ନିମିତ୍ତ । ମୋ ଜୀବ ।
ସତ୍ୟ ସତ୍ୟ ନ ପାଇଲେ ଯିବ ମୋ ।
ବ୍ରହ୍ମଭୂତି ପାଇ ନ ରହିବ ମୋ । ମଣେ ଆନ ସୁଖ ପରାଭବ ମୋ । ୩୧ ।
ମିତ ଉତ୍ତର କଲେ ନୁହଁ କାତର ଇତର କଥା ସେ ନୋହେ ।
ଭାଗ୍ୟ ବିଧିଜାତ ହେଲେ ରସସୃଷ୍ଟି ସର୍ଜନା ହୋଇବ, ରହେ । ତା ଭାବି ।
ଧୀନ ସାମନ୍ତସିଂହାର କବି ତା ।
ଜୀବ ଥିବାଯାକ ଧନ ନେବ ତା । ଯିବ ରସିକହୃଦପ ଦ୍ରବି ତା । ୩୨ ।

---

---

ଶୃଙ୍ଗଅତକୁ ଉତ୍କଳ ପଢ଼ନ୍ତି । ଘନ ଘନ—ବାରମ୍ବାର । କ୍ୟାପିଲା···ବର୍ଣ୍ଣନ—ଯମୁନାର କଢ଼ି ମାଡ଼ିଗଲା କି ? ରଙ୍ଗ—ସୁନ୍ଦର ।

୩୦ । (ଘନଶ୍ୟାମ) କାଳିଆ କୃଷ୍ଣରୂପ (ଘନ) ମେଘର (ରସବୃଷ୍ଟି) ପାଣି ବର୍ଷା ବା ଶୃଙ୍ଗାର ରସର ବରଷା (ଘନ ଘନ) ବାରମ୍ବାର (ସୃଷ୍ଟିକୁ) ସଂସାରକୁ ବୁଡ଼ାଇଲା । ଜ୍ଞାନ ଓ ବିବେକ ଚନ୍ଦ୍ର ଓ ସୂର୍ଯ୍ୟପରି । ସେ ଦୁହିଙ୍କର (ଅସ୍ତରେ) ଲୋପରେ (ଭ୍ରମତମ) ଭ୍ରମ ରୂପ ଅନ୍ଧାର ଘୋଟିଗଲା । ମେଘ ଘୋଟିଲେ ଚନ୍ଦ୍ରସୂର୍ଯ୍ୟ ଦେଖାଯାନ୍ତି ନାହିଁ । ଏଠି ଜ୍ଞାନ ଓ ବିବେକ ଲୁଚିଗଲା । ବିବେଳା ହେବାରୁ ହେଲା ଅନ୍ଧାର । ନ ପାଇଲି···ପୋତ—ଧୈର୍ଯ୍ୟ ହେଲା ବୋଇତ । ବଢ଼ିରେ ବୋଇତରେ ବସି ଲୋକେ ରକ୍ଷା ପାଆନ୍ତି । ଏଠି ମୁଁ ସେହି ଧୈର୍ଯ୍ୟ-ବୋଇତକୁ ପାଇଲି ନାହିଁ ଅର୍ଥାତ୍ ମୋର ଧୈର୍ଯ୍ୟ ଉଡ଼ିଗଲା । କୁଳବ୍ରତ—ପତିବ୍ରତା ଧର୍ମ ।

୩୧ । ବ୍ରହ୍ମଭୂତି—ବ୍ରହ୍ମାଙ୍କର ଐଶ୍ୱର୍ଯ୍ୟ, ବ୍ରହ୍ମପଦ । ଏଠାରେ କୃଷ୍ଣଙ୍କ ଅନୁରାଗ ବା ସ୍ନେହଠାରୁ ବ୍ରହ୍ମପଦର ହୀନତା ବର୍ଣ୍ଣିତ ।

୩୨ । ଇତର – ସାଧାରଣ । ଭାଗ୍ୟବିଧି—ସୁଭାଗ୍ୟ ହେଲେ । ରସସୃଷ୍ଟି—ପ୍ରୀତିସୃଷ୍ଟି, ସମ୍ଭୋଗ । ରହେ—ଏକାନ୍ତରେ ।

---

Digitized by srujanika@gmail.com

# ଅଷ୍ଟଚତ୍ୱାରିଂଶ ଛାନ୍ଦ

## ଶ୍ରୀ କିଶୋରୀଜିଉ ସଖୀ ପୁରତେ ଶ୍ରୀକୃଷ୍ଣ ଅନୁରାଗ କଥନ

ରାଗ—ମୁଖାରୀ ( ଫୁଲଠାର ବାଣୀରେ ଗାଇବ )

ରାଧା ଧରି ସଖୀକର । ବୋଲନ୍ତି ଅକଟ ଅଡ଼ ନ କର ଗୋ ।
ଲାଜ ଭୟ ଛାଡ଼ିଲି ହାକର । ସଜନି ଗୋ । ୧ ।
ଘନଶ୍ୟାମ ଗୁଣମାନ । ରଖିଅଛି କି ମୋ ଧୈର୍ଯ୍ୟ ଗୁମାନ । ଗୋ ।
ମନ ଦହୁଛି ତା ସନମାନ ସଜନି ଗୋ । ୨ ।
ଛୁଛ ମୋହିବା ମୁନିଙ୍କି । ତାଙ୍କୁ ପ୍ରୀତିପଣେ ଯୋଗୀ ମୁଁ କାଳି । ଗୋ ।
ଅଳଙ୍କାର ସେ ତ ଅବନୀକି । ସଜନି ଗୋ । ୩ ।
ଶୁଣି ତାଙ୍କ କଥା ପଦେ । ରମା ଉମା ପ୍ରାଣ ବିକିବେ ପଦେ । ଗୋ ।
ଶଚୀ ନ ବସିବେ ଇନ୍ଦ୍ରପଦେ । ସଜନି ଗୋ । ୪ ।
ଅନାଇଁ ସାହା ବଦନ । ପବି ହେଲେ ହେବ ମୋହ ବଦନ । ଗୋ ।
ସୁଖାନନ୍ଦ ଅମୃତ ସଦନ । ସଜନି ଗୋ । ୫ ।
ଦେଖିଲେ ପଞ୍ଚବରତି । ଦନ୍ତ ତେଜି ଆଚରିବେ ପୀରତି । ଗୋ ।
ନାଗନାରୀ ଲୋଡ଼ିବେ ସୁରତି । ସଜନି ଗୋ । ୬ ।
ଗତି କରନ୍ତେ ପଥରେ । ଦ୍ରବି ହୋଇ ବହିଯିବେ ପଥରେ । ଗୋ ।
ନ ଭୁଲିବ କେ ମନମଥରେ । ସଜନି ଗୋ । ୭ ।
କେବଳ ନେତ୍ରପଥରେ । ପଡ଼ିଗଲା ବାଙ୍କ ତ୍ରିଭଙ୍ଗ ଥରେ । ଗୋ ।
ଅଳସାଏ ମୋ ହୃଦୟ ଥରେ । ସଜନି ଗୋ । ୮ ।

---

୧ । ହାକର—ହସ୍ତେ । ୨ । ଗୁମାନ—ଟେକ । ସନମାନ—ସମ୍ମାନ, ମର୍ଯ୍ୟାଦା । ୫ । ପବି—ବଜ୍ର । ମଦନ—କାମ । ସୁଖାନନ୍ଦ…ସଦନ—ସୁଖ ଓ ଆନନ୍ଦମୟ ଏବଂ ଅମୃତର ଘର । ୬ । ନାଗ—ସାପ । ୭ । ପଥରେ—ବାଟରେ । ଦ୍ରବି—ତରଳିଯାଇ । ପଥର—ପଥରଗୁଡ଼ାକ । ମନମଥରେ—କାମରେ । ୮ । ନେତ୍ର ପଥରେ—ଆଖିଆଗରେ । କେବଳ—ସେତେବେଳେ ଆଖି ଆଗରେ ଆଉ କେହି ନ ଥିଲେ । ଥରେ—କମ୍ପୁଛି ।

Digitized by srujanika@gmail.com

ଦମ୍ଭ ବଳଲେ ପବିକି । ଅଣି ରଖିବ କେ ଗୃହ୍ନି ଛବିକି । ଗୋ ।
ମୁଁ ତ ପାରିଲିନି ମାନ ବାକି । ସଜନି ଗୋ । ୯ ।
ନାହିଁ ପୂର୍ବେ ପୁଣ୍ୟ କରି । ସୁମନେ ମନାଇଁ ନାହିଁ ଶଙ୍କରୀ । ଗୋ ।
ହେବି କି କରି ତାଙ୍କ କିଙ୍କରୀ । ସଜନି ଗୋ । ୧୦ ।
ଗୃହ୍ନି ମୁଖ ଦରପଣେ । ବିମ୍ବିତ ହେଲେ ସେ ପଦ୍ମ ପଣେ । ଗୋ ।
ଶୋଭା ନ ଦିଶିବେ ଦାସୀପଣେ । ସଜନି ଗୋ । ୧୧ ।
ମୁରଲୀ ମୁଖ ସୁନ୍ଦର । ତୋଳା ଖେଳାଇବା ଭଙ୍ଗୀ ସୁନ୍ଦର । ଗୋ ।
ଜାତସ୍ଥଳ ସେ ତ ଅନ୍ଦର । ସଜନି ଗୋ । ୧୨ ।
ସ୍ମିତ ରଙ୍ଗିମା ଅଧରେ । ତ୍ରିଭଙ୍ଗ ଛନ୍ଦରେ ମୁରଲୀ ଧରେ । ଗୋ ।
ନାହିଁ ସେ ଶୋଭା ଅଧ ଊର୍ଦ୍ଧ୍ୱରେ । ସଜନି ଗୋ । ୧୩ ।
ଅଳକାବୃତ ଲପନ । ବେଳେ ବେଳେ କରିଦିଏ କମ୍ପନ । ଗୋ ।
ଦେଖି ନ ଦେଖିବ କେ ସ୍ୱପନ । ସଜନି ଗୋ । ୧୪ ।
ମକରକୁଣ୍ଡଳ ଗତି । ଶ୍ରୁତିରେ ଅଗମ୍ୟ ଶ୍ରୁତି ସଙ୍ଗତି । ଗୋ ।
ଦେଖି ନେବ ପାରିମାଏ ଗତି । ସଜନି ଗୋ । ୧୫ ।
ଗୁଞ୍ଜା ଗୁଞ୍ଜରି ଖଞ୍ଜିତ । ଗୋଟା ମଲ୍ଲୀବେଢ଼ା ଚୂଡ଼ା ରଞ୍ଜିତ । ଗୋ ।
କେକୀପିଚ୍ଛ ତହିଁ ବିରାଜିତ । ସଜନି ଗୋ । ୧୬ ।
ଜାମୁଡାଳ ଖୋଷିବାର । କଅଁପତ୍ରୀ ବେଢ଼ା ତହିଁ ଦେବାର । ଗୋ ।
ଦମ୍ଭନାଶନ ସେ ତ ଯୁବାର । ସଜନି ଗୋ । ୧୭ ।

୮-୯—ଦିନେ ମୋ ନେତ୍ର ପଥରେ-କ, ଖ, ଗ, ଛ, ଠ,

---

୯ । ଦମ୍ଭ—ଟାଣପଣ । ପବି—ବଜ୍ରକୁ । ଛବିକି—ଶୋଭାକୁ । ଅଣି—ଟାଣ । ଦମ୍ଭ...ପବିକି—ବଜ୍ରଠାରୁ ବେଶୀ ଟାଣ ହେଲେ ବି । ୧୦ । ସୁମନେ—ଫୁଲରେ । ଶଙ୍କରୀ—ଦୁର୍ଗା । କିଙ୍କରୀ - ପୋଇଲୀ । ୧୨ । ଜାତସ୍ଥଳ—ଜନ୍ମିବା ସ୍ଥାନ ।

୧୩ । ସ୍ମିତ—ମନ୍ଦ ମନ୍ଦ ହସ । ରଙ୍ଗିମା—ଲାଲରଙ୍ଗ । ଅଧରେ - ଓଠରେ । ଅଧଊର୍ଦ୍ଧ୍ୱରେ—ତଳ ଉପରେ । ଚଉଦ ଭୁବନରେ ଅର୍ଥାତ୍ ୭ ପାତାଳ ଓ ୭ ସ୍ୱର୍ଗରେ ।

୧୪ । ଅଳକାବୃତ ଲପନ—ମୁହଁରେ ଛୋଟ ଛୋଟ ବାଳ ଝୁଲି ପଡ଼ନ୍ତି । କରିଦିଏ କମ୍ପନ—ହଲେଇ ଦିଏ । ୧୫ । ( ଶ୍ରୁତିସଙ୍ଗତି ) କାନରେ ଓହଳିଥିବା (ମକରକୁଣ୍ଡଳ) ମଗରମୁହାଁ କୁଣ୍ଡଳର (ଗତି) ହଲିବା ବା ଦୋହଲିବାରେ ଯେଉଁ ଶୋଭା ଜାତ ହୁଏ, ତାହା (ଶ୍ରୁତିର ଅଗମ୍ୟ) ଶାସ୍ତ୍ର ବା ବେଦ ବର୍ଣ୍ଣି ପାରିବ

Digitized by srujanika@gmail.com

ନାସେ ଗଜ ମୋତିବର । ଥୋପ ମେଲିଛୁ କି କାମଧୀବର । ଗୋ ।
ଭେଦକ ସେ ନେତ୍ର-ଶଫାବର । ସଜନି ଗୋ । ୧୮ ।
ଭାଲେ ଚିତା ଗୋରଚନା । କସ୍ତୁରୀ ତିଳକ ମଧ୍ୟେ ରଚନା । ଗୋ ।
ବିନାଶକ ସେ ବାମଲୋଚନା । ସଜନି ଗୋ । ୧୯ ।
କଣ୍ଠେ କଉସ୍ତୁଭମଣି । କଳା ଘନେ ଜଡ଼େ କି ଦିନମଣି । ଗୋ ।
ଚନ୍ଦ୍ରହାର ନବଗ୍ରହ ମଣି । ସଜନି ଗୋ । ୨୦ ।
ଶୋଭା ପୀତବସନରେ । ବିଜୁଳି ଶୋହେ କି ନବଘନରେ । ଗୋ ।
ଦେଖି ମାନ ନ ରହେ ମନରେ । ସଜନି ଗୋ । ୨୧ ।
କଟିତଟରେ କିଙ୍କିଣୀ । କି ଜାତ ମଧୁର ଶୁଂ ଭ ତା କଣି । ଗୋ ।
ବଳାତ୍କାରେ ମନ ନିଏ କଣି ସଜନି ଗୋ । ୨୨ ।
ପଦେ ରଣିତ ନୂପୁର । ନାଦେ ଚମକାଇ ଅମରପୁର । ଗୋ ।
କାହା ହୃଦ ନୋହେ ରସପୂର । ସଜନି ଗୋ । ୨୩ ।
ନଟବର ମନୋହର । ଦେଖିଲେ ମୋହିତ ହୋଇବେ ହର । ଗୋ ।
ନାସ୍ତି ବାଞ୍ଛା ହେବ ଅଦେହର । ସଜନି ଗୋ । ୨୪ ।
ଅଳକ ସହନନର । ଶୋଭା ନର ନାକ ନାଗ କିନ୍ନର । ଗୋ ।
ମୂଜା ପ୍ରତିମା କି ମଦନର । ସଜନି ଗୋ । ୨୫ ।

---

ନାହିଁ । ୧୭ । ଗୁଞ୍ଜ—କାଇଁଚ । ଗୁଳୁଚ୍ଛ—କାଛେ ପୋକର ପରେ ଝୋଞ୍ଚ ହୋଇଥିବା ମାଳ । କେକିପିଚ୍ଛ— ମୟୂର ଚନ୍ଦ୍ରିକା । ୧୭ । ଜାମୁଡ଼ାଳ—ଜାମୁଡ଼ାଳର କଅଁଳିଆ ପତର ଥିବା ଶ୍ରେଷ୍ଠ ଡାଳ । କଅପଙ୍କ— କଅପୁଳର ଶ୍ରେଷ୍ଠ ପାଖୁଡ଼ା ।

୧୮ । ନାକରେ ବଡ଼ିଆ ଜ୍ୟେମୁକୁତା ଦେଖି ମନେ ହେଉଛି କାମରୂପକ କେଉଟ ମାଛ ଧରିବାକୁ (ଏଠାରେ ଅଖିକୁ ମାଛ ବୋଲି ଗ୍ରହଣ କରିବାକୁ ହେବ) ବନସୀରେ ଥୋପ ବା ଜୀଅଳ ପକାଇଛି କି ? ଭେଦକ......ଶଫାବର...ଅଖି ହେଲା ସେସ୍ପାମାଛ ପରି । ତାକୁ ଫୋଡ଼ ଦେଉଛି ଅର୍ଥାତ୍ ଆଖିକୁ ଟାଣି ରଖୁଛି ।

୧୯ । ବିନାଶକ ସେ ବାମଲୋଚନା—ସ୍ତ୍ରୀଙ୍କୁ ସେ ନାଶ କରୁଛି ।
୨୦ । କଳାଘନେ—କଳାମେଘରେ ( ଏଠାରେ ଛାତିକୁ ଲକ୍ଷ୍ୟ କରାଯାଇଛି ) ।
୨୨ । କଣି—କଣିକଣି ଶବ୍ଦ ।

୨୩ । ରୁଣିତ—ଶବ୍ଦ କରୁଛି । ଅମରପୁର—ସ୍ୱର୍ଗ । ରସପୂର—ରସରେ ଭରପୂର ହେବା ।

୨୪ । ନଟବର ମନୋହର—ନଟଶ୍ରେଷ୍ଠ କୃଷ୍ଣଙ୍କ ଶୋଭା । ଅଦେହ—କାମ ।

Digitized by srujanika@gmail.com

କି ଛାର ନରତରୁଣୀ । ଦେବସ୍ତ୍ରିସ୍ତ୍ରୀ ହେବେ ସୁନ୍ଦରେ ରଣୀ । ଗୋ ।
ଶୋଭା ଦେଖି ରସିବେ ବାରୁଣୀ । ସଜନି ଗୋ । ୨୬ ।
ସେ ଶୋଭାସୃଷ୍ଟି ସାମନ୍ତ । ଅଛଇ ରାଜ୍ୟରେ ଗୁଣ ଜେମନ୍ତ । ଗୋ ।
ଯେବେ ପ୍ରୀତିମ୍ୟା-ପଣ କେମନ୍ତ । ସଜନି ଗୋ । ୨୭ ।
ମୋତେ ଲଭିବା ହିତରେ । ଅନୁମାଇଥାନ୍ତି କେତେ ମନ୍ତ୍ରରେ । ଗୋ ।
ବଶ ନୋହିବେ କେ ତେମନ୍ତରେ । ସଜନି ଗୋ । ୨୮ ।
ମୋ ଗତାଗତ ବାଟରେ । ଜଗି ବସିଥାନ୍ତି ସେ କପଟରେ । ଗୋ ।
ମାନ ଦରଶନ ଲମ୍ପଟରେ । ସଜନି ଗୋ । ୨୯ ।
ଲେଖନ୍ତି ଚଣ୍ଡିପଥରେ । ପ୍ରାଣନ୍ୟାସ ମରେ ମନମଥରେ । ଗୋ ।
ତରୁ ମାର ମୋର ବୋଲି ଥରେ । ସଜନି ଗୋ । ୩୦ ।
ମୋ ପାଦଚିହ୍ନ ଧୂଳିକି । ବୋଲି ଦଅନ୍ତି ସେ ହୃଦସ୍ଥଳୀକି । ଗୋ ।
ଲୁଚି ଯାଇଁ ମେ ସ୍ନେହାବଳୀକି । ସଜନି ଗୋ । ୩୧ ।
କୁସୁମତୋଳା ବନରେ । ଲେଖନ୍ତି କେତକୀ ସୁ-ଛନ୍ଦନରେ । ଗୋ ।
ଗଣି ସଙ୍ଗେ ନାମ ଏ ଧ୍ୟାନରେ । ସଜନି ଗୋ । ୩୨ ।
୧୯-୧—ମୋ ଗଡାଗଡ-୫,୦,

---

**୨୫** । ସଦ୍ମନନର—ଶ୍ରୀମୂର୍ତ୍ତିର ଶୋଭା ନର, ନାକ—ସ୍ୱର୍ଗ । ନାଗ—ସାପ । କିନ୍ନର ଅର୍ଥାତ୍ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଲୋକ ଏବଂ କିନ୍ନରଙ୍କ ସହିତ ଅଲକ୍ଷ—ତୁଲ ହେବ ନାହିଁ । ଧ୍ୱଜା·····ମଦ—କାମର ଧ୍ୱଜାଠାରୁ କି ? ଅର୍ଥାତ୍ କାମଠାରୁ ଅଧିକତର ସୁନ୍ଦର ।

**୨୬** । ନବତରୁଣୀ—ମନୁଷ୍ୟ ସ୍ତ୍ରୀ । ଋଣୀ—ଖାତକ, ଅଧୀନ । ବାରୁଣୀ—ବରୁଣ ।

**୨୭** । ସାମନ୍ତ—ରାଜା । ପ୍ରୀତିମ୍ୟାପଣ—ପ୍ରେମିକପଣ । **୨୮** । ହିତରେ—ମୋତେ ପାଇବା ରୂପ ମଙ୍ଗଳ ପାଇଁ । କେତେ ମନ୍ତ୍ରରେ—କେତେ ପ୍ରକାରରେ । **୨୯** । ଗତାଗତ ବାଟରେ—ଗଲା ଅଇଲା ବାଟରେ । ମାନ·····ଲମ୍ପଟରେ—ଖାଲି ମୋତେ ଦେଖିବାକୁ ଭାରି ଇଚ୍ଛା କରି ।

**୩୦** । ଚଣ୍ଡିପଥରେ—ଯିବା ବାଟରେ ପ୍ରାଣ·····ମଥରେ—ତୁମଠାରେ ପ୍ରାଣକୁ ବନ୍ଧକ ଦେଇଥିବା ମୁଁ କାମରେ (ସରେ) ନାଶ ହେଉଅଛି । ତୁମ୍ଭେ ମୋତେ 'ମୋର' ବୋଲି କୁହ । ମାର—କାମ । ତରୁ—ତରିଯାଉ ।

**୩୧** । ଲୁଚିଯାଇ·····ସ୍ନେହାବଳୀକି—ସେ ସ୍ନେହ କଥାକୁ କିଏ କହିବ । ମନ୍ଦିଯାଏ କି ?

Digitized by srujanika@gmail.com

ମଧୁପଙ୍କୁ ମାଧବିକା । ଯେମନ୍ତ ତେମନ୍ତ ତୁ ମୋ ଜୀବିକା । ଗୋ ।
ସ୍ୱଇଚ୍ଛାରେ ମୁଁ ହୋଇଛୁ ବିକା । ସଜନି ଗୋ । ୩୩ ।
ଏହା ପଡ଼ିଲା ଦିନରୁ । ପାଶୋର ନ ଗଲା ଦଣ୍ଡେ ମନରୁ । ଗୋ ।
ସେ ତ ଅଧିକ ମୋ ଜୀବନରୁ ସଜନି । ଗୋ । ୩୪ ।
କହନ୍ତୁ ମିତ ଆଗରେ । ଝାସ ଦେବି ଯାଇ ଗଙ୍ଗାସାଗରେ । ଗୋ ।
ଛଳ ହେବି ବନ୍ଧୁ ଶ୍ରୀଅଙ୍ଗରେ । ସଜନି ଗୋ । ୩୫ ।
ତା ନାମ ଗାଇ ତୁଣ୍ଡରେ । ପ୍ରୀତି-ଡମ୍ବରୁ ବଜାଇ ଦାଣ୍ଡରେ । ଗୋ ।
ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ । ସଜନି ଗୋ । ୩୬ ।
ତା ନାମ ଲେଖା ସ୍ତୁପରେ । ଗ୍ରନ୍ଥ ହୋଇଥିବ ହୃଦ ଉପରେ । ଗୋ ।
ଧ୍ୟାଉଥିବି ତାହା ସରୂପରେ । ସଜନି ଗୋ । ୩୭ ।
ଯେବେ ଯାଇ ସନ୍ନିଧିରେ । ଜଣାଇବ ମୋବେ କୃପାନିଧିରେ । ଗୋ ।
ଦୟା ହୋଇବ ନାହିଁ କି ଧୀରେ । ସଜନି ଗୋ । ୩୮ ।
ଏହା ଯେବେ ଶୁଣାଯିବ । ପଥର ହେଲେ ତ ତରଳି ଯିବ । ଗୋ ।
ପତିବ୍ରତା କେ ବା ନ ତେଜିବ । ସଜନି ଗୋ । ୩୯ ।
ଭୃଙ୍ଗ ଭୋଗ ଚନ୍ଦ୍ରମଲ୍ଲୀ । ଦେଖି ଦେଖାନ୍ତି ଠାରି ଦେଇ ମଲ୍ଲି । ଗୋ ।
ଏହା ଦେଖି କାହିଁକି ନ ମଲି । ସଜନି ଗୋ । ୪୦ ।

୩୬-୨—ପ୍ରେମ ଡମ୍ବରୁ କ, ଖ ଚ; ଠ । ୩୭-୩—ସ୍ୱରୂପରେ-କ, ଖ, ଗ, ଘ, ଚ, ଛ, ସ୍ୱରୂପର ଅପଭ୍ରଂଶ—ସରୂପ ।

---

୩୨ । ସୁ-ଛନ୍ଦନରେ—ଭଲ ପାଖୁଡ଼ାରେ । ସାନରେ—ଟେରେଇ । ଗଣ ସଙ୍ଗେ—ଭୃଙ୍ଗରଙ୍କ ସାଙ୍ଗରେ । ଗଣ—ଦେଇ । ୩୩ । ମଧୁପଙ୍କୁ—ଭଅଁରଙ୍କୁ ମାଧବୀକା—ମାଧବୀ ଫୁଲ । ଜୀବିକା—ଜୀବନ ଧରି ରଖିଥିବା ଉପାୟ । ୩୫ । ଛଳ—ଖସା, ଦେହରେ ଥିବା କଳାଚିହ୍ନ ବିଶେଷ । ୩୬ । ପ୍ରୀତିଡମ୍ବରୁ—ପ୍ରେମର ନାଗରା ।

୩୭ । ତା······ସ୍ତୁପରେ—ରାଧା ନାମ ଲେଖା ହୋଇଥିବା ସ୍ତୁପାରେ । ଗ୍ରନ୍ଥ ହୋଇଥିବ—ଗ୍ରନ୍ଥି ହୋଇଥିବ । ସରୂପ—ସ୍ୱରୂପ । ୩୮ । ଧୀରେ—ମନରେ ।
୪୦ । ଚନ୍ଦ୍ରମଲ୍ଲୀ (ଫୁଲ ବିଶେଷ)କୁ ଭଅଁର ଭୋଗ କରୁଥିବାର (ରସ ପିଉଥିବାର ଦେଖି) (ମଲ) ମରିଗଲି ବୋଲି ଠାରି ଦେଇ ଦେଖାନ୍ତି । ନ ମଲି—ମରିଗଲି ନାହିଁ ।

Digitized by srujanika@gmail.com

ରଜକୀ ତୋଷି ଧନରେ । ବୋଲୁଥାନ୍ତି କେବଳ ସନମାନରେ । ଗୋ ।
ମୋ ବସନ ଅଙ୍ଗ ମିଳନରେ । ସଜନି ଗୋ । ୪୧ ।
ମୋ ସ୍ନାନ ତଳ ଘାଟରେ । ଗ୍ରସିଲ ବୋଲି ପ୍ଳବନ୍ତି ହଟରେ । ଗୋ ।
ଛଡ଼ା କୁଙ୍କୁମ ଲବ୍ଧ ଲଟରେ । ସଜନି ଗୋ । ୪୨ ।
ଛଡ଼ା ମାନଙ୍କୁ ଲୋଡ଼ାଇ । କ ସ୍ନେହେ ନେଇ ବୃନ୍ଦାରେ ଗୁଡ଼ାଇ । ଗୋ ।
ହେଲ ଇନ୍ଦ୍ର କରନ୍ତି ବଢ଼ାଇ । ସଜନି ଗୋ । ୪୩ ।
ଚୂତ ପଲ୍ଲବପତର । ହୃଦରେ ଲଦନ୍ତି ହୋଇ କାତର । ଗୋ ।
ବାସ ପରଧାନ ହବ୍ଭର । ସଜନି ଗୋ । ୪୪ ।
ଗୋରଚନା ଶତା ଭାଲରେ । ବସନ୍ତପକ୍ଷୀ ଧରନ୍ତି ଜାଲରେ । ଗୋ ।
ନେତ୍ର ସ୍ଥାପିତ ଷଣଫୁଲରେ । ସଜନି ଗୋ । ୪୫ ।
କଣଳମ୍ବ ଭାଙ୍ଗି କରେ । ଅଧରେ ଖୋଷନ୍ତି ସେ ମସ୍ତକରେ । ଗୋ ।
କର କାବେଶନ୍ତି କର କରେ । ସଜନି ଗୋ । ୪୬ ।
ଧର ଅଳି ନଳିନରେ । ମିଳାନ୍ତି ପୁଣି କ ଯେନି ମନରେ । ଗୋ ।
ମୁଖୀ ଦେଖି ଖେଳା-ଖଞ୍ଜନରେ । ସଜନି ଗୋ । ୪୭ ।

୪୨—୧—ତଳଘାଟରେ ଗ, ଘ, ଙ, ଝ ।

---

୪୧ । ରଜକୀ—ଧୋବଣୀ । ସନମାନରେ—ମର୍ଯ୍ୟାଦାରେ । ମୋ (ବାସନା) ଲୁଗାକୁ ଅଙ୍ଗମିଳନ ଦେହରେ ଲଗାଇବାକୁ ।

୪୨ । ମୋ ଗାଧୁଆ ଘାଟର (ତଳଘାଟରେ) ତଳେ ଗ୍ରସିଲ ବୋଲି କହ ହଟରେ (ପ୍ଳବନ୍ତି) ପହଁରନ୍ତି । ଲବ୍ଧଲଟରେ—ପାଇବା ବାହାନାରେ ଅର୍ଥାତ୍ ମୋତେ ପାଇବା ପାଇଁ ମୋ ଗାଧୁଆ ଘାଟରେ ତଳେ ପହଁରନ୍ତି । କାରଣ ମୋ ଦେହର ଛଡ଼ା କୁଙ୍କୁମ ସୁଅରେ ବୋହିଯାଇ ତାଙ୍କ ଦେହରେ ଲାଗିବ ।

୪୩ । ଲୋଡ଼ାଇ—ଖୋଜାଇ । ବୃନ୍ଦାରେ—ମନ୍ଥୁଡ଼ରେ ବା କୁଡ଼ାରେ ।

୪୪ । ଚୂତ ପଲ୍ଲବ ପତର—ଆମ୍ବ ଗଛର ପାଚିଲା ପତର । ହବ୍ଭର ଅର୍ଥାତ୍ ହଳଦିଆ ବାସ ବା ଲୁଗା ପରିଧାନ ପିନ୍ଧନ୍ତି । ରାଧାଙ୍କ ଦେହର ବର୍ଣ୍ଣ ସଙ୍ଗେ ଏ ସବୁ ସମାନ ହେବାରୁ କୃଷ୍ଣ ଏପରି କରନ୍ତି ।

୪୫ । ଗୋରଚନା—ଗୋରଚନା । ବସନ୍ତ ପକ୍ଷୀ—ହଳଦୀବସନ୍ତ ଚଢ଼େଇ ନେତ୍ର...ଷଣ ଫୁଲରେ—ଛଣପଟ ଫୁଲରେ ଆଖି ଲାଖି ରହେ । ( ରାଧାଙ୍କର ବର୍ଣ୍ଣ ସମତା ହେତୁ)

୪୬ । କଣଳମ୍ବ—କଅଁଳିଆ ପତର (ଓଠର ବର୍ଣ୍ଣ—କଅଁଳ ପତ୍ରର ରକ୍ତିମା ସଦୃଶ) । କରେ—ହାତରେ । କର କରେ—ଡାଳିମ୍ବରେ । କର କବେଶନ୍ତି—ଦାନ୍ତ ଦିଅନ୍ତି । (ଡାଳିମ୍ବ—ଦନ୍ତପଂକ୍ତି ସଦୃଶ) ।



Digitized by srujanika@gmail.com

ଶୁଣି ପିକ-ଭାରତୀକି । ଧୀରେ ନବେଶନ୍ତି ଦକ୍ଷ ଶ୍ରୁତିକି । ଗୋ ।
 କେତେ ପ୍ରଶଂସା ହଂସଗତିକି । ସଜନି ଗୋ । ୪୮ ।
ଦେଖିଲେ ନବ ତମାଳ । ଝଳି ଦେଉଥାନ୍ତି କୁସୁମମାଳ । ଗୋ ।
 କରୁଥାନ୍ତି କୋଳକୁ ତମାଳ । ସଜନି ଗୋ । ୪୯ ।
ଚୁମ୍ବୁଁ ପଦ୍ମ ବଂଶୀଧର । ଗୋଳ ହୋଇଯାଉଥାଇ ଅଧର । ଗୋ ।
 ନେତ୍ର ହୋଇଯାଇ ଜଳଧର । ସଜନି ଗୋ । ୫୦ ।
ଏ ଜାତ ସମସ୍ତାମାନ । କରୁଛ ଏହା କେ କି ଅନୁମାନ । ଗୋ ।
 ମୁଁ ଘେନୁଛି ଏ ମୋ ସନମାନ । ସଜନି ଗୋ । ୫୧ ।
ଦେଖି ଶୁଣି ଜାଣିକରି । କହିଁ ଗୁଆଁ ସ୍ତ ତେଜିବ କି କରି । ଗୋ ।
 ମାନସ ତ ଅବାରଣ କରୀ । ସଜନି ଗୋ । ୫୨ ।
ଧରୁଛି ଚୁମ୍ବିବ କର । ସଖୀପଣ-ଗୁଣ ଏତିକି କର । ଗୋ ।
 ନେଇ କରାଅ ତା ପରିକର । ସଜନି ଗୋ । ୫୩ ।
ସେ ଯେତେ ସ୍ୱିତ ରଚଇ । ହୃଦ ଭିତରେ ତ ମୋର ନାଚଇ । ଗୋ ।
 ତାହା ବିନା କି ରାଧା ବଞ୍ଚଇ । ସଜନି ଗୋ । ୫୪ ।

୫୨—୨—ବୋଲିବ ଜଙ୍କଣ ଗ, ଘ, ଠ, ଠ । ୫୩—୨—ସଖୀଗଣ ଗୁଣ—ଭ, ଶ, ଭ, ଠ, ଠ । ୫୩—୨ ସଖୀଗଣ ଗୁଣ କ, ଖ, ଭ, ଠ, ଠ,

---

୪୭ । ଅଳ—ଭଅଁର । ନଳିନ—ପଦ୍ମ । ଭଅଁର ଓ ପଦ୍ମକୁ କୃଷ୍ଣ ମିଳାନ୍ତି (ଚକ୍ଷୁର ସାଦୃଶ୍ୟ) (ଖେଳା ଖଞ୍ଜନ) ଖେଳୁଥିବା ଘୃକାଳିକା ଚନ୍ଦ୍ରେଇଙ୍କ ଦେଖି ଖୁସୀ ହୁଅନ୍ତି ।

୪୮ । ପିକ-ଭାରତୀ—କୋଇଲିର କୁହୁତାନ (ରାଧାଙ୍କ ମଧୁର ବାଣୀ) । ଦକ୍ଷଶ୍ରୁତି—ଡାହାଣ ପାଖ କାନ । ଗତି—ଗୃଳି ।

୪୯ । ନବ ତମାଳ—ନୂଆ ତମାଳଗଛ । ତମାଳକୁ କୋଳ କରନ୍ତି । ପଦ୍ମ ଦେଖି ରାଧାଙ୍କ ମୁଖ ଚୁମ୍ବନ କରିବା ଅଭିପ୍ରାୟରେ ଓଠ ଗୋଳ ହୋଇଯାଏ ।

୫୦ । ଜଳଧର—ମେଘ । ନେତ୍ର... ଜଳଧର—ଲୁହରେ ଆଖି ଛଳ ଛଳ ହୋଇଯାଏ ।

୫୧ । ଗୁଆଁସ୍ତ—ହୁଣ୍ଡୀ । ମାନସ...କରୀ—ମନହେଲା ହାତୀ । ସେ ହାତୀ ଅଙ୍କୁଶ ମାନେ ନାହିଁ । ୫୩ । କର—ହାତ । ସଖୀ...କର—ସଖୀପଣିଆରେ ଏତିକି ଗୁଣ ଉପକାର କର ବା ସଖୀମାନେ । ପରିକର—ଦାସୀ । ୫୪ । ସ୍ୱିତ—ନବରଙ୍ଗ ।

Digitized by srujanika@gmail.com

ବାଜୁ ଭୂଷଣ ଘୋଷଣ । ହେଲେ ହେବ ପଛେ ନାନା କଷଣ । ଗୋ ।
ମୁଁ ତ କଲିନ ନାନ୍ଦା ଭୂଷଣ । ସଜନି ଗୋ । ୫୫ ।
ଭସ୍ମକୁ ତେଜ ବହନ । ବେଗେ ଦେଖାଅ ସେ କାମମୋହନ ଗୋ ।
ହେଲା କଲେ ହେଲଣି ଦହନ । ସଜନି ଗୋ । ୫୬ ।
ଶୁଣି କିଶୋରୀ ଭାରତୀ । ସଖୀସମୂହ ହୋଇଲେ ଆରତି । ଗୋ ।
ହୃଦ ଭିତର ହେଲା କରତି । ସଜନି ଗୋ । ୫୭ ।
ଦୀନ ଅଭିମନ୍ୟୁ ଜୀବ । ରାଧା ଭାବ ଭାବି ବାହାର ଯିବ । ଗୋ ।
ଏ ଭାଗ୍ୟ କି ସତେ ଦେଖାଯିବ । ସଜନି ଗୋ । ୫୮ ।
୫୮—ସତେ ଏ ଭାଗ୍ୟ କି ଦେଖାଯିବ-ଗ, ଘ, ଙ, ଟ, ଠ,

---

## ୪ ଊନପଞ୍ଚାଶ ଛାନ୍ଦ

### ଶ୍ରୀ କିଶୋରୀଙ୍କର ଦଶା ; ସଖୀ ଅନୁଚିନ୍ତା

ରାଗ ବରାଡ଼ି—ଅଷାଢ଼ଶୁକ୍ଳ ବାଣୀରେ ।

ରସିକମାନେ ଶୁଣ ଦେଇ ମନ । ରମଣୀମଣି ଦିନୁ ଦିନୁ ଦୀନ ।
ରତିପତି ଗାତ୍ର କରତିବାରେ । ରସ ନାସ ଗ୍ରାସ ବେଶ ବାସରେ ।
ରହିତ ଆଦର ହେ । ରସା ରସି ଯାରେ ନଶି ବାସର । ୧ ।
୧—ରସାଳସୀ—ଛ, ଝ, ବ୍ୟତୀତ ସମସ୍ତ ପୋଥିରେ

---

୫୫ । ବାଜୁ—ଘୋଷଣ—ନନ୍ଦାର ଧର୍ଣ୍ଣୁର ବାଜୁ । କଷଣ—କଷ୍ଟ । ଘୋଷଣା—ଶବ୍ଦ । ଭୂଷଣ—ଅଳଙ୍କାର । ୫୬ । ବହନ—ଶୀଘ୍ର । କାମ ମୋହନ-ମଦନମୋହନ, କୃଷ୍ଣ ।

୫୭ । କିଶୋରୀ ଭାରତୀ – ରାଧାଙ୍କ କଥା । ଆରତି—ଦୁଃଖ ।

୧ । ହେ ରସିକମାନେ ମନଦେଇ ଶୁଣ, ରମଣୀମଣି ଦିନୁଦିନୁ—ଦିନକୁ ଦିନ, ଦୀନ —ଦୁଃଖୀ, ରତିପତି—କନ୍ଦର୍ପ, ଗାତ୍ର – ହୃଦୟକୁ, କରତିବାରେ—କାଟିବାରେ, ରସ—ରସନେନ୍ଦ୍ରିୟ ଗ୍ରାହ୍ୟ ଖାଦ୍ୟଦ୍ରବ୍ୟ, ନାସ—ମନ୍ଦନାସାଦ୍. ଗ୍ରାସ-ଭୋଜନାଦ୍, ବେଶ ବାସ—ବସ୍ତ୍ର ପିନ୍ଧିବାଦ୍; ଏମାନଙ୍କରେ ଆଦର—ସ୍ନେହ ରହିତ ହୋଇବାରୁ, ରସାରେ—ପୃଥ୍ୱୀରେ, ରସି—ଶୋଇ, ନଶି—ରାତି, ବାସର—ଦିବସ, ଯାରେ—କଟାଏ ।

Digitized by srujanika@gmail.com

ସଜ-ସରୋଜମୁଖୀ ଦୁଖ ଦେଖି । ସଜନୀନିକର ନିରତେ ଦୁଖୀ ।
ସକଳେ ବସି କରନ୍ତି ଭାବନା । ସହି ସହିଲ ଏ ଜାତ ବେଦନା ।
ସମସ୍ତେ ତ ଥାଇଁ ଗୋ । ସଙ୍ଗୀ ଗୁଣେ ତ କିଛି ନ କଲାଇଁ । ୨ ।
ବିଅର୍ଥେ ଅଛି ଯାଉଛି ପରାଣ । ବିଷମ ବେଦନାକୁ କେ କି ଜାଣ ।
ବିନ୍ଧୁଛି ମାର ଶର ବାରବାର । ବିକଳ ଜଳ କଳନା କି ତାର ।
ବିଶୀର୍ଣ୍ଣ ଏମନ୍ତ ଯେ । ବିଧୁ ଦ୍ୱିତୀୟା ତିଥିରେ ଯେମନ୍ତ । ୩ ।
ଧରଣୀଶୟନରେ ସରିଲା ଦିନ । ଧରଜନ ପରି ମନ ବିମନ ।
ଧବଳକର ପରି ଦିଶେ ତନୁ । ଧର ଧର ମିତ ଜାତ ବଦନୁ ।
ଧରିବ କେ ଛନ୍ତି ଗୋ । ଧରାମଣ୍ଡନାର ଦେଖି ବିପତ୍ତି । ୪ ।
ବଧିବା ପାଇଁ ଅବଧ ଯୋଷିତ । ବଳିଲ କେହୁ ଗୋ ଦଇବ ସତ ।
ବନପଶୁ ଦେଖି ଯାହା ବଦନ । ବଶ ହେବେ ତାକୁ ବଳେ ମଦନ ।
ବଧୁ-ବଧ-ବ୍ୟାଧ ହେ । ବଦନ୍ତି ରସରାଜ କପାଁ ବୁଧ । ୫ ।
୫—୨ ପାଠାନ୍ତର—ଗ, ଘ, ଚ, ଛ, ଠ,

---

୨ । ସଜସରୋଜମୁଖୀ—ସଦ୍ୟପ୍ରସ୍ଫୁଟିତ ପଦ୍ମମୁଖୀ; ରାଧାର ଦୁଃଖ ଦେଖି ସଜନୀନିକର—ସଖୀସମୂହ, ନିରତେ—ସବୁବେଳେ, ଦୁଃଖୀ ହୋଇ ସକଳେ—ସମସ୍ତେ ବସି ଭାବନା କରନ୍ତି; ସହି—ରାଧା, ଏ ଜାତ—ଏପରି, ବେଦନା—ଦୁଃଖ ସହିଲ । ସମସ୍ତେ—ସକଳେ ତ । ଥାଇ—ଅଛୁ, ସଙ୍ଗୀ ଗୁଣେ ତ—ମିତ୍ରର ଗୁଣରେ କିଛି କରିପାରିଲୁ ନାହିଁ ।

୩ । ବିଅର୍ଥେ—ବିନା କାରଣରେ, ପରାଣ—ପ୍ରାଣ ଯାଉଛି ଅଛି । ବିଷମ ବେଦନାକୁ—କନ୍ଦର୍ପ ଦୁଃଖକୁ କେ—କେଉଁମାନେ କି ଉପାୟ ଜାଣ । ମାର—କାମ, ଶର—ବାଣ, ବାରବାର—ଥରକୁଥର ବିନ୍ଧୁଛି । ବିକଳଜଳ—ବ୍ୟାକୁଳ ଧ୍ୱନି, ତାର—ରାଧାଙ୍କର, କଳନା—ପ୍ରମାଣ । କି କରିପାରିବା ଏମନ୍ତ ବିଶୀର୍ଣ୍ଣ—ଏହିପରି କ୍ଷୀଣ, ଦ୍ୱିତୀୟା ତିଥିରେ ବିଧୁ—ଚନ୍ଦ୍ର, ଯେମନ୍ତ—ଯେଉଁପରି କ୍ଷୀଣ ।

୪ । ଧରଣୀଶୟନରେ—ପୃଥ୍ୱୀରେ ଶୋଇବାରେ, ଦିନ—ଦିବସ ସାରିଲା । ଧରଜନପରି—ବନ୍ଦୀଲୋକ ପରି, ମନ—ଚିତ୍ତ, ବିମନ—ଶୁଖିଯାଉଛି । ତନୁ—ଦେହ, ଧବଳକର ପରି—ଚନ୍ଦ୍ରପରି ଦିଶେ । ବଦନୁ—ମୁଖରୁ, ହେ ମିତ ଧର ଧର । ଜାତ—ଜାତ ହୁଏ । କେ ଛନ୍ତି ହୃଦୟ ଧରିବ, ଧରାମଣ୍ଡନାର—ପୃଥିବୀର ଏ ବିପତ୍ତି ଦେଖି ।

୫ । ଅବଧ—ବଧଯୋଗ୍ୟ ନୁହେଁ, ଯୋଷିତ—ସ୍ତ୍ରୀକୁ, ବଧିବା ପାଇଁ—ମାରିବା ପାଇଁ, ଦଇବ—ବିଧାତା, ସତ—ବଳ, କେହୁ—କେଉଁପରି, ବଳିଲ—

Digitized by srujanika@gmail.com

ଶିବ ନୟନାନଳର କି ତେଜ । ଶିବଦ ହୋଇ କଲେ ତ ମନୋଜ ।
ସିଦ୍ଧେ ମାରିଥିଲେ ମନୁ କି ଅସେ । ସିଂହ ପରାଏ ଏବେତ ପଲ୍ଲଣେ ।
ସିଦ୍ଧାଣୀ ହାତକୁ ଯେ । ଶିଖି ମନ୍ତ୍ର ଝାଡ଼ିବା ସେ ପ୍ରେତକୁ । ୬ ।
ଅନ୍ତ ହୋଇବ କି ରୂପେ ବସନ୍ତ । ଅନ୍ତର୍ଗତରେ ଗୋ ଜପାସ୍ତୁ ଛନ୍ତ ।
ଅମ୍ବୁଯନ୍ତ୍ର ପୁରେ ଶୁଆନ୍ତାନ୍ତି । ଅଙ୍ଗନା ଋତୁଭ୍ରମ ହେବାପାଇଁ ।
ଅନଙ୍ଗ ଗୃଣ୍ଡାଳ ଗୋ । ଅପଋତୁରେ ଦ୍ୱିଗୁଣ ପ୍ରବଳ । ୭ ।
ଦକ୍ଷିଣ ପବନ ବାମ ହୋଇଛି । ଦୈତ୍ୟମାତରୁ କି ଜାତ ହୋଇଛି ।
ଦବ ବାଡ଼ବ ସଂସର୍ଗ ଗୁଣକୁ । ଦଗ୍ଧ କରୁଛି ବିଯୋଗିଗଣକୁ ।
ଦର୍ପକର ଏହି ଯେ । ଦର୍ବୀକରେଚ୍ଛିନ୍ନ ପୃଷ୍ଠକୁ ବଢ଼ । ୮ ।

---

ଉଲ୍ଲାସ, ଯାହା ବଦନ—ଯେଉଁ ସାଧୁ ମୁଖ, ବନପଶୁ—ବନଜୀବମାନେ, ବେଶି—ସ୍ତୁତି, ମଦନବଳେ—କାମପ୍ରଭାବରେ, ବଶ ହେବେ—ଅଧୀନ ହେବେ । ବଧୂ—ସାଧ୍ୱୀକୁ, ବଧ—ନାଶ କରିବାରେ, ବ୍ୟାଧ—ଶବର । ଅର୍ଥାତ୍ ଶବର ହରିଣାଦିଙ୍କୁ ମାରିଲା ପରି କନ୍ଦର୍ପ ମାରୁଛି । ବୁଧ—ପଣ୍ଡିତମାନେ, ମଦନକୁ ରସଗ୍ରାହୀ—ରସିକ ଶ୍ରେଷ୍ଠ କିପାଁ ବଦନ୍ତି—କାହିଁକି କହନ୍ତି କହିଲ ସଖୀମାନେ ପ୍ରକୃତ ରସିକଶ୍ରେଷ୍ଠ ନାୟିକାକୁ କଷଣ ଦିଏ ନାହିଁ ।

୬ । ଶିବ ନୟନାନଳର କି ତେଜ—ମହାଦେବଙ୍କର ନୟନାଗ୍ନିର ତେଜ କିଛି ନୁହେଁ । ଶିବଦ ହୋଇ—ମଙ୍ଗଳପ୍ରଦ ହୋଇ, ମନୋଜ କଲେ ତ—ମନରୁ ଜାତ କରାଇବାର ବିଧାନ କଲେ । ସିଦ୍ଧେ—ବଳକରି ମାରିଥିଲେ, ମନୁ—ମନରୁ ଅସନ୍ତା କି । ଏବେ—ବର୍ତ୍ତମାନେ । ସିଂହପରାଏ ପଲ୍ଲଣେ—(ଆକ୍ରମଣ କରିବାରେ ବିକ୍ରମ ଦେଖାଏ) ଉଠେ । ସିଦ୍ଧାଣୀ—ଚତୁରୀ ହାତକୁ, ମଙ୍ଗଳ ପାଇଁ ମନ୍ତ୍ର ଶିଖି ସେ ପ୍ରେତକୁ—ମଲା କନ୍ଦର୍ପକୁ ଅର୍ଥାତ୍ ଭୂତକୁ ଝାଡ଼ିବା—ତା ଦେହରୁ ଦୂର କରିବା ।

୭ । ବସନ୍ତ—ବସନ୍ତକାଳ, କି ରୂପେ ଅନ୍ତ ହୋଇବ—ସରିବ ଗୋ ସଖୀମାନେ । ଅନ୍ତର୍ଗତରେ—ଅନ୍ତଃକରଣରେ, ଜପାସ୍ତୁ ଛନ୍ତା—ଛନ୍ତାବର ଅଙ୍ଗନା - ସାଧାର ଋତୁଭ୍ରମ—ବସନ୍ତରେ ବର୍ଷାଋତୁ ଭ୍ରମ ହେବାପାଇଁ ଅମ୍ବୁଯନ୍ତ-ପୁରେ ଜଳଯନ୍ତ୍ରପୁରେ ଶୁଆନ୍ତାନ୍ତି । ଅନଙ୍ଗ—କାମ, ଗୃଣ୍ଡାଳ ନିର୍ଦ୍ଦୟ ଅପଋତୁରେ—ଋତୁ ଗଲେ ସୁଦ୍ଧା ଅନ୍ୟ ଋତୁରେ ଦ୍ୱିଗୁଣ—ବହୁତ ପ୍ରବଳ ହୁଏ ।

୮ । ଦକ୍ଷିଣ ପବନ ବାମ—ବକ୍ର ହୋଇଛି । ଦୈତ୍ୟମାତରୁ—ଏ ଦିତିଙ୍କ ଠାରୁ ଜାତ ହୋଇଛି । ଅଦିତିଙ୍କ ଗର୍ଭରେ ଥିଲାବେଳେ ଇନ୍ଦ୍ର ବଜ୍ରରେ ତାକୁ ୪୯ ଖଣ୍ଡ କରିଥିଲେ । ତେବେସୁଦ୍ଧା ତାର ପ୍ରାଣ ଯାଇ ନ ଥିଲା । ଦବ—ବନାଗ୍ନି ବାଡ଼ବ—ସମୁଦ୍ରରେ ଥିବା ଅଗ୍ନି, ଏ ଦୁହିଁଙ୍କ ସଂସର୍ଗ—ସାଙ୍ଗରୁ, ଗୁଣକୁ—ଦାହଗୁଣକୁ,

Digitized by srujanika@gmail.com

ମଳୟଗିରିଗୁଣ୍ଟି ବଖିଣିଲେ । ମନେ ମାନେ ହନୁମାନେ ନନ୍ଦିଲେ ।
ମର ମର ବୋଲି ସାପେ କେ ଶାପେ । ମନ୍ଦ ପୁରନ୍ଦର ବୋଲେ କେ କୋପେ
ମହିମା ନ ଥିଲେ ଯେ । ମହତ୍ତ ଗର୍ବ କେ ବୋଲେ କେ ବୋଲେ ।୯।
କହେ କେ ସଖୀକି ଏ ଦୋଷାକର । କଳାଏ କଳା ଏ ହର ମିତର ।
କଳାନିଧି ବୃଦ୍ଧି ଏ ଯେନ ଦେଖ । କରି ଭଗାରିପକ୍ଷ ଦିଏ ଦୁଖ ।
କମଳିନୀ ଅରି ଯେ । କରକରତେ କରତେ କି କରି । ୧୦ ।

୧୦—୨ କଳା ଏ ହରଣଙ୍କର-କ, ଖ, ଝ, ଠ, ୧୧-୧ ଜଗତେ କଳଙ୍କୀ-କ, ଖ, ଠ, ଝ; ୧୧—୨ ଜଗତ ଗୁରୁବାମା ।

ବିଯୋଗିଗଣଙ୍କୁ—ବିରହିଗଣଙ୍କୁ ଦଣ୍ଡ କରୁଛି—ନର୍ଥ ପଣ ଦେବାକୁ ଲାଗୁଛି । ଏହି ପବନ ଦର୍ଶକର ମଳୟ ପର୍ବତରେ ଥିବା କ୍ରୂର ସର୍ପର ଉଚ୍ଛିଷ୍ଟ ଅଇଁଠା ଖାଇ ପୁଷ୍ଟ ହୋଇ ବହୁ ତାପ ଦେଉଛି । ସାପ ପାଟିରୁ ବାହାରିଲା ବେଳେ ବିଷ ସାଙ୍ଗରେ ଲାଗି ଆସିଥିବାରୁ ଦର୍ପକର—ବଳକାରକ ହୋଇ ତାପ ଦେଉଛି । ଦର୍ପକର କନ୍ଦର୍ପର ଏହି ମିତ୍ର ।

୯ । ଏହି ପବନ ମଳୟଗିରି - ମଳୟ ପର୍ବତରେ, ଗୁଣ୍ଠି—ସଞ୍ଚାର କରେ, ଏହି କଥା ସଖୀମାନେ ବଖିଣିଲେ । ମନେ—ଭିତରେ, ହନୁମାନଙ୍କୁ ନନ୍ଦିଲେ—ନିନ୍ଦା କଲେ । ହନୁମାନ ସେତୁବନ୍ଧ କଲାବେଳେ ମଳୟ ପର୍ବତକୁ ଉପୁଡ଼ାଇ ସମୁଦ୍ରରେ ପକାଇ ଥିଲେ, ଏ ପବନ ମଳୟ ପର୍ବତରେ ସଞ୍ଚାର କରି ଆମ୍ଭଙ୍କୁ ପୀଡ଼ା ଦେଇପାରନ୍ତା କି ? ଏହିହେତୁ ହନୁମାନଙ୍କୁ ନିନ୍ଦିଲେ । କେଉଁମାନେ—କେଉଁ ସଖୀମାନେ । ତୁ ମର ମର—ତୁ ବିନାଶ ହୁଅ ବୋଲି କହି । ସାପେ—ସାପଙ୍କୁ ଶାପେ—ଶାପ ଦିଅନ୍ତି । କେଉଁମାନେ ପୁରନ୍ଦର—ଇନ୍ଦ୍ର । ମନ୍ଦ—ମୂର୍ଖ । କୋପେ—କ୍ରୋଧରେ, ମହିମା—ମହତ୍ତ୍ୱ ନ ଥିଲେ । ଗର୍ବ ମହତ—ଅଭିମାନ ବଡ଼ । କେ ବୋଲେ—କିଏ କହେ । ଇନ୍ଦ୍ର ହିଁଙ୍କ ଗର୍ବରୁ ଯେବେ ତାଙ୍କୁ ନିଶେଷ କରି ମାରିଦେଇ ଥାଆନ୍ତେ ତେବେ ଏ ପବନ ଆମ୍ଭଙ୍କୁ ଏତେ ପୀଡ଼ା କାହିଁକି ଦିଅନ୍ତା ?

୧୦ । କେହି ସଖୀ—ସଖୀକି କହେ, ଦୋଷାକର—ଚନ୍ଦ୍ରର ନାମ ଦୋଷକର । ତାକୁ ଅନ୍ୟ ଅର୍ଥରେ ଦୋଷମାନଙ୍କର ଆକର ସ୍ଥାନ ଚନ୍ଦ୍ର ବୁଝିବ । ମିତର—ଗଧାଙ୍କର, ଏ ଚନ୍ଦ୍ର ଦେହ ଶୋଭା—ଦେହଶୋଭା କଳାଏ କଳାଏ ହର ହରଣ କରିବାରୁ । ଏ ଯେନ—ଏହି ହେତୁରୁ, କଳାନିଧି ବୃଦ୍ଧି ହୁଏ ଦେଖ । ଏହି ଗଧାଙ୍କ ଦେହ ଶୋଭାରୁ କଳାଏ କଳାଏ ନେଇ ନିଜ ଦେହ କଳା ବୃଦ୍ଧି କରୁଛି ଦେଖ । ଭଗାରିପକ୍ଷ କରି—ଶତ୍ରୁପକ୍ଷ କରି ଦୁଃଖ ଦିଏ । କମଳିନୀ ଅରି —ପଦ୍ମ ଲଜ୍ଜାକାର ଅରି ବା ପଦ୍ମିନୀ ଗଧାର ଶତ୍ରୁ । କର କରତେ—କରଣରୂପ କରତରେ କି କରି କରତେ ।

Digitized by srujanika@gmail.com

ଜଗତେ କଳଙ୍କୀ ନାମ ବିସ୍ତାର । ଯଶ ତ ଗୁରୁବାମା ଜାର ସାର ।
ଯତନେ ଦଶଇ ତାମସୀ ଯେହ୍ନ । ଯଥୋଚିତରେ ମୁଦେ କୁମୁଦିନୀ ।
ଯଥାଜାତ ସ୍ୱିଡ ଯେ । ଜନ୍ତୁଭୋଗୀ ଭଜେ ବାରୁଣୀ ନିତ । ୧୧ ।
ଶୁକ୍ଳ ସ୍ୱରୂପ ବେଦପକ୍ଷେ ସାଜେ । ଶୂନ୍ୟରେ ସ୍ଥାଣୁ ଶିଖରେ ବିରାଜେ ।
ଶୁଣ୍ଡେ ମୀନାଦି ଭୋଗକୁ ଲଭଇ । ସୁରଲୋକ ବକ ପ୍ରତେ ହୁଅଇ ।
ସୁମର ତା ନାଶ ଯେ । ଶୂନ୍ୟ ହେବ ଆଣି ଶ୍ୟାମଳ ପୋଷ । ୧୨ ।
କେ ବୋଲେ ଗ୍ରହକୁ କର ବରଣ । କେ ବୋଲେ ଗଳହୀନ କି ନ ଜାଣ ।
କେ ଶୁଣି ସୁଦର୍ଶନେ ନିନ୍ଦିଲା । କେ ଶଶ ପୋଷ ଗୋ ବୋଲି ଭାଷିଲା ।
କେ କୁହୁ ଲୋଡ଼ଇ ଯେ । କେ କୁମ୍ଭଜ ସିନ୍ଧୁପିଆ ନିନ୍ଦଇ । ୧୩ ।

୨ । ଜଣତ ଗୁରୁବାମା । ଯାର ଜାର କ, ଖ. ଗ, ଚ, ଜ, ଜଗତେ ଗୁରୁବାମା ଯାର ଜାର-ଘ, ଜଗତରେ ଗୁରୁବାମର ଯେ ଜାର-ଝ,ଠ, ୧୯-୭-ହନ୍ତୁ ଭୋଗୀ ଜ, ଜନ୍ତୁଭୋଗୀ କ, ଖ, ଚ, ଝ, ଠ, ୧୫—୧୪—କାଳକଣ୍ଠ-ଗ, ଘ, ଚ,

---

୧୧ । ଜଗତରେ କଳଙ୍କୀ ନାମ—କଳଙ୍କଯୁକ୍ତ—ଦୋଷୀ ନାମ, ଆଖ୍ୟା ବିସ୍ତାର—ପ୍ରକଟ ହୋଇଅଛି । ଗୁରୁବାମା—ବୃହସ୍ପତିଙ୍କ ଭାର୍ଯ୍ୟାର, ଜାର ବିଟ—ଯାର ଚନ୍ଦ୍ରର ଯଶତ ଜାତ ହୋଇଛି । ଅର୍ଥାତ୍ ଯେଉଁ ଚନ୍ଦ୍ରର ନିଜ ଗୁରୁ ବୃହସ୍ପତିଙ୍କ ଭାର୍ଯ୍ୟା ତାରକୁ ହରିବା ଯଶ (ମନ୍ଦଗୁଣ) ଜଗତରେ ଖ୍ୟାତ ହୋଇଛି । ତାମସୀ ସ୍ତ୍ରୀ ଯେହ୍ନ ପତନ ଦଶଇ—କାଳୀ ସ୍ତ୍ରୀ ଯେହ୍ନ ସୁନ୍ଦର ଦିଶଇ । ଯଥୋଚିତରେ—ଯଥାର୍ଥରେ କୁମୁଦିନୀ—କୈରବିଣୀ କୁତ୍ସିତ ବିଷୟରେ ମୁଦ ଆନନ୍ଦ ଯାହାର ଏପରି ସ୍ତ୍ରୀକି ମୁଦେ ଆନନ୍ଦ କରଏ । ଯଥାଜାତସ୍ୱିଡ—ମୂର୍ଖସ୍ୱିଡ ; ଜନ୍ତୁ ଭୋଗୀ ଶସ୍ୟକୁ ଖାଉଛି ବା ( ମୀନ, ମେଷ, ବୃଷ ଆଦି ଭୋଗ କରେ ) ମାଂସାଶୀ ବାରୁଣୀ ପଶ୍ଚିମ ଦିଗ ଭଜେ ଅଗ୍ରସ୍ତ କଲା—ପୁନଃ ବାରୁଣୀ ମଦ୍ୟ ପାନକରେ ।

୧୨ । ଶୁକ୍ଳ ସ୍ୱରୂପ—ଏହା ଦେଖିବାକୁ ଧଳା । ବେଦପକ୍ଷେ ସାଜେ—ଦୁଇଟି ପକ୍ଷ ଅଛି—ଗୋଟିଏ ଧଳା ଓ ଗୋଟିଏ କଳା । ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷ । ଶୂନ୍ୟରେ—ଆକାଶରେ । ସ୍ଥାଣୁ ଶିଖରେ—ଲଣ୍ଡାଗଛ ଅଗରେ ; ଶିବଙ୍କ ମସ୍ତକରେ, ବିରାଜେ—ଶୋଭାପାଏ । ଶୁଣ୍ଡେ—ଶୁଣ୍ଢରେ ମୀନାଦି ଭୋଗକୁ—ମତ୍ସ୍ୟ ପ୍ରଭୃତି ପ୍ରାଣୀକୁ—ଜଳଚର ପ୍ରାଣୀଙ୍କୁ ; ମୀନ—ମେଷ ବୃଷାଦିମାନଙ୍କୁ ଭୋଗକରେ । ସୁରଲୋକେ ବକ—ସ୍ୱର୍ଗର ଆକାଶର ବଗପରି ଶ୍ୟାମଳ ବ୍ୟାଜପକ୍ଷୀ ବା ଅନ୍ୟ ଅର୍ଥରେ ଚନ୍ଦ୍ର ଦୁଇ ଶୁକ୍ଳପକ୍ଷରେ ଶୋଭା ପାଆନ୍ତି । ଅନ୍ଧାର ପକ୍ଷରେ ଦେଖା ଯାଆନ୍ତି ନାହିଁ; ଚନ୍ଦ୍ର ଶ୍ୟାମଳ—ଅନ୍ଧାର ପକ୍ଷ ଅମାବାସ୍ୟା, ପୋଷ—ରଖା ।

୧୩ । କେଉଁ ସଖୀ କହନ୍ତି ଗ୍ରହକୁ ବରଣକର ଚନ୍ଦ୍ରକୁ ଗିଳିବ । କେଉଁ ସଖୀ ବୋଲେ ଗଳହୀନ କେବ ଖଣ୍ଡିଆ ନ ଜାଣ କି । କେଉଁ ସଖୀ ଶୁଣି ସୁଦର୍ଶନ

Digitized by srujanika@gmail.com

କଳ କଳ କଳକଣ୍ଠର ଶୁଣି । କହୁଅଛି ଦୁଃଖେ କେଉଁ ସିଖଣୀ ।
କହିଦେବା ଗୋ ବ୍ୟାଧ ବଧ କରୁ । କମଳାମୁଖୀ ରାଧାବାଧା ସରୁ ।
କଥା ବ୍ୟଥା ତାର ମୋ । କମଳରତ୍ତୁ ଏ କଥାକୁ ସାର । ୧୪ ।
କାକୋଚ୍ଛିଷ୍ଟରୁ ଏ ଦୁଷ୍ଟ ତ ପୁଷ୍ଟ । କାମତଗର ପରଭୃତ ନଷ୍ଟ ।
କାଳକ ବକୁଳ ଆସବରତ । କାଳକଣ୍ଠବନ୍ଧୁଙ୍କ ତା ରୁତ ।
କାହିଁପାଇଁ ମାଖି ମୋ । କାମିନୀ ମଣ୍ଡନ୍ତିକୁ ମାନ ପାଖି । ୧୫ ।
ମଧୁପ ଝଙ୍କାର ଶ୍ରବଣେ ଶୁଣି । ମର ମର ବୋଲେ କେଉଁ ସିଖଣୀ ।
ମଧୁପ ଶଠ ସ୍ୱଭାବ ଦେଖାଉ । ମହା କୁଟିଳପଣ ପୋଡ଼ିଯାଉ ।
ମଲ୍ଲିକା ଗନ୍ଧକୁ ଯେ । ମର୍ଦ୍ଦିବୁ ମାନ ଜମାମୁ ସରଙ୍କ । ୧୬ ।
ଚନ୍ଦ୍ରକୁ ପଦ୍ମବନେ ରଖାଇବୁ । ଚନ୍ଦ୍ରେ କେତକୀ ଅଗ୍ନି ରୂପିବୁଁ ।
ଚମ୍ପକ-ମାସ୍ର ଗଛ ଲଗାଇ । ଚମ୍ପକ ସ୍ୱଭାବ ଦେବୁଁ ଛଡ଼ାଇ ।
ବୃନ୍ତ ଛେଦାଇବୁଁ ଯେ । ଚଳ ପାନ ଅବଶ୍ୟ ମରିବୁ । ୧୭ ।

---

ଚନ୍ଦ୍ରକୁ ନିନ୍ଦା କଲ ସମ୍ଭବୁ ନିଶେଷରେ ନ ମାରିବାରୁ । କେଉଁ ସଖୀ କୋଇଲି ମୁଣ୍ଡକୁ ଘାସଦେଇ ବଢ଼ାଇଲେ ସେ କହି ଚନ୍ଦ୍ରକୁ ଯୋଡ଼ାଇ ପକାଇବ । କୁହୁ, ଅମାବାସ୍ୟାରେ ଚନ୍ଦ୍ରର ଉଦୟ ନାହିଁ । କେଉଁ ସଖୀ କୁମ୍ଭଜ ଅଗସ୍ତି ଋଷିଙ୍କି ନିନ୍ଦା କରଇ । ସେହ ଅଗସ୍ତି ସାଗରମୁଦ୍ରପିଆ । ଚନ୍ଦ୍ରକୁ ପେଟ ଅଗ୍ନିରେ ଭସ୍ମ ନ କରି ରଖିଲୁ କାହିଁକି ଏହା ବୋଲି ନିନ୍ଦାକଲା ।

୧୪ । କଳକଣ୍ଠର—କୋକିଳର, କଳ କଳ ଶବ୍ଦ ଶୁଣି । ବ୍ୟାଧକୁ—ଶବରକୁ । କମଳମୁଖୀ—ପଦ୍ମମୁଖୀ । ତାର—କୋଇଲିର, କଥା—ଧ୍ୱନି, ବାଧା ଦେଉଛି । କମଳ ରତ୍ତୁ—ବର୍ଷାଋତୁ । ଏ କଥାକୁ—କୋକିଳ ଧ୍ୱନିକୁ, ସାର—ଠିକ୍, ଉତ୍ତମ ଅର୍ଥାତ୍ କୋଇଲିର ରବ ହେବନାହିଁ ।

୧୫ । କାକ ଉଚ୍ଛିଷ୍ଟରୁ—କୁଆ ଅଇଁଠାରୁ ଏ ଦୁଷ୍ଟ କୋକିଳ, ପୁଷ୍ଟ ହୋଇଛି—ବଢ଼ିଛି । କାମତଗର—କନ୍ଦର୍ପର ଗୃହ ଏ ନଷ୍ଟ—ଦୁଷ୍ଟ, ପରଭୃତ—କୋକିଳ, କାଳକ—ସବୁକାଳରେ, ବକୁଳ—ବଉଳର । ଆସବ—ମଦରେ । ରତ—ନିରତ ଆସକ୍ତ । ତା ରୁତ—ସେ କୋକିଳଧ୍ୱନି । ବିରହକ କାଳକଣ୍ଠ—ଯମତୁଲ୍ୟ ଅଟେ । କାମିନୀ ମଣ୍ଡନ୍ତିକୁ—ସ୍ତ୍ରୀ ମାରିବାକୁ ସ୍ୱରକୁ କାହିଁ ପାଖି—ଭଲ ନା କରି ପକ୍ଷ ରଖିଥିଲା ।

୧୬ । ରେ ମଧୁପ—ରେ ଭ୍ରମର ( ଅନ୍ୟ ଅର୍ଥରେ ମଦୁଆ ) ଶଠ ସ୍ୱଭାବ ଦେଖାଉ । ତୁ ଶଠ ନାୟକ ତାର ସ୍ୱଭାବକୁ ମହା କୁଟିଳ ପଣ—କପଟିଆ ପଣ ପୋଡ଼ିଯାଉ । ସର୍ଜ୍ଜି—ସର୍ଜନା କରି । ମର୍ଦ୍ଦିବୁ—ଦଳିଦେବୁ ।

Digitized by srujanika@gmail.com

ସାରବୁଁ ଜପାସ୍ତେ ମଦନଗୁଣ । ସାଧିବ କେହ୍ନ ଅନ୍ୟ ବଣରଣ ।
ସାର ସୁମନସବନ ପୋଡ଼ିବୁଁ । ସାରସଗଣ ଦୁଃଖ ଛଡ଼ାଇବୁଁ ।
ସାର ଏ ବାଗୁର ଯେ । ସାରଙ୍ଗ ତୁ ମଲେ ନ ମରୁ ମା ॥୧୮॥
ସଙ୍ଗୀ ସଖୀ ଦୁଃଖେ ଦୁଃଖିତ ହେଲେ । ସମ୍ଭ୍ରମେ କେ କେତେ ଏରୂପେ ବୋଲେ
ସଜାଡ଼ିଲେ ଶଯ୍ୟା କମଳଦଳେ । ଶଶିବଦନାକୁ ଶୁଆଇ ଦେଲେ ।
ସଧୀରେ ବାନ୍ଧିଲେ ଯେ । ସଜନୀ ଉଡ଼ ଯାଏଁ ପାଞ୍ଚିଲେ ॥୧୯॥
ନୀରଜବଦନେ ସିଞ୍ଚୁ କେ ନୀର । ନିଷେଧ କର କେ ବୋଲଇ ଗିର ।
ନିତ ମଦନ କରଇ ଦହନ । ନିକ ହୋଏ ଦାହ ସିପ ସମାନ ।
ନିରେଖ ଏ ହେଲା ଗୋ । ନିର୍ଜ୍ଜିକ ନୟନ ଏହା ଦେଖିଲା ॥ ୨୦ ॥

---

୧୭ । ଚନ୍ଦ୍ରକୁ—ଜହ୍ନକୁ, ପଦ୍ମବନେ ରଖାଇବୁ । ପଦ୍ମହେତୁ (ଅର୍ଥାତ୍ ପଦ୍ମରୁ ମଧୁପାନ କରି) ତୋର ଗରବ । ଚନ୍ଦ୍ର ପଦ୍ମରେ ରହିଲେ ପଦ୍ମ ବୁଜି ହୋଇଯିବ । ତୁ କୋଉଠାରେ—ତୁ କେଉଁଠାରେ ଶଠାଗ୍ରହ କରିବୁ । ଚତ୍ବରେ—ଅଗଣାରେ । କେତକୀ ଦ୍ରୁମ ଆଣି ରୋପିବୁ—ଲଗାଇବୁ । ତୁ କେତକୀରେ ବସିଲେ ପକ୍ଷ ଛିଣ୍ଡିଯିବ, ଆଖି ଅନ୍ଧ ହେବ । ଚମ୍ପକମାଳୀ—ଭ୍ରମରମାରୀ ଗଛ ଲଗାଇବୁ । ହେ ଭ୍ରମର, ତୋର ଚଞ୍ଚଳ ସ୍ୱଭାବ ଛଡାଇଦେବୁ । ଭ୍ରମରମାରୀ ଗଛମୂଳେ ଆସି ପଡ଼ି ମରିବୁ । ଚୂତ—ଆମ୍ବଗଛ । ଛେଦାଇବୁଁ—ହାଣିଦେବୁଁ । ଚରି ନ ପାରି ଅବଶ୍ୟ ନଷ୍ଟଯାଇ ମରିବୁ ।

୧୮ । ଜପାସ୍ତେ—ଜପାଯାଇ କରି । ମଦନ—କନ୍ଦର୍ପ । ଗୁଣ—ଧନୁର୍ଗୁଣ । ସାରବୁ—ଜାଣିବୁ । ଭ୍ରମରମାଳାର ଗୁଣକୁ ଛିଣ୍ଡାଇବୁ । ରଣରଣ କେହ୍ନ କପଟ ସାଧିବ—କାମଦେବ ଆଉ କେହ୍ନ ହୋଇ ଆମ୍ଭମାନଙ୍କୁ ପୀଡ଼ା ଦେବ । ସାର ସୁମନସବନ—ପୁଷ୍ପବାଟିକା ପୋଡ଼ିବୁଁ । ସାରସଗଣ—ହଂସଗମନା ରାଧାର ଦୁଃଖ ଛଡାଇ ଦେବୁଁ । ଆମ୍ଭମାନଙ୍କର ଏ ବାଗୁରା ସାର—ଉତ୍ତମ । ହେ ସାରଙ୍ଗ—ହେ ଭ୍ରମର, ତୁ ମଲେ ମାର ନ ମରୁ—କନ୍ଦର୍ପ ନ ମଲେ ଆମ୍ଭମାନଙ୍କର କିଛି ଯାଏ ଆସେ ନାହିଁ । "ମୌର୍ବୀ ରୋଲମ୍ବମାଳା ଧନୁରଥ ବିଶିଖାଃ କୌସୁମାଃ ପୁଷ୍ପକେତୋଃ ।"

୧୯ । ସମ୍ଭ୍ରମେ—ଭୟରେ । କମଳଦଳେ—ପଦ୍ମପତ୍ରମାନ । ଅସ୍ତେ ଅସ୍ତେ ବାନ୍ଧିଲେ, କାରଣ ଦୁର୍ବଳ ଅଙ୍ଗ ବାଧା ଲାଗିଯିବ ।

୨୦ । କେଉଁ ସଖୀ ନୀରଜବଦନେ ରାଧାଙ୍କର ପଦ୍ମମୁଖରେ ନୀର—ଜଳ ସିଞ୍ଚୁ—ସେଚନ କରୁଁ । କେଉଁ ସଖୀ ନିଷେଧ କର ଗିର ବୋଲଇ—ବଚନ କହଇ । ନିତ—ପ୍ରତିଦିନ, ମଦନ—କନ୍ଦର୍ପ, ଦହନ—ବାଧା ଦେଇ ଜଳୁଛି । ଏ ଜଳ ସେକ ଦାହ ସିପପର—ସମାନ ହୋଇବ କି । ସିପରେ (ନେ ଟିପରେ)



Digitized by srujanika@gmail.com

ଛନ୍ଦେ କେ ଗନ୍ଧସାର ବାଟି ଅଣ । କପାଳରେ ଦେବା ବିଧୁ କିରଣ ।
କମଳନାଳ ମାଳ ଗଳେ ଦେବା । କର୍ପୂର ରଜ ଅଙ୍ଗେ ଲଗାଇବା ।
କନ୍ଦର୍ପ ପ୍ରପଞ୍ଚୀ ଟେ ଗୋ । କପର୍ଦ୍ଦୀ ଭ୍ରମେ ଅବା ଶିବ ଧୂର୍ଜ୍ଜ । ୨୧ ।
ତାହାଙ୍କ କହ୍ଲାର ଯେହୁଁ ସଜନୀ । ରାଗ କରଇନି ବଇର ଯେନି ।
ତରୁଣୀତିଳକ ପୁଣି ଗୌରୀ ସେ । ତାହାଙ୍କ ତରଳ ସ୍ୱୟମ୍ଭୁ ପରି ।
ତରଳ ଜାହ୍ନବୀ ସେ । ତଳେ କଲେ ଦାଅଇଟି ବଡ଼ଭ୍ରମୀ । ୨୨ ।
ଭଇ କୁଚଯୁଗ ଲିପିବା ପାଇଁ । ଉଶୀର ବାଟି ଟୋଗା ଦାଅ ଲେପାଇ ।
ଉପୁଜେ ନାହିଁ ତହିଁରୁ ସ୍ଫୋଟକ । ଉପାୟ ଯାକ ହୋଇବେ ବାଧକ ।
ଉଭୟ ସନ୍ଦେହ ସେ । ଉଣା କି ପଙ୍କେ ଦାହ ଓହା ଦେହ । ୨୩ ।

ଜଳ ଦେଲେ ସେ ଯେପରି ନିଃଶେଷ ହୋଇ ଚୂର୍ଣ୍ଣ ହୋଇଯାଏ ସେହିପରି ରାଧା ଦେହରେ ପାଣି ପଡ଼ିଲେ ହେବ । ଏ ରାଧା ଜଳେଗ—ଅନାଥ ହେଲୁ । ଆମ୍ଭମାନଙ୍କର ନିର୍ଲ୍ଲଜ ନୟନ – ଅଭାଗିନୀ ନଷ୍ଟ, ଏହା ଦେଖିଲୁ ।

୨୧ । ଗନ୍ଧସାର – ଚନ୍ଦନ । ବିଧୁକିରଣ – ଚନ୍ଦ୍ର ସଦୃଶରେ କପାଳରେ ବଟାଚନ୍ଦନ ଦେବା । କମଳନାଳମାଳ – ପଦ୍ମନାଳମାଳ, ଗଳେ—ବେକରେ ଦେବା (ସର୍ପଭ୍ରାନ୍ତି କରି) । ରାଧାର ଦେହ ଶୀତଳ ହେବ । ଅଙ୍ଗେ କର୍ପୂରରଜ— କର୍ପୂର ଧୂଳି ଶରୀରରେ ଲଗାଇବା (ବିଭୂତି ସଦୃଶ) । ପ୍ରପଞ୍ଚୀ—ଦୁଷ୍ଟ କନ୍ଦର୍ପ, କପର୍ଦ୍ଦୀଭ୍ରମେ ଶିବ ଭ୍ରାନ୍ତିରେ ଧୂର୍ଜ୍ଜଟି ଶିବ ଅବା ।

୨୨ । ଯେଉଁ ମଦନ ତାହାଙ୍କ କହ୍ଲାର ବୈରି – ଶତ୍ରୁ, ଯେନ ତମ—ରାଗ କରଇନି । ଅର୍ଥାତ୍ ମହାଦେବ ଭାବି ରାଗ କରିବ କନ୍ଦର୍ପ । ତରୁଣୀତିଳକ ଯୁବତୀଶ୍ରେଷ୍ଠା, ପୁଣି ଗୌରୀ—ଗୌରୀ—ଦୁର୍ଗାଙ୍କ ନାମ ଧରିଛନ୍ତି । ତାଙ୍କ ତରଳ – ରାଧା ଅଙ୍ଗରେ ଥିବା ହାର ସ୍ୱୟମ୍ଭୁ ପରି— ଶିବଙ୍କ ପରି ତରଳ ହାର ଜାହ୍ନବୀ ପରି ଗଙ୍ଗାଙ୍କ ପରି ତଳେ କଲେ; କନ୍ଦର୍ପ ରାଧାଙ୍କ ଦେହକୁ ଏପରି ଭାବରେ ଶିବ ବୋଲି ଭାବିଲେ ; ବଡ଼ଭ୍ରମୀ – ବଡ଼ ଭ୍ରମ ହେବନି ।

୨୩ । ଉଶୀର—ବେଣାଚେର ତହିଁରୁ ସ୍ଫୋଟକ—ଫୋଟକା ଉପୁଜେ ନାହିଁ—ଜାତ ହୁଏ ନାହିଁ କି । ଉପାୟମାନ ବାଧକ ହୋଇବେ—ଉପାୟମାନ ବଡ଼ କଷ୍ଟ ଦେବେ । ଉଭୟ ସନ୍ଦେହ—ଉଭୟ ପକ୍ଷରେ ସନ୍ଦେହ ହେଲେ । କୁମ୍ଭାର ପଙ୍କେ—କାଦୁଅରେ ହାଣ୍ଡି ଦେହ—ରାଧା ଦେହ ଦାହ ଉଣା କି । ଅର୍ଥାତ୍ କୁମ୍ଭାର ହାଣ୍ଡିଗଦା ପଙ୍କରେ ଲେପିଲେ ଦାହ ପୋଡ଼ିବାର ଯେଉଁପରି ଅଧିକ ହୁଏ ସେହିପରି ରାଧାଦେହରେ ଯେତେ ଉପାୟ ହେବ ସେ ଅଧିକ ଦାହ କରିବ, ଉଣା ହେବ ନାହିଁ ।

Digitized by srujanika@gmail.com

ଭାବ କେବଳ ଅମ୍ଭେ ମରୁଥାଇଁ । ଭାବନୀ ଏହା ଅଣିଛି ଲେଖାଇ ।
ଭାଲ-ଅକ୍ଷର କେ କରବ ଆନ । ଭାବନା ସମୁଦ୍ରେ ହେଲ ମଜ୍ଜନ ।
ଭାବ କି ମନରେ ଗୋ । ଭାଗ୍ୟକୁ କେ ବଳଅଛି ସଂସାରେ । ୨୪ ।
କାମ ଚଣ୍ଡାଳ ଶଠ କାମ ଦହ୍ନ । କାହିଁ ଦାହ୍ନ ଏହା ଅର୍ଜିଲା ସଖି ।
କାଳେ ଯେ ଶୁଣି ନାହିଁ ପରାଭବ । କାହା ମନେ ଥିଲା ଏହା ସମ୍ଭବ ।
କାନ୍ତସାର ବାଳୀ ଗୋ । କାହିଁ ଗଲ ଅବୟବର ଝଳ । ୨୫ ।
କନକ ଚମ୍ପକ କେତକୀ ତୋରା । କମଳ କେଶର କାଶ୍ମୀର ଗୋରା ।
କରୁଥାଇ ଯେଉଁ କାନ୍ତ ଧିକ୍କାର । କଲ କେତକ ସଙ୍ଗେ ତୁଲବାର ।
କର୍କଶ ଦଇବ ଯେ । କାହାକୁ ଦେଉଛି କ ପରାଭବ ? ୨୬ ।
ଶିରୀଷକୁସୁମ ଲବଣୀ ତୁଳା । ପିହାଣୀ କୋମଳକୁ ନୋହେ ତୁଳା ।
ଶିଶୁକାନ୍ତୁ ସୁଖୀ ଚନ୍ଦ୍ରବଦନା । ଶିବ-ଅରି-ଶର ମହାବେଦନା ।
ପ୍ରେମନ୍ତୁନୀ ସହି ଯେ । ଶୀର୍ଣ୍ଣ ହୋଇ ପ୍ରାଣ ବହୁଛି କେହ୍ନ । ୨୭ ।

୨୪—*ଭାବନୀ ମନରେ-କ ଖ, ଗ ଘ ଙ, ୯ଁ; ୫; ଏ ପାଠ ମଧ୍ୟ ହୋଇପାରେ । ଭାବନା—୦;

---

୨୪ । ଭାଲ ଅକ୍ଷର—ଲଲାଟ ଲେଖନ । ଭାବନା—ଚିନ୍ତା, ସମୁଦ୍ରେ—ଦୁଃଖ ସମୁଦ୍ରେ ମଜ୍ଜନ ହେଲ—ବୁଡ଼ିଗଲି । ଭାବନୀ ମନରେ—ପାଠାନ୍ତର ।

୨୫ । ଚଣ୍ଡାଳସ୍ୱଭାବ କାମ—କନ୍ଦର୍ପ, ଶଠ - ପ୍ରଚ୍ଛଦନ, ଦହ୍ନ ଦେବ—ପୋଡ଼ିଦେବ । ସଖି ରାଧା କାହିଁ—କେଉଁଠାରେ, ଦାହ୍ନ - ତପସ୍ୟା କରି ଦେହ ଦଗ୍ଧ କରି ଅର୍ଜିଲା—ଜାତକଲା, ଯେଉଁ ରାଧା କାଳେ—କେତେବେଳେ ପରାଭବ—ନିନ୍ଦା ଶୁଣି ନାହିଁ । ଏହା ଏ ବିରହ ବେଦନା ସମ୍ଭବ, କାହା ମନେ ଥିଲା । କାନ୍ତରେ ଶ୍ରେଷ୍ଠ । ସେ ରାଧା ତାଙ୍କ ଅବୟବର ଝଳ—ଦେହର ଶୋଭା କାହିଁ ଗଲା—ଲୁଅଡ଼େ ଗଲା ।

୨୬ । କନକ—ସୁନା, ଚମ୍ପକ ଓ କେତକୀର ତୋରା—ଫାମ୍ପ୍ରିଲୁ କାଶ୍ମୀର 'ଗୌରବପୁଷ୍ପାମଭ ମାଣିକାଣାଂ' (ଗୀତଗୋବିନ୍ଦ)—ପଦ୍ମର କେଶର ଓ ଜାଫ୍ରାନ କେଶର ଯେଉଁ ରାଧାଙ୍କ କାନ୍ତ ଧିକ୍କାର କରେ । ଏବେ କେତେକ କଅଁଫୁଲ ସଙ୍ଗେ ତୁଲବାର । ବିରହ—ବିରହବେଳେ ଦେହ ପାଣ୍ଡୁର ହୋଇଗଲେ, ଏଠାରେ କବି କେତକକୁ କଅଁ ଫୁଲର ରୂପ ଧରନ୍ତି । କର୍କଶ ନିଷ୍ଠୁର ଦୈବ—ଦୁର୍ଦ୍ଦୈବ ବିଧାତା କାହାକୁ କେଉଁପରି ସୁକୁମାରୀ ରାଧାକୁ କପରି ପରାଭବ—ଦୁଃଖ ଦେଉଛି ।

୨୭ । ଶିରୀଷକୁସୁମ—ଶିରୀଷପୁଷ୍ପ, ଲବଣୀ—ଲହୁଣୀ ଓ ତୁଳା—କାଶ ସମ୍ବନ୍ଧ ତୁଳା, ପିହାଣୀ—ତକିଆ ରାଧାକୋମଳକୁ—ରାଧାରକୋମଳତାକୁ, ତୁଳା—ସମାନ ନୁହନ୍ତି । ଚନ୍ଦ୍ରବଦନା - ଚନ୍ଦ୍ରମୁଖୀ ରାଧା, ଶିଶୁକାନ୍ତୁ—ପିଲାଦିନୁ, ସୁଖୀ

Digitized by srujanika@gmail.com

ଶୟନେ ସପତ ପରତ ତୁଳୀ । ଶୟନ ନ କରେ ତହିଁରେ ବାଳୀ ।
ଶଙ୍କା କରୁଥାଇଁ ସିଞ୍ଚ ସୁମନ । ସରୁଛି ଘଣତେ ଏବେ ତା ଦିନ ।
ସବୁ ବିଧି ହାତେ ସେ । ଶରୀର କି ନ ସହେ ଅନାୟତ୍ତେ । ୨୮ ।
ଚତୁରୀମୁକୁଟ ଭାର ହେବାରେ । ଚଉସରି ହାର କଣ୍ଠେ ନ ଭରେ ।
ଚନ୍ଦ୍ର ଚନ୍ଦନ ବଳେ ଦେଲେ ବୋଳି । ଚଞ୍ଚଳ ନେହା ହେଉଥାଏ ଚଳି ।
ଚତ୍ୱର ଧୂଳିକି ଯେ । ଚଉମାଥ ଭଳି କଲା ବାଳୀକି । ୨୯ ।
ରଙ୍ଗିମା ଓଷ୍ଠେ କି ଉପମା ଅଛି । ରଙ୍ଗରାଜକୁ କରୁଥାଇ ଛି ଛି ।
ରମ୍ୟ ସାମ୍ୟ ହରେ ଦିନକୁ ଦିନ । ରଜ-ବିଭୂଷିତ ବିମ୍ବ ସମାନ ।
ରଚନାବେଣୀର । ରହିତ ହୋଇଲା ସବୁ ସୁନ୍ଦର । ୩୦ ।

---

—ଘୋଟିଲା । ଶିବପର—କନ୍ଦର୍ପ, ଶର—ବାଣ, ମହାବେଦନା— ମହା ଦୁଃଖକୁ, ସିମନ୍ତିନୀ—ସ୍ତ୍ରୀ ସୁନ୍ଦରୀ ରାଧା, ସନ୍ଧି—ସନ୍ଧିବନ୍ଧ, ଶୀର୍ଣ୍ଣ ହୋଇ- ଦୁର୍ବଳ ହୋଇ । ପ୍ରାଣ—ଜୀବନ, କେହି କପଟ ବହିଛି— ଧାରଣ କରିଛି ।

୨୮ । ଶୟନେ—ଶୟନ କାଳରେ, ସପତ ପରତ ତୁଳୀ—ସାତପ୍ରସ୍ତ ତୁଳୀଶଯ୍ୟାରେ, ବାଳୀ—ରାଧା ତହିଁରେ—ସେ ସାତପ୍ରସ୍ତ ତୁଳୀ ଶେଯରେ ଶୟନ କରେ ନାହିଁ—ଶୁଏ ନାହିଁ । ସୁମନ ପୁଷ୍ପ ସିଞ୍ଚ ଶଙ୍କା—ଭୟ କରୁଥାଇଁ । ମୋ ଦେହ ଅତି କୋମଳ, ଏ ଶଯ୍ୟାରେ ଶୋଇଲେ କାଟିବ ବୋଲି ଶଙ୍କା କରୁଥିଲା । ଏବେ ତା ଦିନ – ରାଧା ଦିନ ଘଣତ କାନରେ – ସରୁଛି, କଟି ଯାଉଛି । ସବୁ କଥା ବିଧି ହାତେ—ବିଧାତା ହାତରେ 'ଅନାୟତ୍ତେ' - ଅଧିକୃତ ନ ଥାଇ, ଶରୀର କି ନ ସହେ - ସବୁ ଦୁଃଖ ସହେ ।

୨୯ । ଚତୁରୀ ମୁକୁଟ ରାଧା ଭାରି ହେବାରେ—ଓଜନ ହେବାରୁ, ଚଉସରି—ଚଉସରିଆ ହାର କଣ୍ଠରେ ଭରେ ନାହିଁ—ଲାଗେ ନାହିଁ । ଶରୀର କ୍ଷୀଣ ହେବାରୁ କର୍ପୂର ଚନ୍ଦନ ଘନସାର ବଳେ—ବଳାତ୍କାରରେ ବୋଳିଦେଲେ, ଚଞ୍ଚଳ-ନେହା ରାଧା ଚଳି ହେଉଥାଏ, ଏବେ ଚତ୍ୱର—ଅଗଣା, ଧୂଳିକି ବୋଳି ହେଉଥିଲା ଚଉମାଥ ବ୍ରହ୍ମାବାଳୀକି ଏଭଳି କଲା ।

୩୦ । ଓଷ୍ଠେ—ଓଠରେ, ରଙ୍ଗିମା—ରକ୍ତିମାକୁ କି ଉପମା ଅଛି । ରଙ୍ଗରାଜକୁ —ଉତ୍କୃଷ୍ଟ ଲାଲରଙ୍ଗକୁ ବା ପାଠାନ୍ତର ରଙ୍ଗରାଜୀବେ—ରକ୍ତପଦ୍ମକୁ ପାଠାନ୍ତର ଛି ଛି ତୁଚ୍ଛ କରୁଥାଇ । ଦିନକୁ ଦିନ—ପ୍ରତିଦିନରେ; ରମ୍ୟ – ସୌନ୍ଦର୍ଯ୍ୟ ସାମ୍ୟ ଗୁଣା ହରେ—ନିଜର ଗୁଣକୁ ହରାଏ । ରଜବିଭୂଷିତ—ପାଚିଁଶିଆ; ବିମ୍ବସମାନ— ବିମ୍ବଫଳ ସମାନ ଅର୍ଥାତ୍ ରାଧାର ଓଷ୍ଠ ରକ୍ତିମାକୁ ଉପମା ନ ଥିଲା । ଶ୍ରେଷ୍ଠ ଲାଲ-ରଙ୍ଗକୁ ବା ରକ୍ତପଦ୍ମକୁ ଯେଉଁ ଅଧରରକ୍ତିମା ଛି ଛି କରୁଥିଲା ସେହି ଓଷ୍ଠର

Digitized by srujanika@gmail.com

ବୀଣାଗୁଣାଙ୍କଣା ସୁସ୍ୱର ବାଣୀ । ବଗତ କରେ ସୁଧାସ୍ୱାଦୁ ଅଣି ।
ବଚ୍ଛୋଷ୍ଟୀ ଓ କଲେ ପିକ ନ ଡାକେ । ଶଗ୍ଭର ସାଙ୍ଗ ରହିପାଏ ମୂକେ ।
ବାଣ୍ଣକେତୁ ବଶେ । ଷୀଣଙ୍କେ କଶିଦନ ହା ହା ଭ୍ରଷେ । ୩୧ ।
ଶଶୀ ସୁଧା କଇଳାସ ସାରସ । ଶଙ୍ଖ କର୍ପୂର କୁମୁଦନୀ କାଶ ।
ସବୁ ଉପମା ସଦାକୁ ବଳଇ । ଶଶିହାସୀ-ହାସ ଯେବେ ଦଶଇ ।
ସଜନୀ କି ହେଲା । ସ୍ୱପନେ ସେ ଏବେ ଦେଖା ନ ଗଲା । ୩୨ ।
ଆନନ ଦର୍ଶୁଥାଇ କେଡ଼େ ଶୋଭା । ଆମ୍ଭ ମାନସକୁ କରାଏ ଲୋଭା ।
ଆନନ୍ଦ ଭର ଆସୁଥାଇ ହୃଦେ । ଆଖି ପଲକକୁ ସେ କାଳେ ନିନ୍ଦେ ।
ଆଣ ଅଭିତର । ଅଚ୍ଛୁରେ ଗୋଳ ଦୁଅଇ ଅଧର । ୩୩ ।

୧—ରଙ୍ଗଶ୍ଳକବେ-କ, ଖ, ଝ, ଠ;

---

ସୁନ୍ଦରତା ଦନକୁଧନ ଭଣା ଦଶିଲାଣି । ବାମ୍ଭଫଳ ଧାର୍ନ୍ଣିଆ ହେଲାପର ରଚନା-ବେଣୀର ରଚନ ବହୃଷିତ ହେବା ରାଧାର ସବୁ ସୁନ୍ଦର ରହିତ ହୋଇଲା ।

୩୧ । ବୀଣା ଗୁଣଙ୍କଣା—ବୀଣା ତାରକୁ କାଣା କଣିଥିଲା ସୁସ୍ୱର—ସୁମଧୁର; ବାଣୀ - ବଚନ ସୁଧାସ୍ୱାଦୁ ଅଣି ଅମୃତର ମିଷ୍ଟତା ଠେକକୁ, ରହିତ କରେ—ଧିକ୍କାର କରେ । ବଚ୍ଛୋଷ୍ଟୀ ଓ କଲେ—ରାଧା ଓ କଲେ—କଥା କହିଲେ ପିକ —କୋକିଲ ନ ଡାକେ—ତୁନି ହୋଇଯାଏ । ଅର୍ଥାତ୍ ପିକଠାରୁ ରାଧାଙ୍କ କଥା ଅଧିକ ମଧୁର । ଯାଙ୍କ ବଗ୍ଭର ମନେ ଭ୍ରବ ମୂକେ ରହିପାଏ—ତୁଣ୍ଡ ଫିଟେ ନାହିଁ । ଏପରି ହେଉଁ ରାଧା ବାଣ୍ଣକେତୁ ବଶେ କନ୍ଦର୍ପର ଅଧୀନ ହେବାରୁ । ଷୀଣଙ୍କେ—ଷୀଣ ହୋଇଲେ କଶିଦନ—ଦିବାରାତ୍ରି, ହାହା—ହାହାକାର ଧ୍ୱନି, ଭ୍ରଷେ—କହେ ।

୩୨ । ଶଶୀ—ଚନ୍ଦ୍ର ସୁଧା—ଅମୃତ, କଇଳାସ- କଇଳାସ ପର୍ବତ ସାରସ—ହଂସ ବା ଶୁକ୍ଳପଦ୍ମ, ଶଙ୍ଖ; କର୍ପୂର, କୁମୁଦନୀ, ଶୁକ୍ଳ କଇଁଫୁଲ । କାଶ— କାଶ କୁସୁମ (କାଶତଣ୍ଡୀ ଫୁଲ) ଶଶିହାସୀ— ଚନ୍ଦ୍ରହାସୀ; ରାଧାର ଯେବେ ହାସ ମନ୍ଦହାସ ଦଶଇ । ଏସବୁ ଉପମାମାନଙ୍କର ହେଲକରୁ ଦଳଇ । ରାଧା ହାସକୁ ଏମାନେ ସମାନ ନୁହନ୍ତି । ସଜନି ରାଧା କି ହେଲା—କି ହେମାରି ହେଲା ।

୩୩ । ଚକ୍ଷୁର ପକ୍ଷ୍ମପାତକୁ ନିନ୍ଦା କରେ । ଚକ୍ଷୁର ପଲକ ପଡୁଥିବାବେଳେ ରାଧା ଆନନ ଦେଖିପାରିବ ନାହିଁ । ଅଭିତର ଅତ୍ୟନ୍ତ ଆଶ—ଆଶା ବଳବତୀ । ଅଚ୍ଛୁରେ — କାତରରେ ଅଧର—ଓଷ୍ଠ ଗୋଳ ଦୁଅଇ ଲୁପ୍ତ ଚୁମ୍ବନ ଇଚ୍ଛାରେ ।

Digitized by srujanika@gmail.com

ପାଇଛି ଶଶୀ ଶଶହତ୍ୟା ଫଳ । ପାଏ ତୁଳନା ନୁହଇ କମଳ ।
ମାରିବା କି ଲକ୍ଷି ଆନ ଆନନେ । ପାପୀ ନେତ୍ର ଏବେ ଦେଖଇ ଭନେ ।
ପାଉଛି ଏ ଲକ୍ଷ୍ୟ । ପାରଦହୀନ ଦରପଣ ପ୍ରତ୍ୟକ୍ଷ । ୩୪ ।
ନୟନ ଇନ୍ଦୀବର ନିନ୍ଦୁଥିଲା । ନବ କୋକନଦ ଆଣି ବନ୍ଦିଲା ।
ନତ କରେ ଖେଳା ଖଞ୍ଜନମାନ । ନ ଦଶେ ଏବେ ସେ ଭଙ୍ଗୀ ଯତନ ।
ନ ଚଳି ସ୍ଥକିତ । ନନ୍ଦନ ଦର୍ଶନ ଚକୋର ବତ । ୩୫ ।
କି କରିବା ଏବେ କହ ଗୋ ମିତ । କିଛି ଉପାନ୍ତ ଅନ୍ତ ନ ଦଶେ ତ ।
କି କରି ବଞ୍ଚାଇବା ସଜନୀକି । କିଶୋରୀ ଅଭାବେ ଜୀଇବା କିକି ।
କି କଲ୍ପ ତ ବିଧି । କି ନିଧି ପାଇବ ହେବ କି ସିଦ୍ଧି । ୩୬ ।
ନିନ୍ଦା କଳଙ୍କକୁ ପଙ୍କରେ ମାଡ଼ି । ନିଶେଷ କରି ମାନଗିରି ତାଡ଼ି ।
ନିଆଁରେ ଲାଜକୁ ଦିଅ ଗୋ ପୋଡ଼ି । ନିଅ କୁଳତରୁ ମୂଳ ଉପାଡ଼ି ।
ନିର୍ଭୟେ ବିଗୁର । ନିପାଠ ପାତିବ୍ରତଲତା କର । ୩୭ ।

୩୭-୬ —ପତିବ୍ରତାଲତା ଛ ଙ ଛଡ଼ା ଅନ୍ୟାନ୍ୟ ପୋଥିରେ ୩୮, ୩—ମାନମଦହତ- ଛ, ଜ, ଙ: ବ୍ୟତୀତ ସମସ୍ତ ପୋଥିରେ, ୩୮-୪-ହୃଦତ-ଛ, ଜ, ଙ ବ୍ୟତୀତ ସମସ୍ତ ପୋଥିରେ ।

୨୯-୨ —କେତେ ଛ, ଙ ବ୍ୟତୀତ ସମସ୍ତ ପୋଥିରେ, ୪୨-୭—ସବୁର ତାପ-ଜ

---

୩୪ । ଶଶୀ – ଚନ୍ଦ୍ର, ଶଶହତ୍ୟା – ଠେକୁଆମାରି ପାପଫଳ ପାଇଛି ଅର୍ଥାତ୍ ଶଶ ମରି ଚନ୍ଦ୍ରରେ କଳଙ୍କ ହୋଇ ରହିଛି । ଏଣୁକରି ରାଧା ମୁଖକୁ ଚନ୍ଦ୍ର ତୁଚ୍ଛ—ଊଣା । କମଳ—ପଦ୍ମ ପାଏ –ଷୋଳଭାଗରୁ ଭାଗକୁ ତୁଳନା ନୁହଇ ବା ପାଦରେ ମଧ୍ୟ ତୁଳନା ଯୋଗ୍ୟ ନୁହେ । ଆନ—ଅନ୍ୟମାନଙ୍କ, ଆନନେ ରାଧା ମୁଖରେ, ଲକ୍ଷି କି—ଲକ୍ଷ୍ୟ କରିବା କି । ଏବେ ପାପିନେତ୍ର ଭନେ ଦେଖଇ । ଏ ଲକ୍ଷ ଲକ୍ଷ ଉପମା ପାଉଛି । ପ୍ରତ୍ୟକ୍ଷରେ ଦରପଣ ପାରଦହୀନ ହୋଇଥିଲେ ଯେପରି ଦେଖାଯାଏ ସେହିପରି ବିରହ ଦୁଃଖରୁ ରାଧା ମୁଖ ଦେଖାଯାଉଛି ।

୩୫ । ନୟନ – ନେତ୍ରଯୁଗ୍ମ, ଇନ୍ଦୀବର – ନୀଳୋତ୍ପଳକୁ ନିନ୍ଦୁଥିଲା । ନବ କୋକନଦ ଆଣି ବନ୍ଦିଲା—ନୂଆ ରକ୍ତ ପଦ୍ମଶୋଭାକୁ ପାଇଲା । ରାତ୍ରିରେ ଉଜାଗର ବା କ୍ରନ୍ଦନ ହେତୁ ଚକ୍ଷୁ ରକ୍ତବର୍ଣ୍ଣ ହେଲା, ଖେଳାଖଞ୍ଜନମାନ—ନତ କରେ ଖେଳୁଥିବା, କଜ୍ଜଳପାତ୍ରମାନ ବଡ଼ପଣକୁ ଯେଉଁ ରାଧା ନେତ୍ର ନତ କରେ—ହାରିଦିଏ । ସେ ଚକ୍ଷୁଭଙ୍ଗୀ ଯତନ ସେ ଶୋଭାମାନ ଏବେ ବର୍ତ୍ତମାନ ନ ଦଶେ । ନ ଚଳି—ସ୍ଥକିତ ଚଞ୍ଚଳ ନୋହି ସ୍ଥିର ହୋଇଛି । ନନ୍ଦନ—ଆନନ୍ଦଦାତା ଚନ୍ଦ୍ର ଦର୍ଶନେ ଚକୋର ପରି ସ୍ଥକିତ ହୋଇଛି ।

Digitized by srujanika@gmail.com

ସଜନୀ ଜାଉଥିଲେ ସବୁ ଅଛୁ । ସଂସାର ଭୟ ଆଉ ନାହିଁ କିଛୁ ।
ସବୁ ପଛକେ ଗୋ ମାନ ମହତ୍ତ୍ୱ । ସମସ୍ତେ ଗୁଲ ଗୋ ଯିବା ତୁରିତ ।
ଶରଣ ପଶିବା । ସଙ୍ଗୀ ହରିଙ୍କୁ କୃଷ୍ଣ ମନାଇବା । ୩୮ ।
ସେ ତ କରୁଣାରେ ବରୁଣାଳୟ । ସେବକେ କେବେ ନୁହନ୍ତି ନିର୍ଦ୍ଦୟ ।
ସେ କଥା ଶୁଣି ପାଉଛୁ ଭରସା । ଶେଷ କରିବେ ରମାଳସା ଦଶା ।
ସେ ବିନା ତ ଗତି । ଶେଷ ଆଦିରେ କରି ନ ପାରନ୍ତି । ୩୯ ।
କରୁଁ କରୁଁ ଚିନ୍ତା ସଖୀ ଏପରି । କଷ୍ଟେ କଷ୍ଟେ ଶେଷ ହେଲ ଶର୍ବରୀ ।
କରନ୍ତି ସାନ୍ତ୍ୱନା ନୂତନା ହିତେ । କଞ୍ଜନେତ୍ରା ଚେତା ହେଲ କ୍ଷଣିତେ ।
କରି ମାରି ଭାଲେ । କର ମୋ ପ୍ରାଣଆଶା ହରି ବୋଲେ । ୪୦ ।
ସହୁଚ ରହୁଚ କେ ତାହା ଶୁଣି । ସକ୍ଳନ୍ଦ୍ର ଜାତ ହାହାକାର ବାଣୀ ।
ଶମନପୁରକୁ ଯା ଯା ଜୀବନ । ସଖୀର ଦେଖ ଏ କାଷ୍ଠ କଦନ ।
ସନ୍ତାପ ଏପରି । ଶତେ କଳ୍ପରେ କି ହେବ ବିସ୍ମୃତି । ୪୧ ।

---

୩୬ । କଣୋଣ ଅଭ୍ରବେ—ରାଧା ଅଭାବରେ, ଜୀଇବା ନିଜ ଜୀବନ ଧାରଣ କରିପାରିବା ନାହିଁ ? ବିଧି - ଦଇବ, କି କରାଇ କି ଦିଏ କି ମନ୍ତ୍ରି ପାଇବ କି ସିଦ୍ଧି ହେବ ।

୩୭ । ମାନରୂପଗିରି—ପର୍ବତକୁ ବଂଶୀ ରୂପେ ତାଡ଼—ଉପାଡ଼ି ଦିଅ । ନିଆଁରେ ଲାଜକୁ ପୋଡ଼ିଦିଅ । କୁଳତରୁମୂଳ ଉପାଡ଼ି ନିଅ । ନିର୍ଭୟ ବିଗୁର ।

୩୯ । ସେ କୃଷ୍ଣ କରୁଣାରେ— ଦୟାରେ, ବରୁଣାଳୟ— ସମୁଦ୍ର । ସେବକେ— ଭୃତ୍ୟରେ ସଦୟ । ରମାଳସା ଦଶା—ରାଧାର ବିରହଦଶା, ଶେଷକରିବେ—ଦୂର କରିବେ । ସେ ବିନା - ସେ କୃଷ୍ଣ ବ୍ୟତୀତ ଗତି—ଆଶ୍ରୟ ନାହିଁ । ଶେଷଦେବଙ୍କୁ ଆଦି କରି କେହି କରିପାରିବେ ନାହିଁ । କୃଷ୍ଣଙ୍କ ଛଡ଼ା ରାଧାଙ୍କ ଏଦଶା ଦୂର କରିପାରିବେ ନାହିଁ ଏବଂ ସେମାନେ କୃଷ୍ଣଙ୍କ ଛଡ଼ା ମୁକ୍ତ ଦେଇପାରିବେ ନାହିଁ ।

୪୦ । ଶର୍ବରୀ ରାତ୍ରି । ନୂତନ—ନୂଆ । କଞ୍ଜନେତ୍ରା—ପଦ୍ମନେତ୍ରା । ରାଧା କ୍ଷଣିକେ ଚେତା ହେଲ—ଅଳ୍ପ ଚେତା ପାଇ । ହିତେ—ହିତ ବଚନରେ ସାନ୍ତ୍ୱନା ଶାନ୍ତ କରନ୍ତି । ଭାଲେ—ଲଲାଟରେ । କରମାରି—ହାତ ମାରି । ମୋ ପ୍ରାଣଆଶା — ଜୀବିତାଶା, ହରିକର—ଗ୍ରହ, ବୋଲେ—କହେ ।

୪୧ । ଶମନ ପୁରକୁ—ଯମ ପୁରକୁ । ଏ କାଷ୍ଠ କଦନ—ଏପରି ଦୁଃଖ, ଶତେ କଳ୍ପରେ ଶତେ ଶୁକ୍ରରେ ବା ପଣ୍ଡିତରେ ବିସ୍ମୃତି ହେବ କି - କହିହେବ କି ।

Digitized by srujanika@gmail.com

ଅନନ୍ତକୋଟି-ବ୍ରହ୍ମାଣ୍ଡଈଶ୍ୱରୀ । ଅନଙ୍ଗ-ଅହିବରେ ହୋଇ ଘାରି ।
ଅବନୀରେ କେ ତା ସମ୍ଭବ ଅଛି । ଅନ୍ନମନ୍ୟୁ ଜୀବ ନା ଭାବି ପାଛି ।
ଅଛି ଯେତେ ତାପ । ଅନଙ୍ଗ ବେଦନା ସବୁରି ପାପ । ୪୨ ।

---

## ପଞ୍ଚାଶତ୍ ଛାନ୍ଦ

### କୃଷ୍ଣ ଅନ୍ୱେଷଣା; ଲଳନା ଉକ୍ତି

ରାଗ—ଚଳଘଣ୍ଟା

ଚତୁରେ ଏ ଛାନ୍ଦେ ରସ । ଚ ପର୍ବାଦ ଅନୁପ୍ରାସ ।
ଶତ୍ରୁ ଗୃହକର ହୁଲ୍ଲାସର ଘର ଯଥା ନବ ଘନରସ । ୧ ।
ଚନ୍ଦ୍ରା ଦେଖି ନୃତନାରି । ଚଳେ ଘେନି ସଖୀବାରି ।
ଚତୁର ବିଳାସ କାନନେ ପ୍ରବେଶ ଛଳ ପୁଷ୍ପ ତୋଳିବାରି । ୨ ।
ଚରଣ ନୂପୁର ତାନେ । ଚମକ ପଡ଼ିଲା ବନେ ।
ଚିତ୍ତଜାତ ବିଜେ ତୂର ର୍କ ଏ ଜାଣି ଗୋବିନ୍ଦ ଘେନିଲେ ମନେ । ୩ ।

---

୪୨ । ଅନନ୍ତକୋଟି ବ୍ରହ୍ମାଣ୍ଡ-ଈଶ୍ୱରୀ—ଅପରିମିତ ସମସ୍ତ ବ୍ରହ୍ମାଣ୍ଡର ଈଶ୍ୱରୀ, ରାଧା-ଅନଙ୍ଗରୂପ ଅହିବରେ—କନ୍ଦର୍ପରୂପ ସାପ ବିଷରେ । ଅବନୀରେ—ପୃଥ୍ୱୀରେ, ତା ଆଉ କେ ସମ୍ଭବ । ଅନ୍ନମନ୍ୟୁ ଜୀବ—ପ୍ରାଣ ତା ଭାବି ନସ ରାଧାଭାବ ଭାବି ନାହିଁ । ଯେତେ ତାପ ଅଛି କି ତାପାଦି ଯେତେ ତାପ ଅଛି, ଅନଙ୍ଗ ବେଦନା—କାମବେଦନା ସବୁରି କି ତାପର ପାପର ଫଳ ଅଟେ । ଅର୍ଥାତ୍ କି ତାପଠାରୁ କାମତାପ ଅଧିକତର ବୋଲି (ପାପରୂପେ) ପଣ୍ଡିତମାନେ କହିଅଛନ୍ତି ।

---

୧ । ଚତୁରେ—ପଣ୍ଡିତମାନେ । ଚ ପୂର୍ବାଦ ଅନୁପ୍ରାସ—'ଚ' ଅକ୍ଷର ପୂର୍ବରେ ରହି ଅନୁପ୍ରାସ ହୋଇଅଛି । ଶତ୍ରୁ···ଘନରସ -ଯେପରି ନୂଆ ମେଘର ପାଣି ଗୃହକକୁ ଆନନ୍ଦ ପ୍ରଦାନ କରେ ସେହିପରି ଏ ଛାନ୍ଦସ୍ଥ ନବଘନ କୃଷ୍ଣରସ—ଶତ୍ରୁକୁ ଆନନ୍ଦ ଦେବ ।

୨ । ଚତୁରବିଳାସକାନନେ—କୃଷ୍ଣଙ୍କ କ୍ରୀଡ଼ାବନରେ ବୃନ୍ଦାବନରେ । ଛଳ ପୁଷ୍ପ ତୋଳିବାରି—ଫୁଲ ତୋଳିବା ବାହାନାରେ ପ୍ରବେଶ ହେଲେ । ରାଧାଙ୍କ ଦୁଃଖ ଦେଖି, ସଖୀମାନେ ଫୁଲ ତୋଳିବା ବାହାନାରେ ବୃନ୍ଦାବନରେ ପ୍ରବେଶ ହେଲେ ।

୩ । ତାନେ—ଧ୍ୱନିରେ । ଚମକ ପଡ଼ିଲା—ଜୋସ୍ତଣାରେ ଅସ୍ଥିରତା ଜନ୍ମିଲା, ବନ ଥରି ଉଠିଲା । ଚିତ୍ତଜାତ—କନ୍ଦର୍ପ । ଏ ତୂର—ତାଙ୍କ ବାଜା ନୂପୁର ଶବ୍ଦ ନୁହେଁ ।

Digitized by srujanika@gmail.com

ଚକ୍ର ମଣି ବେଣୁପାଣି । ଗୁଚ୍ଛେ କର୍ଣ୍ଣ ଦେଇ ପୁଣି ।
ଚକିତ ଚଞ୍ଚଳ ଚେମନ୍ତ କମଳ ପାରଧିଆ ଘଣ୍ଟି ଶୁଣି । ୪ ।

ଚନ୍ଦ୍ରାତୁରେ ବାଳେ ବଳେ । ଚଞ୍ଚଳାକ୍ଷୀକି ଦେଖିଲେ ।
ଚଞ୍ଚଳ ସେବକୀ ନିଧିଗଣ ଏ କି ଏମନ୍ତ ବିଚାର କଲେ । ୫ ।

ଚୈତ୍ର ପଦ୍ମ ଅନୁସର । ଚକ୍ଷୁ ପିଙ୍ଗୁଡ଼ ନ ପାର ।
ଚୁଚୁର୍ଣ୍ଣ ସୁସ୍ମିତ ଲଜ୍ଜିତ ମିଶ୍ରିତ ଗଞ୍ଜିବନ୍ତ ହେଲେ ହର । ୬ ।

ଚୁମ୍ବି ନନ୍ଦନନ୍ଦନଙ୍କୁ । ଚୀରେ ଆଚ୍ଛାଦ ତନୁଙ୍କୁ ।
ଚଞ୍ଚଳ ଗମନ କରନ୍ତେ ମୋହନ କହନ୍ତି ରଙ୍ଗେ ତାହାଙ୍କୁ । ୭ ।

ଚୁମ୍ବି ପାଅ ଦଣ୍ଡେ ରହ । ଚତ୍ୱ ଚୋମ ଭାଷା କହ ।
ଚମ୍ପାଅଙ୍ଗୀ ଅଙ୍ଗୀ-କାର ଭଙ୍ଗୀ ସଙ୍ଗୀ କର ଦାସ ହେଲି ମୁହିଁ । ୮ ।

ଚନ୍ଦ୍ରମାମୁଖ ତୁମ୍ଭର । ଚକ୍ଷୁ ଶଶ ଲେଖା ମୋର ।
ଚଖାଅ ପୀୟୁଷ ନୋହିଲେ ବିନାଶ ନେ ବଧ୍ୱାଚ ତାହା କର । ୯ ।

୪ । ବେଣୁପାଣି—କୃଷ୍ଣ । ଚକ୍ର—ଆଶ୍ଚର୍ଯ୍ୟ । ଗୁଚ୍ଛେ—ଶୀଘ୍ର । ଚକିତ—ଆଶ୍ଚର୍ଯ୍ୟଯୁକ୍ତ, ପାରଧିଆ—ବାଣୁଆ । ଘଣ୍ଟି—ଘଣ୍ଟାନାଦ । କମଳ—ହରିଣ ।

୫ । ଚନ୍ଦ୍ରାତୁରେ—ଚନ୍ଦ୍ରଶାଳେ ଅନ୍ଧୁଲହୋଇ । ଚଞ୍ଚଳାକ୍ଷୀ—ରାଧା । ଚଞ୍ଚଳା ସେବକୀ—ଲକ୍ଷ୍ମୀଙ୍କ ଦାସୀ: ନିଧିଗଣ—କୁବେରଙ୍କ ନବନିଧି (ପଦ୍ମ, ମହାପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, ନନ୍ଦ, ନୀଳ ଓ ଖର୍ବ) ଦାସୀମାନେ ହେଲେ ଏହି ନିଧିମାନେ । ରାଧା ହେଲେ ଲକ୍ଷ୍ମୀ ସ୍ୱରୂପା ।

୬ । ଅନୁସର—ପଛେ ପଛେ ଯାଇ । ଚକ୍ଷୁ···ପାରି—ଆଖି ପତା ନ ପକାଇ । ଚୁଚୁର୍ଣ୍ଣ—ଚତୁରପଣିଆ । ସୁସ୍ମିତ—ମନ୍ଦହାସ, ମୁରୁକି ମୁରୁକି ହସ । ଲଜ୍ଜିତ—ଲଜ୍ଜା । ମିଶ୍ରିତ—ମିଶ୍ରିତହୋଇ । ଗଞ୍ଜିବନ୍ତ ହେଲେ—ଗମନ କଲେ ।

୭ । ଚୀରେ—ଲୁଗାରେ, ସୂକ୍ଷ୍ମ ବସନରେ । ତନୁଙ୍କୁ ଆଚ୍ଛାଦ—ଦେହକୁ (ସ୍ତନ ଓ ଜଘନକୁ) ଘୋଡ଼ାଇ । ମୋହନ—କୃଷ୍ଣ । ରଙ୍ଗେ—ରଙ୍ଗିବଣରେ ।

୮ । ଭାଷା କହ ଚତ୍ୱଚୋମ—କଥା କହ ମନ ମନ୍ତ୍ରଣା କର । ଚମ୍ପାଅଙ୍ଗୀ-ମାନେ ଅଙ୍ଗୀକାର ଭଙ୍ଗୀ—ସ୍ୱୀକାର ଚେଷ୍ଟାରେ । ସଙ୍ଗୀ କର—ମୋତେ ସାଙ୍ଗ କର ବା ଅଙ୍ଗୀକାର ଭଙ୍ଗୀକୁ ସଙ୍ଗୀକର—ସ୍ୱୀକାର ଚେଷ୍ଟାକୁ ଆଶ୍ରୟ କର ।

୯ । ତୁମ୍ଭର ମୁହଁ ହେଲା ଚନ୍ଦ୍ର । ମୋର ଆଖି ହେଲା ଚେକୁଆ, ସେଥିରେ ହେଲା ଲେଖା । ଚେକୁଆ ଚନ୍ଦ୍ରକିରଣ ପାନ କରିବା ଆଶାରେ ମଝି ଚନ୍ଦ୍ରରେ କଳଙ୍କ ହୋଇ ରହିଲା ପରି ମୋର ଚକ୍ଷୁ ତୁମ୍ଭ ମୁଖଚନ୍ଦ୍ରରେ ରହିବାକୁ ଇଚ୍ଛା କରିଛି । ପୀୟୂଷ—ଅମୃତ । ଚଖାଅ ନୋହିଲେ ବିନାଶ, ମରଣ ହେବ ମୁଁ ମରିବି । ବଧ୍ୱାଚ—ବିଧାନ, କୃତ୍ୟ ।

Digitized by srujanika@gmail.com

ଚପଳ ସ୍ୱଭାବ ଜାଣି । ଚମ୍ପକଲତିକା ଭଣି ।
ଚିନ୍ତର ସମ୍ପତ୍ତି ହୋଇଲେ ପ୍ରାପତି କି ନୁହନ୍ତା ଲୋକେ ପୁଣି । ୧୦ ।
ଗୃହ୍ଣ ସୁମନାକୁ ଗୃହିଁ । ଚକ୍କଣ ଚାଳିଅ କହି ।
ଚିନ୍ତା କଲ୍ପଲତା ହେଲେ ବରଦାତା ନୋହେ କି ଚିନ୍ତିଲେ ସହି । ୧୧ ।
ଗୃମରକେଶୀଏ ଭାଷେ । ଚିନ୍ତ ଆପଣା ମାନସେ ।
ଚକୋର ଅନଳେ ଚନ୍ଦ୍ର ଭ୍ରମ କଲେ ସେ କି ସୁଧା ଦେଇ ତୋଷେ ? ୧୨ ।
ଚନ୍ଦ୍ରକଚୂଳିଅ ଭଣି । ଗୃହିଁନ ସୁମନା ଶ୍ରେଣୀ ।
ଚଞ୍ଚରୀକ ଅଣ କରଇ କି ନାଶ ଅନୁଗତ ହେବା ଜାଣି । ୧୩ ।
ଚଳାପାଙ୍ଗୀ ଏକ କହେ । ଚଖାଦ୍ରବ୍ୟେ ଲୋଭ ରହେ ।
ଚମ୍ପକ କେତକୀ ପରାଗେ ପାଚକୀ ନ ବସୁ ମଧୁପ ସ୍ନେହେ । ୧୪ ।

୧୪-୧ – ଚଞ୍ଚଳାଙ୍ଗୀ ଗ, ଘ, ଚ, ଜ, ଝ, ଠ; ୧୫-୨ – ଚଳିଲ ଛ, ଝ ବ୍ୟତୀତ ସମସ୍ତ ପୋଥିରେ ।

---

୧୦ । ଚପଳ ସ୍ୱଭାବ ଜାଣି—କୃଷ୍ଣଙ୍କ ଚଞ୍ଚଳ ସ୍ୱଭାବ ଜାଣିପାରି । ଚମ୍ପକଲତିକା—ରାଧାଙ୍କ ଜଣେ ସଖୀ । ଭଣି—କହିଲା । ଲୋକେ—ଫସାଇବେ । ମନରେ ଭାବିଲା କଥା ଯେବେ ହୁଅନ୍ତା, ତେବେ ଲୋକେ କାହିଁକି ଚିନ୍ତା କରନ୍ତେ ? ତୁମେ ମନରେ ଅମପ୍ରଭ ଆଶା କରିଛ, ତାହା ହୋଇପାରିବ ନାହିଁ ।

୧୧ । ଗୃହ୍ଣ ସୁମନାକୁ—ସୁନ୍ଦରୀ ସ୍ତ୍ରୀ, ସୁନ୍ଦର ଫୁଲକୁ । ଚକ୍କଣ ଚାଳିଅ—କୃଷ୍ଣ । କହି—କହିଲେ । କଲ୍ପଲତା—କଲ୍ପପାଦପ, ଯାହା ଅଭୀଷ୍ଟ ପ୍ରଦାନ କରେ । ଚିନ୍ତା—ଚିନ୍ତାଇ ଦିଅ । ବରଦାତା ନହେଲେ—ବରଦା ହେଲେ । ନହେ ସହି, ଚିନ୍ତିଲେ କି ନୁହେଁ—କଣ ହୋଇପାରେ ନାହିଁ ବା ଚିନ୍ତା କଲ୍ପଲତା—କା ଜଣା କଲ୍ପବୃକ୍ଷ । ଯେବେ ବରଦା ହୁଏ, ତେବେ ଚିନ୍ତିଲେ ସବୁ ହେବ ।

୧୨ । ଗୃମରକେଶୀଏ – ଚମର କେଶ – ବାଳ ଯାହାର ଏପରି ଜଣେ ରାଧା ଦାସୀ; ଆପଣା ମାନସେ—ନିଜ ମନରେ । ଚକୋର ଅଗ୍ନିକୁ ଯେବେ ଚନ୍ଦ୍ର ବୋଲି ସ୍ତବ ଭୁଲ କରେ, ଅଗ୍ନି କ'ଣ ଅମୃତ ଦେଇ ତାକୁ ସନ୍ତୋଷ କରେ ? ଆପଣ ଚକୋର ପରି, ଅଗ୍ନି ମଧ୍ୟ ଆମ୍ଭେମାନେ; ଆମ୍ଭଙ୍କୁ ଚନ୍ଦ୍ର ବୋଲି ଅମୃତ ମାଗୁଛ ।

୧୩ । ଚନ୍ଦ୍ରକଚୂଳିଅ ମୟୂର ଚନ୍ଦ୍ରିକା ଚୂଳରେ ଯାହାର ସେ, କୃଷ୍ଣ । ସୁମନାଶ୍ରେଣୀ—ପୁଷ୍ପସବୁ, ସ୍ତ୍ରୀସବୁ । ଚଞ୍ଚରୀକ—ଭ୍ରମର । ଅନୁଗତ ହେବା ଜାଣି—ପଛରେ ଗୋଡ଼ାଇବା ଜାଣି । ସ୍ତ୍ରୀଙ୍କୁ ଅନୁଗତ ହୁଏ ଯେଉଁ ପୁରୁଷ ତାର ଆଶା ସେମାନେ ପୂରାନ୍ତି ନାହିଁ, ମୁଁ ତ ତୁମ୍ଭଙ୍କୁ ଅନୁଗତ ହୋଇଛି ।

୧୪ । ଚଳାପାଙ୍ଗୀ—ଚଞ୍ଚଳ ନେତ୍ରପ୍ରାନ୍ତ ଯାହାର; ଏପରି ଜଣେ ଚଞ୍ଚଳ କଟାକ୍ଷୀ ସ୍ତ୍ରୀ । ଚଖା ଦ୍ରବ୍ୟେ ଲୋଭ ରହେ—ଚାଖିଥିବା ଦ୍ରବ୍ୟରେ ଯିବା ଲୋଭ

Digitized by srujanika@gmail.com

ଚକିତ ଗୋବିନ୍ଦ ଶୁଣି । ଚହଲ୍ଲ ପସ୍ୱପ୍ନେ ଭଣି ।
ଗୌରୀଙ୍କ ସୁମନ କରୁଛ ଗୁମାନ କାହିଁ ପିବ ଅଳ ପୁଣି । ୧୫ ।
ଗୌରବରେ ଲଳିତା ଭାଷେ । ଶକ୍ତି ନାହିଁ ତୁମ୍ଭେ କେ ସେ ।
ଶୂକର ଧାତର କାହାର ଗୃତର ଏଥିକି କର ଏ ଅଶେ । ୧୬ ।
ଚତୁର୍ବର୍ଗଦାତା ଗିର । ଚରାଚର-ବଶକର ।
ଶତ୍ରଜାତପତି ଅମ୍ଭେ ତାର ପତି ମୁଦକାଶ୍ରି କାନନର । ୧୭ ।
ଚହଟହାସେ କେ ଭାଷେ । ଶଙ୍କାଗଲ ତୁମ୍ଭେ ଯେ ସେ ।
ଗୌରୀର ସୁମନା ବାସ ଏବେ ସିନା ଲଭି ବୁଲ ବନଦେଶେ । ୧୮ ।
ଚେତ ତା ବୋଇଲେ ହରି । ଶଠ ସ୍ୱଭାବ ଏପରି ।
ଗୌରବକୁ ପ୍ରାପତ ଶଠଙ୍କ ସମ୍ପତ୍ତି ହେଲେ କି ଛାଡ଼ଇ ଗୋଲ । ୧୯ ।

---

ରହେ; ପାତକୀ—ପାପୀ । ମଧୁପ—ଭ୍ରମର । ସ୍ନେହରେ—ପ୍ରୀତିରେ । ଚମ୍ପା ଓ କେତକୀ ପରି ଅମ୍ଭେମାନେ ରସୁ ନାହିଁ—ଚମ୍ପା ଓ କେତକୀରେ ଭ୍ରମର ବସେ ନାହିଁ, ତହିଁ ଆସ୍ୱାଦ ଲଭ ହୁଏ ନାହିଁ । ମଧୁପ ମଦ୍ୟପ ମଧ୍ୟ ।

୧୫ । ଚକିତ—ଆଶ୍ଚର୍ଯ୍ୟ ବା କମ୍ପିତ; ଚହଲି—ଭୟ ଦେଖାଇଲେ । ଗୁମାନ—ଗର୍ବ ।

୧୬ । ଗୌରବରେ—ଦୃଢ଼ରେ, ତେଜରେ; କାହାର ଶୂକର ମାନ—କାହାର ଦାସ ମାନ ହୋଇ । ଗୃତର—ନଚୁରପଣିଆ । ଏ ଅଶେ—ଆମ୍ଭମାନଙ୍କୁ ସ୍ପର୍ଶ କରିବା ଆଶାରେ ।

୧୭ । ଚତୁର୍ବର୍ଗଦାତା - ଧର୍ମ, ଅର୍ଥ, କାମ, ମୋକ୍ଷଦାତା କୃଷ୍ଣ; ଗିର— କହିଲେ । ଶତ୍ରଜାତ—କନ୍ଦର୍ପ । ପତି—ସ୍ୱାମୀ । ଅର୍ଥାତ୍ କନ୍ଦର୍ପ ଯେ ପ୍ରଭୁ—ତାହାର ଅମ୍ଭେ ପତି—ପ୍ରଭୁ—ପିତା—(କୃଷ୍ଣ) । ମୁଦକାଶ୍ରି—ଆନନ୍ଦଦାତା; କମଣ୍ଡଳ ଓ ଅନନର (ମୁଖର) ବା ବନର ଆନନ୍ଦକାରୀ । ପୁନଶ୍ଚ—ଶତ୍ରଜାତ ଯେ କନ୍ଦର୍ପ ତାହାର ଯେ ପତି—ପିତା ବାସୁଦେବ - ତାଙ୍କର ପତି—କୃଷ୍ଣ (ବସୁଦେବ ଶ୍ରୀକୃଷ୍ଣଙ୍କ କଳାରେ ଜାତ) କାନନର ଆନନ୍ଦକାରୀ ବା ଶତ୍ରଜା ଯେ ତପତି-ଶତ୍ରଜ ଆତପତି-କାମପୀଡ଼ା ତାହାର ଅମ୍ଭେ ପତି—ଦମନକାରୀ ଓ ବନର ଆନନ୍ଦ କରିବା ସଂକାଶେ ଅସିଛୁ ।

୧୮ । କେଉଁ ସଖୀ ଚହଟହାସେ—ଠୋ ଠୋ କରି ହସି କହିଲେ ତୁମ୍ଭେ ଶଙ୍କାଗଲ—ସୁମନାବାସ—ସ୍ତ୍ରୀଙ୍କ ଲୁଗା ଗୌରୀର ବନରେ ଲଭି ବୁଲ ।

୧୯ । ହରି—କୃଷ୍ଣ ତା ଚେତ ବସ୍ତ୍ରହର ଜ୍ଞାନ କରି କହିଲେ—ଶଠର— ମନର ନିଜ ଭାବ ଯେବେ ଏପରି (ତୁମ୍ଭମାନଙ୍କର)—ମୁଁ ଲୁଗା ଗୌରୀ ବୋଲି ଯେବେ ତୁମ୍ଭେମାନେ ଜ୍ଞାନକର—ହେ ଗୋପୀମାନେ ଗୌରବକୁ ଉତ୍ତମ—ଦେବାଙ୍କ

Digitized by srujanika@gmail.com

ଦେଖ ଚଞ୍ଚଳ ତା ସହ୍ୟ । ଗୃହ୍ନ କଲେ ଶିବଗ୍ରାହ୍ୟ ।
ଚନ୍ଦ୍ରମା ଦୂଷଣ କରିଛୁ ଭୂଷଣ ଆଶ ନାଶ ତୁମ୍ଭେ ନେହ୍ୟ । ୨୦ ।
ଚରଣାନୁଗତେ ହର । ଚନ୍ଦ୍ରୀ କଲେ ଗଳ ହାର ।
ଶିବ ପାତକୀଙ୍କ ତୀର୍ଥ ବାଡ଼ବ କି ଅନୁଗତ ହେଲେ ତାର । ୨୧ ।
ଗୃହ୍ୟବାଣୀ ସଖୀ ଶୁଣି । ଚାଟୁତୋଷ ବାଣୀ ଭଣି ।
ଚେଟୀରେ ଏ ଲୋଭ ବଡ଼ଇ ଦୁର୍ଲଭ ଦେଖି କି ନୋହିବ ପୁଣି । ୨୨ ।
ଚନ୍ଦ୍ରାମୃଧ ଶୁଣି ଭଣା । ଚମତ୍କାର ଏ ତ ପୁଣି ।
ଚେଟୀ ତୁମ୍ଭେ ଯାର ନାମ ଗୁଣ ଭାର କହ ଥରେ ମାତ୍ର ଶୁଣି । ୨୩ ।
ଚତୁର କହିବା ଛଳେ । ଚିତ୍ତକର୍ଷ ସଖୀ କଲେ ।
ଚଣାଲ ପିୟୂଷ ଧୋଳା ପରି ରସ ଆଶ ଭାଷ ଶୁଣାଇଲେ । ୨୪ ।

---

ସମସ୍ତ ଧନ ପ୍ରାପ୍ତି ହେଲେ ମେ ଛାଡ଼ନ୍ତି —ମୁଁ ମୋର, ତୁମ୍ଭେ କେବଳ ଧନ ମୁଁ ତୁମ୍ଭ ଛାଡ଼ିବ ନାହିଁ ।

୨୦ । ଚକର ଚଞ୍ଚଳତା—ଧୃଷ୍ଟତା ଜାଣିପାରି ତାହା ସହ୍ୟ କରି—ନିବାରଣ କରି ଶିବଗ୍ରାହ୍ୟ କୃଷ୍ଣ ଗୃହ୍ନବଚନ—ଦୀନ ବଚନ (ତୋଷାମଦ ବାଣୀ) କଲେ—ଚନ୍ଦ୍ରମା ଶିବଙ୍କ ଜଳଣ ପାନ କରିବାକୁ ଆଶା କରିଥିଲା—ତାହା ଜୀବିତାବସ୍ଥାରେ ଶିବଙ୍କଠାରୁ ପାଇ ନ ଥିବାରୁ ତାର ଆଶା ଥିବାରୁ ମଲା ପରେ ତାଙ୍କ ଦେହରେ କଳଙ୍କରୂପ ରହିଲା । ତୁମେ କପଟି ମୋର ଆଶା ନାଶ କରୁଛ – ମୁଁ ମରିବି, ତୁମେ ମୋତେ କଳଙ୍କ ପରି ଧରି ରଖିବ । ଚନ୍ଦ୍ରମା ଦୂଷଣ—କଳଙ୍କ ଭୂଷଣ କରିଛ ।

୨୧ । ଚନ୍ଦ୍ରୀ—ସର୍ପ । ଚରଣାନୁଗତେ—ପାଦରେ ଆଶ୍ରୟ କରିବା ହେତୁ ମହାଦେବ ତାକୁ ଗଳାରେ ହାର କଲେ । ତୀର୍ଥ—ଗଙ୍ଗାଦିଙ୍କୁ ଅନୁଗତ ହେଲେ; ସେଥିରେ ପାପ ଦୂର କରିବା ପାଇଁ ସ୍ନାନ କରିବାକୁ ଗଲେ ବହୁକାଳ ପାପୀକୁ ସେ ବାରଣ କରେ କି ? ସେହିପରି ମୁଁ ଚନ୍ଦ୍ରୀ— କପଟୀ ( ବକଧାର୍ମିକ ) ଓ ପାତକୀ ତେମା ପ୍ରତି ଶିବ ଓ ପାବନ ତୀର୍ଥ ହୁଅ । ବା—ଶିବ ଓ ତୀର୍ଥ ସ୍ୱରୂପ ତୁମ୍ଭେ ସର୍ପ ଓ ଚର ପାତକୀ ସ୍ୱରୂପ ମୁଁ ଶରଣାଗତ ହୋଇଛି; ମୋତେ ଆଲିଙ୍ଗନ କର, ମନା କର ନାହିଁ ।

୨୨ । କୃଷ୍ଣଙ୍କ ଗୃହ୍ୟବାଣୀ—ମଧୁର କଥା । ସଖୀ—ସଖୀମାନେ ଶୁଣି—ଚାଟୁତୋଷ ବାଣୀ ଭଣି—ଶ୍ରୀକୃଷ୍ଣଙ୍କ ମନ ଖୁସି କରିବା କଥା କହିଲେ । ଚେଟୀରେ—ଦାସୀମାନଙ୍କ ପ୍ରତି ଏ ଲୋଭ—ଏପରି ଆସକ୍ତ—ବଡ଼ଇ ଦୁର୍ଲଭ – ରାଧାଙ୍କୁ ଦେଖି କଣ ବା ତୁମ୍ଭେ କ ହେବ (ଜଗତ ପାସୋରି ପକାଇବ) ।

୨୩ । ଚନ୍ଦ୍ରାମୃଧ—କୃଷ୍ଣ ।

Digitized by srujanika@gmail.com

ଚତୁର୍ମୁଖ କୃତ୍ୟ ନାସ୍ତି । ଚରାଚର-ସାର-ସୃଷ୍ଟି ।
ଚରଣ ସ୍ତ୍ରୀର ନଖ-ନିକାଣ କୋଣକୁ ସରି କରି ତ ନ ପାରି । ୨୫ ।
ଚାରୁ ନିଜ ଶୋଭା ଗୁଣ । ଚକ୍ଷୁ ଶ୍ରୁତି ବିମୋଷଣ ।
ଚତୁର୍ଦ୍ଦଶମନୁରେ ଶେଷ କଥନରେ ସରିବାର ନୋହେ ଜାଣ । ୨୬ ।
ଚିରକାଳ ପୂର୍ଣ୍ଣ ଥିଲା । ଚେତନ ଶ୍ରବଣ ହେଲା ।
ଚାତକ ଘନସ୍ୱନ ଶୁଣି ପରା ଗୋବିନ୍ଦ ମୁଦ ବଢ଼ିଲା । ୨୭ ।
ଚିତ୍ତରେ ହର୍ଷ କଢ଼ି । ଚତୁରସ୍ୟ ଦୟା ବଢ଼ି ।
ଚକ୍ଷୁରେ ଥରେ ଦେଖାଇ ପାରିବ କି ହୋଇ ମୋ ବନମୃଗାକ୍ଷୀ । ୨୮ ।
ଚାତୁର୍ଯ୍ୟେ ଲଳିତା ଭାଷ । ଚନ୍ଦ୍ରକୁ ଲଭିଲୁ କ୍ଷଣ ।
ଚତୁର୍ମାର୍ଥ କଲେ ଅଘଟଘଟନା କେତେ ନୋହିବ ପ୍ରକାଶ । ୨୯ ।

୨୮—୧ ଛନ୍ଦାନୁରେ କ, ଗ; ୩୨—୧ ଆନନ୍ଦ ଛ, ୫ ବ୍ୟତୀତ ସମସ୍ତ ପୋଥିରେ; ଶୁଣି ପୁଣି କ, ଖ, ଗ, ଘ, ଚ, ଜ ।

---

୨୪ । ଚରିତ—ରାଧାଙ୍କ ଚରିତ । ଚିତ୍ତକର୍ଷି—କୃଷ୍ଣଙ୍କ ମନ ଟାଣି ନେଲେ । ପୀୟୂଷ—ଅମୃତ । ରସଆଶ୍ୱାସ—ପ୍ରୀତି ଆଶା କଥା । କର୍ଣ୍ଣକୁହରେ ରାଧା ଚରିତ କହିଲେ ।

୨୫ । ଚତୁର୍ମୁଖ କୃତ୍ୟ ନାସ୍ତି—ବ୍ରହ୍ମାସୃଷ୍ଟି ଯେତେ ସ୍ତ୍ରୀ । ସେହି ଚରାଚର ସାର ସୃଷ୍ଟି—ସ୍ଥାବର ଜଙ୍ଗମର ସାର ଶୋଭା ସ୍ୱରୂପା ରାଧାଙ୍କ ଚରଣ ନଖ କୋଣର ଶୋଭାକୁ ତୁଲ୍ୟ ନୁହନ୍ତି ବା ସ୍ଥାବର ଜଙ୍ଗମର ସାର ଶୋଭା ସ୍ୱରୂପା ବ୍ରହ୍ମା ସୃଷ୍ଟ ନାରୀମାନେ ତାଙ୍କର ଚରଣ ନଖ କୋଣର ଶୋଭାକୁ ତୁଲ୍ୟ ନୁହନ୍ତି ।

୨୬ । ଚକ୍ଷୁ ଶ୍ରୁତି ବିମୋଷଣ—ଆଖି କାନ ଦେଖିଲେ ମୁଗ୍ଧ କରିବ । ଚତୁର୍ଦ୍ଦଶ ମନୁରେ—ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ, ସାବର୍ଣ୍ଣି, ଦକ୍ଷସାବର୍ଣ୍ଣି, ବ୍ରହ୍ମସାବର୍ଣ୍ଣି, ଧର୍ମସାବର୍ଣ୍ଣି, ରୁଦ୍ରସାବର୍ଣ୍ଣି, ରୌଚ୍ୟ-ଦେବସାବର୍ଣ୍ଣି, ଇନ୍ଦ୍ରସାବର୍ଣ୍ଣି—ଏହିପରି ୧୪ ମନୁ । ଗୋଟିଏ ମନୁରେ ଗୋଟିଏ କଳ୍ପ ହୁଏ । ଏହିପରି ୧୪ ମନୁରେ ଶେଷଦେବ—ବାସୁକି ସହସ୍ର ମୁଖରେ ବର୍ଣ୍ଣନା କଲେ ତାଙ୍କ ସୁନ୍ଦର ଗୁଣ ସରିବ ନାହିଁ ।

୨୭ । ଚାତକ ଘନ ଶବ୍ଦ ଶୁଣିଲା ପରି କୃଷ୍ଣଙ୍କ ଆନନ୍ଦ ବଢ଼ିଲା ।

୨୮ । ବନମୃଗାକ୍ଷୀ—ବନସ୍ଥ ଭ୍ରମଣ କରୁ ମୋତେ ଯେବେ ଦେଖାଇବ ।

୨୯ । ଚାତୁର୍ଯ୍ୟେ—ଚତୁରପଣିଆରେ । ଚନ୍ଦ୍ରକୁ କ୍ଷଣ ମାତ୍ର ପାଇଲୁ; ଅଘଟ ଘଟନା—ଅସମ୍ଭବ ସମ୍ଭବ—ବ୍ରହ୍ମା ଅନୁଗ୍ରହ କଲେ କେତେ ନୋହିବା କଥା ହୋଇଥାଏ ।

Digitized by srujanika@gmail.com

ଚାମୀକର ଗୁଞ୍ଜେ ତୁଳା । ଗଣ୍ଡୁ ସାତସିନ୍ଧୁ ହେଲା ।
ଚରଣେ ଆକାଶ ଲୁଚିଲା ଅମୃତ ରାହୁ ରବି ଭୋଗକଲା । ୩୦ ।
ମତି ସ୍ଥିର ତୁମ୍ଭେ କର । ଏଥିରେ ମନାଅ ହର ।
ନଷ୍ଟ ସୁକୃତ କେ ଜାଣିଛି ଉପାୟ ଦୁର୍ଲ୍ଲଭକୁ ପ୍ରତିକାର । ୩୧ ।
ଶତ୍ରାନନ୍ଦ ଶୁଣି ଗୁଣି । ଚାତୁର୍ଯ୍ୟ ଧୈର୍ଯ୍ୟରେ ଭଣି ।
ବାନ୍ଧିବା ପାଇଁକି ତୁମ୍ଭ ମନ ଗୁଣ ଦୈନ୍ୟ କଲେ ସୁଲକ୍ଷଣୀ । ୩୨ ।
ନରକାଳରୁ ସନ୍ନ୍ୟାସ । ଶତ୍ରୁଜାତେ ନୋହୁ ବଶ ।
ଚତୁରାଚରିତ ଶୁଣିବା ଦୁରିତ ଦେଖିବା ଯାଏ ମହେଶ । ୩୩ ।
ଚୈତନ୍ୟ କହନ୍ତୁ ଏପରି । ଚରାଇ ଗୋରୁ ବାହୁଡ଼ି ।
ଚଞ୍ଚଳେ ଆସ ହରି ନାମ ଡାକନ୍ତେ ଚକିତ ମତି ସବୁରି । ୩୪ ।

---

୩୦ । ଚାମୀକର—ସୁନା । ଗୁଞ୍ଜା—କାଇଞ୍ଚ (ତୁଚ୍ଛ ପଦାର୍ଥ) । ଅଗସ୍ତିଙ୍କ ଦ୍ୱାରା ସାତ ସମୁଦ୍ର ପାନକରା ହୋଇଥିଲା । ବାମନରୂପୀ ବିଷ୍ଣୁଙ୍କ ପାଦରେ ଆକାଶ ଢାଙ୍କି ହୋଇଗଲା । ରାହୁ ରବି—ସୂର୍ଯ୍ୟ ଅମୃତ—ଚନ୍ଦ୍ର (ବା ସୁଧାକୁ) ଭୋଗକଲା ।

୩୧ । ଅଘଟନା କଥା ବିଧାତା କରନ୍ତି; ତୁମ୍ଭେ ମନକୁ ସ୍ଥିର କର । ହରଙ୍କୁ—ଶିବଙ୍କୁ ଏଥିପାଇଁରେ ସନ୍ତୋଷ କର; ନଷ୍ଟ ସୁକୃତଗୁଣକୁ କେ—କେଉଁ ଲୋକ ଦୁର୍ଲ୍ଲଭ ଉପାୟ—ପ୍ରତିକାରକୁ ଜାଣିଛି; ଅର୍ଥାତ୍ ତୁମ୍ଭର ନଷ୍ଟ ସୁକୃତକୁ ଦୁର୍ଲ୍ଲଭ ଉପାୟ ପ୍ରତିକାର—ରାଧାଙ୍କୁ କେ ଜାଣିଛି ଅର୍ଥାତ୍ ମୋ ବିନା କେହି ଜାଣନ୍ତି ନାହିଁ । (ମତି ସ୍ଥିର କରି ଶିବଙ୍କୁ ପୂଜାକର । ନଷ୍ଟ ପୁଣ୍ୟ ଥିଲେ ଦେଖା ହୋଇପାରେ, କିନ୍ତୁ କେହି ଦୁର୍ଲ୍ଲଭର ପ୍ରତିକାର ଉପାୟ ଜାଣନ୍ତି ନାହିଁ) ମୁଁ ଜାଣେ ମାତ୍ର; ଗୂଢ଼ୋକ୍ତି ।

୩୨ । ଶତ୍ରାନନ୍ଦ ଶୁଣି ଗୁଣି—ଏପରି ଶୁଣି ଶତ୍ରୁ ଆନନ୍ଦକର ଭାବ ଚତୁର-ପଣିଆରେ ଓ ଦୃଢ଼ତାରେ କହିଲେ—ତୁମ୍ଭ ମନ ଓ ଗୁଣ ବାନ୍ଧିବାପାଇଁ ସେ ସୁଲକ୍ଷଣା ଦୀନ ହେଲେ ।

୩୩ । ଶତ୍ରୁ ଜାତେ—କନ୍ଦର୍ପ ଚତୁରା ଚରିତ—ରାଧାଙ୍କ ବୃତ୍ତାନ୍ତ ଶୁଣିବା, ଦୁରିତ—ପାପ ବା କଷ୍ଟ; ପର ନାରୀର ବୃତ୍ତାନ୍ତ ଶୁଣିଲେ ପାପ ହୁଏ । ମହେଶ—ଶିବ ଦର୍ଶନରେ ସେ ପାପ ଦୂରୀଭୂତ ହୁଏ । ଏଠାରେ ଗୂଢ଼ୋକ୍ତିରେ—ରାଧା ଚରିତ ଶୁଣିବା କଷ୍ଟ; ମହେଶ (ରାଧାଙ୍କ) ସ୍ଥାନ ଦେଖିବା ଯାଏ, ତା ଦର୍ଶନ ହେଲେ ମନର କଷ୍ଟ ଦୂର ହେବ ।

୩୪ । ଏପରି ଚୈତନ୍ୟ—ଜ୍ଞାନ, କହନ୍ତୁ—କହିବା ସମୟରେ; ଗୋରୁ ବାହୁଡ଼ି ଚରାଉ ଚରାଉ ।

Digitized by srujanika@gmail.com

ଚଳିଲେ ସବେଁ ଅଲ୍ଲଟେ । ଚିତ୍ତ ସଂଶୟ ଉଚ୍ଛଳେ ।
ଚନ୍ଦ୍ର ରମାନନ୍ଦ ପାଦପଦ୍ମଦ୍ୱନ୍ଦ୍ୱ ଅଭିମନ୍ୟୁ ତୋଷ ମନେ । ୩୫ ।

---

## ଏକପଞ୍ଚାଶତ୍ ଛାନ୍ଦ

### ଶ୍ରୀ କିଶୋରୀଜିଉ ଉତ୍କଣ୍ଠା ଉକ୍ତି । ନିୟମ ପଂକ୍ତି ଶୃଙ୍ଖଳା ।

ଶ୍ରେଣୀ (ବାଣୀ)

ଏଥିଅନ୍ତେ ଶୁଣ ରସ ରସବନ୍ତୀ ସଖୀବଂଶ
ବସନ୍ତବାସ ନିଗୂଢ଼ ଭାଷ କଥନ ।
ଥନ ଥନ ବିଲୋକନ କନ କନ ଶୁଣି ମନ
ମନମଥରେ ଅବଶ ନାଗରୀରତନ ।
ତନମନ ପ୍ରେମରେ କରି । କରୀନ୍ଦ୍ରଗତି କହନ୍ତି କର୍ମ ଅଦରି । ୧ ।
ଦଗ୍ଧ ସମାନ ତ ବାସ ବାସ ନଗର ସଦୃଶ
ଦୃଶରେ ଦୃଶ୍ୟ କେବଳ ଏକା ସେହି ତ ।
ହିତ ହେବ ନାହିଁ ଆନ ଆନନ୍ଦ ହେବାକୁ ଦାନ
ଦାନବ ମାନବ ଦେବ ଯକ୍ଷ ନାଗ ତ ।
ଗତ ଜନ୍ମ ସୁକୃତରାଶି । ଗ୍ରନ୍ଥିଏ ତ ନାହିଁ ହେବ କି କରି ଦାସୀ । ୨ ।

---

୩୫ । ସବେଁ ଅଲ୍ଲଟେ—ଲୁଚି ଲୁଚି ଚଳିଲେ ବା ଦୃଷ୍ଟିର ଅନ୍ତରାଳରେ—ଦୁଃଖାକ୍ରାନ୍ତ ହୋଇ ଚିତ୍ତ ସଂଶୟ—ମନ ସନ୍ଦେହରେ, ଉଚ୍ଛଳେ—ଉଦ୍‌ଭ୍ରାନ୍ତ ।

---

। ଶୁଣ ରସ—କୃଷ୍ଣ ରସ; ରସବନ୍ତୀ ସଖୀବଂଶ—ରାଧାଙ୍କ ସଖୀସମୂହରୁ; ବସନ୍ତବାସ—ଶ୍ରୀକୃଷ୍ଣଙ୍କ ନିଗୂଢ଼ କଥା କହିବାରେ, ନାଗରୀରତନ—ରାଧା, ଥନଥନ—ଲୋତକପୂର୍ଣ୍ଣ । ବିଲୋକନ—ଚକ୍ଷୁ । ଶୁଣି—ଚିନ୍ତା କରି, ମନ କନକନ—ଚଞ୍ଚଳ । ମନମଥରେ—କାମରେ । ପ୍ରେମରେ—କୃଷ୍ଣ ପ୍ରୀତିରେ । ତନମନ କରି—ଚଲନା ହୋଇ । କରୀନ୍ଦ୍ର ଗତି—ଗଜରାଜଗମନା ।

୨ । ବାସ—ଗୃହ, ଦଗ୍ଧ ସମାନ—ଶୁଙ୍ଘା ଗଣ୍ଡି ତୁଲ୍ୟ । ବାସ—ବସ୍ତ୍ର, ନଗର—ପର୍ବତର, ଦୃଶରେ ଦୃଶ୍ୟ—ଆଖିରେ ଦେଖା । କେବଳ ସେ କୃଷ୍ଣ ହିତ—ତୁମାର ମଙ୍ଗଳଦାୟକ । ଦେବ, ଦାନବ, ମାନବ, ଯକ୍ଷ ଲୋକରେ କେହି ତାଙ୍କ

Digitized by srujanika@gmail.com

ଦାସୀ କର୍ମେ ଥିଲ ପାଇଁ          ପାଇଛୁ ଋଷି ପ୍ରସାଦ
ସାଇଁ କଲା ଥିଲ କେତେ ପୁଣ୍ୟ ସଞ୍ଚିତ ।
ତତ୍ତ୍ୱରେ କର ଅପ୍ସରୀ          ସୁସ୍ୱ ସାର ସ୍ୱର୍ଗପୁରୀ
ପ୍ରବଳ ଭାରତ ଇନ୍ଦ୍ର କୋଳକୁ ଗତ ।
ଗତ ଜନ୍ମ ସୁକୃତ ବିନା । ଧନାଶିଲ ଇହ ଜନ୍ମ ଅମ୍ବା ନବୀନା । ୩ ।
ବିନାଶନ ବ୍ରତ ଧର          ଧରଣୀରେ ସେହୁପର
ପରୀକ୍ଷା ଦେଖାଇବି ମୁଁ କୃଷ୍ଣ ଆଶରେ ।
ଶରେ ତ ଦହୁଛୁ କାମ          କାମନା କର ଜନମ
ନ ମର ହୋଇବି ଶ୍ୟାମ ଅଛୁ ମନରେ ।
ନବେ ହେବେ କୃଷ୍ଣ ମୋ ପର । ପରାଧୀନ ଦୁଃଖ ତେବେ ଜାଣିବେ ଧୀର ।୪।
ଧୀର ଧୀରମଧ୍ୟା ଭାବେ          ଭାସେ ସଖୀଏ ବିରବେ
ରସେ ମଣ୍ଡିତାରୁ କେଳିଛୁ ଏ କାମନା ।

---

ଛଡ଼ା ଆନନ୍ଦଦାତା ନାହିଁ । ଗତ······ଦାସୀ—ପୂର୍ବଜନ୍ମର ପୁଣ୍ୟ ସବୁର ନିକଟ ନାହିଁ—ଯାହାଦ୍ୱାରା କି ମୁଁ ତାଙ୍କର ଦାସୀ ହେବି ।

୩ । ଦାସୀ—କେକେଶ୍ରେଣୀ କର୍ମରେ ଥିଲ ବୋଲି ଋଷି ମହାଶୟଙ୍କ ପ୍ରସାଦ – ରୂପରେ ସନ୍ତୋଷ କଲ ସାଇଁ—ସ୍ୱାମୀ କଲ: ପୂର୍ବ ଜନ୍ମରେ ତାର କେତେ ପୁଣ୍ୟ ଥିଲ ବା ଅମ୍ବିକାର ଦାସୀ ଓ ବିଦୁରର ମାଆ କର୍ମରେ ଥିଲା ବୋଲି ତାକୁ—ଅମ୍ବିକା ଭୟରେ ନିଜେ ନ ଯାଇ ତାକୁ ରାଣୀ ବେଶ କରି ବ୍ୟାସଙ୍କ ପାଖକୁ ପଠାଇଥିଲେ; ସେ ଦାସୀଠାରୁ ବିଦୁର ଜନ୍ମିଲେ । ଅପ୍ସରୀ—ସ୍ୱର୍ଗଲୋକ ଅପ୍ସର ସ୍ତ୍ରିଅ—ସ୍ୱର୍ଗପୁରୀରେ ସୁଖ ମାତ୍ର—ଦେବାଶ୍ରେଷ୍ଠ । ପୂର୍ବଜନ୍ମର ପୁଣ୍ୟ ନ ଥିବାରୁ କାଶୀ ରାଜକନ୍ୟା ଅମ୍ବା ଭୀଷ୍ମଙ୍କୁ ପତିରୂପେ ନ ପାଇ ଅସହାୟ ଅବସ୍ଥାରେ ଅଗ୍ନିରେ ଝାସ ଦେଇ ମଲ ।

୪ । ବିନାଶନ—ମରଣ ବ୍ରତ ବା ଅନଶନ ବ୍ରତ ଧରି କୃଷ୍ଣପ୍ରାପ୍ତିରେ ପରୀକ୍ଷା ଦେବି—ଅଗ୍ନିରେ ଝାସ ଦେବି । ମୁଁ ନ ମରି କୃଷ୍ଣ ହେବି । ନବେ—ନର-ଲୋକରେ, କୃଷ୍ଣ ମୋ ପରି ହେବେ—ସ୍ତ୍ରୀ ରୂପ ଧରିବେ ବା ଶ୍ରୀକୃଷ୍ଣ ମୋ ପରି ବ୍ୟାକୁଳ ହେବେ, ମୁଁ କୃଷ୍ଣଙ୍କ ପରି ନିଷ୍ଠୁର ହେବି । ବିନାଶନ ବ୍ରତ ଧରି—ନିଜ ମରିବା ପଣ ଓ ମାରିବା ପଣ । ଏଠାରେ କୃଷ୍ଣଙ୍କୁ ଉପାଳମ୍ଭ କରିବା ହେତୁଁ ଶେଷ ଧୀରମଧ୍ୟାର ଭକ୍ତି ହେଲା ।

୫ । ଧୀର—ଧୀରତା: ଧୀରମଧ୍ୟା ରାଧାଙ୍କୁ ଭାବରେ—କହେ [ ଧୀରା (ଧୀର-ମଧ୍ୟା' ରୁ ବକ୍ରୋକ୍ତ୍ୟା ବ୍ୟଙ୍ଗ୍ୟୋପ୍ରାଣ ସାଗରପ୍ରିୟମ୍ ] ହେ ସଖୀମାନେ ବିରବେ—

Digitized by srujanika@gmail.com

ମନାସିଲେ ଲାଜ ହେବ ହେ ବରହକେଶୀ ଭାବ
ଭାବ ବେଦନା ବଢ଼ିବ ଯାହା ଭାବନା ।
ବନାନଳ ଦାହକୁ ବଳା । ବଳାହକ-ହିମୋହିନୀ ତନ୍ତ୍ରା-ବତୁଳା । ୬ ।
ତ୍ରିଳାଙ୍ଗୀ ଭାଷିଲେ, ହର ହରଷେ ଦେବାରୁ ବର
ବରଅଙ୍ଗୀ ପ୍ରଦ୍ୟୁମ୍ନ ପାଳନ୍ତି ହୋଇଛୁ ।
ଇଚ୍ଛି ପ୍ରସ୍ତାରେ ଝାସିବା ଶିବାଙ୍କୁ ପ୍ରକ୍ତ ତୋଷିବା
ଶିବାରକ ବାରଦେବା ମନରେ ଅଛୁ ।
ଅଚ୍ଛଦ୍ର ଏ ବାଞ୍ଛା ହେବ କି । ବ କୀପ୍ରାଣପ୍ରିୟା କହେବେ କି ହେବଜୀ । ୬ ।
ବଙ୍କିମା ଗୃହାଣୀ ତାର ତାରକ ମାରକ ଶର
ଶରଣ ଅଶରଣ ଲୋକର ବଗୃହ ।
ଗୁନବର୍ଗ ସୁଖପଦ ପଦ୍ମକେ ଅଛୁ ବମନ
ପଦଦାସୀ ହୋଇଲେ ବାଧିବ କି କର ?
କରକରଜନ୍ତ ଭ୍ରାନ୍ତିଳା । ଧ୍ୟଜଙ୍ଗ ଯାକଭୋଗ ବର୍ତ୍ତିକ ମଦନ । ୭ ।
୭—୨ ପ୍ରଦ୍ୟୁମ୍ନ ( ଶ୍ରହଣ )

---

ଦୁଃଖରେ ଭାସେ—ଭାସିବାରୁ ଧମରେ—ଶଙ୍କା ଜନମରେ ବୁଡ଼ିବାରୁ ଏ କାମନା—ଏ ବାଞ୍ଛା ସାଧାରେ ହେବ କି । ହେ ବରହକେଶ—ହେ ମୟୂରପୁଚ୍ଛକେଶୀ ଭାବ—ତନ୍ତ୍ରାକର, ମନାସିଲେ—ମନରେ ଭାବଲେ ଭାବବେଦନା—କାମ ଦୁଃଖ ହେବ ଲକ ଅଧିକ ବଢ଼ିବ । ଭାବନା—କୃଷ୍ଣଚିନ୍ତା ଗ୍ରତ; ହେ ବଳାହକମୋହିନୀ—ଇନ୍ଦ୍ରମୋହିନୀ ବନାନଳ ଦାହକୁ ବଳା—ବନାଗ୍ନି ଦାହକୁ ଅଧିକ ଯେ ତନ୍ତ୍ରା—ଦୁଃଖ ବତୁଳା—ଅଧିକ ହେବ ଅର୍ଥାତ୍ ବେଶୀ ବଳ ଧରିବ, ତାର ତୁଳନା ହେବ ନାହିଁ ।

୬ । ତ୍ରିଳାଙ୍ଗୀ—ରାଧା । ମନ୍ମଥ ପ୍ରଦ୍ୟୁମ୍ନ ଅଜ୍ଞାତବାସରେ ପାର୍ବତୀ ବନମଧ୍ୟକୁ ପ୍ରବେଶ କରବାରୁ ସ୍ତ୍ରୀ ପାଲଟିଲେ ଓ ମହାଦେବ ଅନନ୍ଦରେ ବର ଦେବାରୁ ପୁରୁଷ ଅଙ୍ଗ ପାଇଲେ । ଶିବାଙ୍କୁ—ପାର୍ବତୀଙ୍କୁ । ଶିବାରେ—ବଦର୍ପ । ବାରଦେବା—ନିବାରଣ କରବା । ଘଉଡ଼ାଇଦେବା ଅର୍ଥାତ୍ ମୁଁ ପୁରୁଷ ହେଲେ ଅର୍ଥାତ୍ କୃଷ୍ଣ ହେଲେ କୃଷ୍ଣ ରାଧା ହେଲେ ଦୁଃଖ ବୁଝିପାରବେ ବା ଇଚ୍ଛା ଅଚ୍ଛଦ୍ର—ପୂର୍ଣ୍ଣ । ବଳ-ପ୍ରାଣପ୍ରିୟା—ଶ୍ରୀକୃଷ୍ଣ ।

୭ । ତାର—ଉଜ୍ଜ୍ୱଳ ମାରକ ଶର—କନ୍ଦର୍ପ ଶରର, ତାରକ—ରକ୍ଷକ, କୃଷ୍ଣ ଦୃଷ୍ଟି ପଡ଼ିଲେ କନ୍ଦର୍ପ ବାଧା ସ୍ଥିର ରହେ ନାହିଁ । (ମାରକ—କନ୍ଦର୍ପ ଶରର ତାରକ—ଓଁକାର ସ୍ୱରୂପ—ଯାବତୀମାନଙ୍କର ନାଶ ବିଷୟରେ ଦକ୍ଷ ବା

Digitized by srujanika@gmail.com

ହଜଇ ବିବେକମାନ        ମାନବୀ କି ସେ ସମାନ
ମାନ [illegible]କବେ ଲୋକନେ ସୁର ତରୁଣୀ ।
ଋଣୀ ସୁରତରେ ନାଗ-        ନାଗସ୍ତ୍ରୀ ହୋଇବେ ଅଗ
ଅଗ ଅରଣ୍ୟରେ ଇଚ୍ଛି କାମ-ସରଣୀ ।
ରଣିତ ନୂପୁର ନାଦରେ । ଦରେ ଦାସୀ ହେବେ ରମା କ୍ଷମାଧ ଖରେ । ୮ ।
ଖରେ ଭୁରେ ଅଧପୁରେ        ପୁରେ ଯଶ ସୁଷମାରେ
ମାରେ ଘାରି ନୋହିବ କେ ଦେଖି ମୂରତି
ରତି ଇଚ୍ଛି ପତିବ୍ରତୀ        ବ୍ରତରେ କି ସନମତି
ମତିରେ କେ ବାଞ୍ଛା ନ କରିବ ପୀରତି ?
ରତି-ପତି ନାସ୍ତି ହେବାରେ । ବାରେ ବାରେ ମନାସି ହାସିବ ସାଗରେ । ୯ ।
୯ —ଅ ବର୍ତ୍ତିବେ ଅର୍ଥରେ ବ୍ୟବହୃତ;

---

ବାଙ୍କୃବାଣୀ ଲୋକଙ୍କୁ ମାନେ ଓ ତାରେ ) ଅଶରଣ ଲୋକର ଶରଣ—ଅରକ୍ଷ ରକ୍ଷକ । ତାଙ୍କର ପଦ କି ପାଦ ଚତୁର୍ବର୍ଗ—ଧର୍ମ ଅର୍ଥ କାମ ଓ ମୋକ୍ଷର ପଦ—ସ୍ଥାନ ପଦଦାସୀ ହେଲେ ବିପଦ ବାଧିବ ନାହିଁ । ଶ୍ରୀଭୁଜ—ଶୋଭାଯୁକ୍ତ ବାହୁ, ହସ୍ତୀ ଶୁଣ୍ଡରୁ କଣିହ୍ରୁ—ଭୁଜଙ୍ଗରାଜ ଶ୍ୱେତ—ଶେଷଦେବ କି ବାସୁକିଙ୍କ ଦେହ ଏହାର ସହଜରେ ବିତର୍କ—ସମ୍ଭାବନା ହେଉନାହିଁ ।

୮ । ମୋର ବିବେକ—ବିଶୃଙ୍ଖଳା, ମାନ—ଅଭିମାନ ହଜି ଯାଉଛି—ମନୁଷ୍ୟ ସ୍ତ୍ରୀ କ୍ରମଙ୍କୁ ତୁଳନା କରିହେବ, ଲୋକନେ—ଦେଖିବାରେ ସୁରତରୁଣୀ—ଦେବ-ସ୍ତ୍ରୀମାନେ ମାନ—ଗର୍ବ ଛାଡ଼ିଦେବେ, ନାଗ ନାଗସ୍ତ୍ରୀ—ନାଗସ୍ତ୍ରୀମାନେ; ସୁରତରେ—ସମ୍ଭୋଗରେ, ଋଣୀ ହେବେ—ସମାନ ସୁଖ ଦେଇପାରିବେ ନାହିଁ । କାମସରଣୀ—ରତି ପ୍ରୀତି ଇଚ୍ଛିଲେ, ଅଗ—ଅପରାଧ ଅରଣ୍ୟରେ (କନ୍ଦର୍ପ ପିତା—ଶ୍ରୀକୃଷ୍ଣ; ରତି ତାଙ୍କ ପୁତ୍ରବଧୂ ) ରଣିତ—ଧ୍ୱନିତ ଶବ୍ଦ କରୁଥିବା, ରମା—ଲକ୍ଷ୍ମୀ, କ୍ଷମା—ପାର୍ବତୀ, ଖରେ—ଶୀଘ୍ରରେ, ଦରେ—କନ୍ଦର୍ପ ଦର୍ପରେ ଦାସୀ ହେବେ—ଅନ୍ୟ ସ୍ତ୍ରୀଙ୍କ କଥା କଣ କହିବା ?

୯ । ଖରେ—ସ୍ୱର୍ଗରେ, ଭୁରେ—ପୃଥିବୀରେ । ଅଧଃପୁରେ—ପାତାଳରେ । ସୁଷମାରେ—ଶୋଭାରେ ଯଶ ପୁରେ । ମାରେ—କନ୍ଦର୍ପରେ । ପତିବ୍ରତୀ—ସତୀ-ମାନେ ରତି ଇଚ୍ଛି—ରତି ଇଚ୍ଛାକରି ବ୍ରତରେ କି ବର୍ତ୍ତିବେ କି—ଧୈର୍ଯ୍ୟଧରି ରହି

Digitized by srujanika@gmail.com

ଗତେ ଯେମନ୍ତ ଆଦର ଦରପଣେ ମୋ ସୁନ୍ଦର
ଦରଶନେ ତେମନ୍ତ ମଣିଲ ସଜନ
ଜନିତ ବସ୍ତୁରବାର ବାରଧରକଳେବର
ବରଣ ନ କଲେ ଶିରେ ପଡ଼ୁ ଅଶନ
ସନ୍ନିପାତୀ ପଥ୍ୟ ନେଲା ଭିତର ମନେ ହେଉଛି ରସ ଭାବନା । ୧୦ ।
ବିତ୍ତପତି ମଘବାର ବାରପତି ଉମାବର
ବରଭୂତି ଉରପତି ମଣେ ଇତର ।
ତରଣିଜାତଟେ ବସି ବଂଶୀଧର ପ୍ରେମେ ରସି
ରସିକିନୀ ହେବା ପାଇଁ ଲୋଭ ଅପାର ।
ସାର ଯେବେ ଏମନ୍ତ କର । କର ଧରୁଛି ଏ ଅନାଥିନୀଙ୍କ ଭାବ । ୧୧ ।
ତାରପତି ମୁଖ ତାର ତାରତମ ମନୋହର
ହରଷ ହୋଇବ ଯାହା ନିରେଖି ଈକ୍ଷଣ ।
କ୍ଷଣକାନ୍ତିକ ସମାନ ମାନସ ଚଞ୍ଚଳ ଯାନ
ଅନାନ ଦାନା କାନ୍ତିକି ହେବ ସ୍ମରଣ ।
ରଣରଣ ଧାଉଛି ଦେହ । ଦେହଳୀ ବଳି ଚଳିବା ନୋହୁ ସ୍ନେହ । ୧୨ ।

---

୧୦ । ମୋର ସୁନ୍ଦର ଦରଶନେ—ମୋର ସୌନ୍ଦର୍ଯ୍ୟ ଦେଖନ୍ତେ, ଦରପଣରେ—ଆରସୀରେ, ଗତେ—ଶରୀରରେ ଯେମନ୍ତ ଆଦର - ସ୍ନେହ, ଜଳ ଶୋଷି କୃଷ୍ଣବନା ବସ୍ତ୍ରବାର—ବସ୍ତ୍ରସବୁ, ଜନିତ—ଜାତ ହେଉଛି । ବା ବସ୍ତ୍ରଜନିତ—ଜାତ ହେଉଛି ତୁମେ ବାର—ମନରେ ଭାବ । ବାରଧରକଳେବର—ମେଘଶ୍ୟାମ କୃଷ୍ଣଙ୍କୁ, ବରଣ ନ କଲେ । ଅଶନ—ବଜ୍ର । ସନ୍ନିପାତୀ ମତ୍ତ ପଥ୍ୟ—ଭିତର ମନରେ ଅନ୍ତଃକରଣରେ ରସ—ଜଳ, ଶୃଙ୍ଗାର ରସ ଭାବନା କରୁଛି ।

୧୧ । ବିତ୍ତପତି—କୁବେର, ମଘବାର—ଇନ୍ଦ୍ର । ବାରପତି—ଜଳପତି ବରୁଣ ଉମାବର—ମହାଦେବ । ବରଭୂତି—ଉତ୍କୃଷ୍ଟ ଐଶ୍ୱର୍ଯ୍ୟ (ଧନ) ପ୍ରାପ୍ତିକି ଇତର—ତୁଚ୍ଛ ତରଣିଜାତଟେ—ସୂର୍ଯ୍ୟକନ୍ୟା ଯମୁନାକୂଳେ । ବଂଶୀଧର—କୃଷ୍ଣ ।

୧୨ । ତାର—ଶ୍ରୀକୃଷ୍ଣଙ୍କର ତାରପତି—ଚନ୍ଦ୍ରରୂପ ମୁଖ ଅତି ତାରତମ—ଉଜ୍ଜ୍ୱଳତମ ହୋଇ ମନୋହର ସୁନ୍ଦର ହୋଇଛି । ଈକ୍ଷଣ—ମୋ ଚକ୍ଷୁ । ମୋ

ବହନ ତା ପଦରଜ ଭଞ୍ଜ ମୋ ନୋହରେ ସଜ
ଫଟଉରେ ହୋଏ ଜୀବ ଯିବାକୁ ଆଶ ।
ଆଣୀବଷ୍ ଭ୍ରମ ବାସ ନୋସହିଁ କାରସଦୃଶ
ଦୃଶରେ ଶ୍ୟାମଳ ରୂପ ଯାଏ ଆଭାସ ।
ଭ୍ରସିଗଲି କାମଧୂମାରେ । ନରେଶ ପଶ୍ୱେ ରଣ ସଜନୀ ଥରେ । ୧୩ ।
ଆରେ ଆନାଅ ବାଗ୍ରହ ଗ୍ରହ କରଉ ଅଦେହ
ଦେହ ସେ ପୋଡ଼ାର ବଳ ନେବ ନଦାନ ।
ଦାନ ଏତେ ମାଜ କର କର ଧରୁଛି ମିତର
ତରଣିଜାରେ ପକାଅ ହେବ ପାବନ ।
ବନଜନୀ ହୋଇଛି ହେବ । ହେ ବବେକ ତେବେ ତାଙ୍କ ବକ୍ଷ ଲଭିବ ॥
ଖ୍ୱା-ବଗତ ହୋଇ ଜୀବ ଜୀବଧବପୁର ଯିବ
ଯିବ ତହିଁକ ବଗୃର ନାହିଁ କଥିତେ ।
ଛତେ ହୋଏ କେଣେ ଯିବ ଜୀବତେ ନାମ ଭଜିବ
ଜୀବିକା ଶ୍ରୁବକୁ କରଥିନା ଜପତେ ।
ଶତେ ଜନ୍ମ ଯାଏ ସକଳ । କଲ୍ପତରୁତଳେ ବସି ମାଧବ ଜପ । ୧୫ ।

୧୩ । ବହନ—ଶୀଘ୍ର; ତା ପଦରଜ—କୃଷ୍ଣଙ୍କ ପାଦଧୂଳି । ଭଞ୍ଜ—କୋଳଦଅ । ଫଟଉରେ—ପଟ୍ଟରେ, ଜୀବ—ପ୍ରାଣ ଯିବାକୁ ମଜ ଆସି ହୁଏ । ବାସ—ଲୁଗା; ଆଶୀବିଷ—ସର୍ପ ଭ୍ରମ ହେଲା; ବାସ—ଘର ମଧ୍ୟ କାରା ସଦୃଶ—ଜେଲଖାନା ସମାନ ହେଲାଣି । ଦୃଶରେ—ଅକ୍ଷିରେ, ଶ୍ୟାମଳ ରୂପ - କାଳିଆ ଦେହ, ଅଭାସିଯାଏ—ଦେଖାଯାଏ । କାମଧୂମାରେ—କାମନଦୀରେ ଭାସିଗଲି, ନରେଶ—ଅରିଷ୍ଟ ରାଜା ।

୧୪ । ବଗ୍ରହ—ମୋ ଦେହ, ଅଦେହ—କାମ, ଗ୍ରହ କରୁଛି— ଗ୍ରାସିଛି; ଦେହ ସେ ପୋଡ଼ାର—ସେ ପୋଡ଼ା କନ୍ଦର୍ପର ବଳ ନେବ - ବଳ ଦଆନେବାର ନଦାନ —ନଷ୍ଟଯୁ । ଏତେମାଜ ଦାନ କର—ଏଥିକା ମାଜ ଦଅ । ମିତର—ମିତ୍ରମାନଙ୍କର ହାତ ଧରୁଛି । ତରଣିଜା ଯମୁନାରେ, ପାବନ—ପବନ । ବନଜନୀ ହୋଇଛି ହେବ - ପଦ୍ମିନୀ ସ୍ତ୍ରୀ ହୋଇଛୁ ଯମୁନାରେ ପଦ୍ମଲତା ହେବ । ହେ ବବେକ – ହେ ବଗ୍ଧରଣୀଲୋକେ, ତେବେ ତାଙ୍କ ବକ୍ଷସ୍ଥଳ ଲଭିବ—ମତେ ପଦ୍ମମାଳା କରି ଗଳାରେ ଲଗାଇବେ ।

୧୫ । ଖ୍ୱା ଭୟ । ବଗତ—ଦୂର । ଜୀବ—ଜୀବନ; ଜୀବଧବପୁର—ଯମପୁର, ଯିବ—ଯାଉ, ତହିଁକ ବଗୃର ନାହିଁ କଥିତେ—ସେଥିରେ ଚିନ୍ତା ନାହିଁ । ଛତେ ହୋଏ—ମନରେ ହୋଏ କେଣେ ଯିବ—କେଉଁଠାକୁ ଯିବ । ଜୀବିତେ

Digitized by srujanika@gmail.com

ତପନ୍ତି ଯିବ କାମର    ମରକତକାନ୍ତି ବର
ବରଣ କରିବ ଅବା ପରାଣ ଦେବ ।
ଦେବୀଙ୍କି ମନାଇଁ ବର    ବର ମାଗିବଇଁ ସାର
ସାରସପଦ ପାଦୁକା ହୋଇ ସେବିବ ।
ବିବିଧ କାମନା ଏପରି । ପରିପୂର୍ଣ୍ଣ କେ କରିବ କହ ବିଚାରି । ୧୬ ।
ଶ୍ରୁତିବେଦେ ଯଶ ସାର    ସାରଙ୍ଗ ପିନାକଧର
ଧରଣୀରେ ପୀରତିଯୁକ୍ତା ସେହୁ କୁମାର ।
ମାରଦର ନାଶିବାରେ    ବାରେ ସେବନ୍ତି ପ୍ରଭୁରେ
ଭୂରେ ପ୍ରସିଦ୍ଧ ସେ ତାତ ରତିଜଙ୍କର ।
କରମକୁ ସେହୁ ବିପକ୍ଷ । ପକ୍ଷପାତ କେ କରିବ ହେଲି ଅରକ୍ଷ । ୧୭ ।
ରକ୍ଷନାଶ ବସିବାରୁ    ବାଲ୍ମୀକି କଲେ ଗୁରୁ
ଗୁରୁ କବି ନିବନ୍ଧିମା ଖ୍ୟାତ ଲୋକରେ ।

---

ନାମ ଭଜିବ—ମୀ ଥାଉ ଥାଉଁ ନାମ—କୃଷ୍ଣନାମ ଭଜିବି । ଉତ୍ସବେ—ଆନନ୍ଦରେ, ଜୀବିକା ଭୃତକୁ କରୁଥିବି—ବୃତ୍ତି (ପେସା) କରୁଥିବି ।

୧୬ । କାମର ତପନ୍ତି ଯିବ—କାମ ଦାହ ପଶୁଯିବ । ମରକତ କାନ୍ତି—ଇନ୍ଦ୍ରନୀଳମଣି ଶୋଭା; କୃଷ୍ଣଙ୍କୁ ବର—ସ୍ୱାମୀ କରି ବରଣ କରିବି ଅବା ତା ନହେଲେ ପରାଣ ଦେବି—ଜୀବନ ଛାଡ଼ିବି । ଦେବୀଙ୍କି—ଦୁର୍ଗାଙ୍କୁ । ମନାଇ—ଭକ୍ତିରେ ବଶୀଭୂତ କରି । ସାରବର—ଶ୍ରେଷ୍ଠ ପତିରୂପ ବର ମାଗିବି । ସାରସପଦ—ପଦ୍ମପାଦ କୃଷ୍ଣଙ୍କ ପାଦୁକା—କଠାଉ ହୋଇ ସେବିବି । ଏହିପରି ବିବିଧ ସକଳକୁ କେଉଁ ସର୍ବା ପୂର୍ଣ୍ଣ କରିବ ଭାବ କହ ।

୧୭ । ଶ୍ରୁତିବେଦେ—ଋକ, ସାମ, ଯଜୁ, ଅଥର୍ବରେ ଯଶସାର—କୀର୍ତ୍ତି ଶ୍ରେଷ୍ଠ ହୋଇଛି ସାରଙ୍ଗଧର—କୃଷ୍ଣ । ପିନାକଧର—ଶିବ; ସେହୁ କୁମାର—ସ୍ତ୍ରୀଙ୍କର ପୀରତିଆ ରସିକ ବୋଲି ଧରଣୀରେ ପୃଥିବୀରେ ଖ୍ୟାତ । ମାର ଦର ନାଶିବାରେ—କନ୍ଦର୍ପ ଭୟ ନାଶ କରିବାରେ, ବାରେ ଥରେ, ପ୍ରଭୁରେ—କୃଷ୍ଣଙ୍କୁ । ଭୂରେ—ପୃଥିବୀରେ ପ୍ରସିଦ୍ଧ—ଖ୍ୟାତ, ଜଣା, ସେ କୃଷ୍ଣ ରତିଜଙ୍କର କାମଦେବଙ୍କ ତାତ—ବାପା ହେଲେ କରମକୁ—ପୋଡ଼ା କପାଳକୁ ସେହୁ କନ୍ଦର୍ପ ବିପକ୍ଷ—ଶତ୍ରୁ । କେ—କେଉଁ ଦେବ ପକ୍ଷପାତ କରିବ—ସାହାଯ୍ୟ କରିବ । ଅରକ୍ଷ ହେଲି—ପୁଣି ସଙ୍କଟବେଳେ ଶତ୍ରୁ, ପିତା କୃଷ୍ଣ କପଟ ହିଁମାତ୍ର ରକ୍ଷକ ହେବେ ?

Digitized by srujanika@gmail.com

ଜଳେଶ କାଷ୍ଠଭେଦ ଅଙ୍ଗ    ଅଙ୍ଗନା ପ୍ରୀତି ପ୍ରସଙ୍ଗ
ସଙ୍ଗ ଭଙ୍ଗ ତେବେହେଁ ନ କଲେ ବାଧୁରେ
ଧୀରେ ପ୍ରଶଂସିଲେ ପ୍ରଭୁରେ । ଭୂରେ କୀରତି ରହିଲା ପ୍ରୀତିଲୋକରେ । ୧୮ ।
କରେ ଶଶୀ ଗଙ୍ଗା ଉର    ଉରଗ ମଣ୍ଡନ ଯାର
କାରଣ କି ନ କରିବେ ମୋର ବିପତ୍ତି ।
ପଞ୍ଚକାମେ ମୁକ୍ତି ହର    ହରଷେ ମାଗିଣ ବର
ବରଦ ହେବେ ନାହିଁକି ଯେଣୁ ଭଗତି ।
ଗତିଦାତା ଆନ ନାହିଁ ତ । ହିତ କି ହୋଇ ଉପାୟ କହୁନାହିଁ ତ । ୧୯ ।
ହତ ବିବେକ ତ ସହି    ସହି ଦୁଃଖ ହେବ କେହି
କେ ହୀନ ଭାଗ୍ୟବେଳକୁ ହେବ ସାହା ତ ।

---

୧୮ । ରସନାଶ୍ରୀ—ଜଳନ୍ଧର ଦାନବର ସ୍ତ୍ରୀ ବୃନ୍ଦାବତୀ ସତୀଙ୍କୁ କୃଷ୍ଣ ରମିବାରୁ ନାରୀ ପତି ରୂପରେ ଯାଇ ତାଙ୍କୁ ହରଣ କରିବାରୁ ସୁର—ବୃହସ୍ପତି, କବି—ଶୁକ୍ର ଯାହାଙ୍କୁ ବିବୁଧମାନେ—ସ୍ତୁତି କରନ୍ତି । ଏହା ଲୋକରେ ଖ୍ୟାତ ହୋଇଛି ଅର୍ଥାତ୍ ଯେଉଁ କୃଷ୍ଣଙ୍କୁ ବୃହସ୍ପତି, ଶୁକ୍ର ପ୍ରଭୃତିମାନେ ସ୍ତୁତି କରନ୍ତି ସେହି କୃଷ୍ଣ ଜଳନ୍ଧର ସ୍ତ୍ରୀ ସତୀ ବୃନ୍ଦାବତୀଙ୍କ ରମଣ କରିବାରେ ବାରୁଣୀ ଓ ପଶ୍ଚିମ ଦିଗକୁ ଗମନ କରିଥିଲେ—ସନ୍ଧ୍ୟା କାଳକୁ ଆଶ୍ରୟ କରି ବୃନ୍ଦାବତୀଙ୍କୁ ଜଳନ୍ଧର ରୂପରେ ରମଣ କରିଥିଲେ (ବା ସୁରୁ କବି ବିବୁଧମାନେ—ଗୁରୁ ଓ ଶୁକ୍ରଙ୍କ ସ୍ତୁତିଯୋଗ୍ୟା ବୃନ୍ଦାବତୀ) କାଠ—ବଜ୍ରକାଠ ଅଙ୍ଗ ଭେଦ କରେ—ଦେହ କାଟି ପକାଇଅଛି (ଏପରି—ପାଠରେ ସେହି ଅର୍ଥ ମଧ୍ୟ) ତଥାପି ତେବେହେଁ ଅଙ୍ଗନା ପ୍ରୀତି ପ୍ରସଙ୍ଗ ସଙ୍ଗ ବିଷୟରେ—ତୁଳସୀ ମାନୁଷୀରେ ଭଙ୍ଗ ନ କଲେ—ଛାଡ଼ିଲେ ନାହିଁ ; ତୁଳସୀ ବକ୍ଷସ୍ଥଳେ ମାଳା କରିଅଛନ୍ତି—ବିଷ୍ଣୁଙ୍କ ବଜ୍ରକୀଟ କାଟିବାରୁ ଶାଳଗ୍ରାମ ଶିଳା ହୋଇଅଛନ୍ତି—ଦେହ କାଠ କାଟିଲେ ସୁଦ୍ଧା ତୁଳସୀ ସଙ୍ଗ ଛାଡ଼ିଲେ ନାହିଁ—ଏଣୁକରି ଧୀରେ ପଣ୍ଡିତମାନେ ପ୍ରଭୁରେ କୃଷ୍ଣଙ୍କ ପ୍ରଶଂସା କରନ୍ତି । ଭୂରେ—ମର୍ତ୍ତ୍ୟଲୋକରେ ପ୍ରୀତି ଲୋକରେ—ପ୍ରେମିକମାନଙ୍କରେ ମହାରସିକ କୃଷ୍ଣ ଏ କଥା କୀର୍ତ୍ତି—ଯଶ ରହିଲା ।

୧୯ । 'କ'ରେ—ମୁଣ୍ଡରେ । ଶଶୀ—ଚନ୍ଦ୍ର ଓ ଗଙ୍ଗା ଅଛନ୍ତି । ଉରେ—ଛାତିରେ, ଉରଗ—ସର୍ପ, ମଣ୍ଡନ—ହାର । ମୋର ବିପତ୍ତିକୁ କାରଣ—ହରଣ ନ କରିବେ କି ? ପଞ୍ଚକାମ—ବର ବାଞ୍ଛା କରି । ହର—ମହାଦେବ । ସବଙ୍କ ଭକ୍ତ ଗତିଦାତା—ମୁକ୍ତିଦାତା—ବରରୂପ ଗତିଦାତା । ହେ ସଖୀମାନେ କି ଉପାୟ ହିତ କହୁନାହଁ ତ (ହିତଙ୍କ—ହିତକାରିଣୀ ହୋଇ ଉପାୟ କହୁନାହଁ ତ) ।

୨୦ । ହେ ସହି—ହେ ସଖି—ମୁଁ ହତବିବେକ ତ—ହତଜ୍ଞାନ ତ, ଦୁଃଖ କେହି—କିପରି ସହିହେବ । କେ—କିଏ । ହୀନଭାଗ୍ୟ ବେଳକୁ—ଯୋଗ୍ୟ

Digitized by srujanika@gmail.com

ହାତ ଧରୁଛନ୍ତି ତୁମ୍ଭର          ଭରମ ସାରିଲା ମାର
ମାରକଣ୍ଟ ଦ୍ୟୁତି-ରତି ମତି ଉଛୁଳି ।
ଛୁଁ ତ କଲ ସବୁ କାମନା । ମନାନନ୍ଦ ହେତେ ହୋଏ ନାନା ଭାବନା ।୨୦।
ବନାନଳ ଦାହ ବଳା          ବଳାହ୍ଲାଦରେ ବିକଳା
କଳାନିଧି କୃପା ବିନା ନୋହିବ ହେଳା ।
ହେଳା ଲୀଳା ହାବ ଭାବ          ଭାବଇ ହେବ ସମ୍ଭବ
ଉଭୟର ପରମାର୍ଥ ସୁରତି କଳା ।
କଳାମାନ ଲଭିବ ସତେ । ଶତେ ଜନ୍ମ ଦୁଃଖ ନ ରହିବ କଥିତେ ।୨୧।
ଶତ୍ତେ ଭାବନ୍ତେ ଏପରି          ମନ୍ଦିପୂର୍ଣ୍ଣ ସ୍ନେହ ଧରି
ଧରଣୀ ପତନ ପ୍ରମୋଦରେ ରାଧିକା ।

---

କପାଳକୁ, ସାହା—ସହାୟ । ମାର—କନ୍ଦର୍ପ, ମୋର ଭରମ—ମର୍ଯ୍ୟାଦା ସାରିଲା—ନଷ୍ଟ କଲା । ମାରକଣ୍ଟଦ୍ୟୁତି—କୃଷ୍ଣଙ୍କ ରତି—ପ୍ରୀତି ବା ସମ୍ଭୋଗ ମତିରେ—ମନରେ । ଛୁ ତ କଲ—ତୁଚ୍ଛ କଲ । କାମନା—ମନୋରଥ । ମନାନନ୍ଦ ହେତେ—ମନର ଆନନ୍ଦ ପାଇଁ ।

୨୨ । ବନାନଳ ଦାହ ବଳା—ବନର ଅଗ୍ନିର ତାପରୁ ଅଧିକ, ବଳାହ୍ଲାଦରେ ବିକଳା—ବ୍ୟାକୁଳା ମୁଁ କଳାନିଧି—ଷୋଡ଼ଶ ବା ଚନ୍ଦ୍ରସ୍ୱାମୀ । ଶୃଙ୍ଗାର କଳାର ସ୍ୱାମୀ କୃଷ୍ଣଙ୍କ ଦୟା ବିନା ହୋଇବ ହେଳା—ଶାନ୍ତ ହେବ ନାହିଁ । ଭାବ, ହାବ ହେଳା ଓ ଲୀଳା—ଅନୁଭବର ଅଳଙ୍କାର ବିଶେଷ :—ଅନୁଭବ—ଚିତ୍ତସ୍ଥିତ ଭାବମାନଙ୍କର ଅବବୋଧକ । ଯୌବନରେ ଲୁଣ୍ଠ ସମ୍ବନ୍ଧୀୟ ଚେଷ୍ଟାରୁ ଜାତ ଭାବମାନଙ୍କ ଦ୍ୱାରା ଅନ୍ତାନ୍ତ ଋଦ୍ଧିକୁ ସତ୍ତ୍ୱ କହନ୍ତି—ସେଥିରୁ ଜାତ ଯେ ସତ୍ତ୍ୱଜ ଅଳଙ୍କାର, ସେ ଅଳଙ୍କାରମାନ ଉଜ୍ଜ୍ୱଳ ନୀଳମଣିରେ ୨୨ ଗୋଟି—ସେ ଅଳଙ୍କାର ତ୍ରିବିଧ (୧) ଅଙ୍ଗଜ (୨) ଅଯତ୍ନଜ (୩) ସ୍ୱଭାବଜ—ଭାବ, ହାବ, ହେଳା—ଅଙ୍ଗଜ । ଶୋଭାକାନ୍ତି ପ୍ରଭୃତି ଅଯତ୍ନଜ : ଲୀଳା ବିଳାସ ପ୍ରଭୃତି ସ୍ୱଭାବଜ । ଭାବ—ପ୍ରାଦୁର୍ଭାବ ବ୍ରଜଦେବୀଙ୍କ ରତ୍ୟାଖ୍ୟେ ଭାବ ଉଜ୍ଜ୍ୱଳେ । ନିର୍ବିକାରାତ୍ମକେ ଚିତ୍ତେ ଭାବ ପ୍ରଥମ ବିକ୍ରିୟା । ହାବ—ଗ୍ରୀବାରେଚକ ସଂଯୁକ୍ତା ଭ୍ରୂନେତ୍ରାଦିବିକାଶକୃତ । ଭାବାଦୀଷତ୍ ପ୍ରକାଶୋ ଯଃ ସ ହାବ ଇତି କଥ୍ୟତେ । ହାବ ଏବ ଭବେତ୍ ହେଳା ବ୍ୟକ୍ତଃ ଶୃଙ୍ଗାର ସୂଚକଃ । ଲୀଳା—ପ୍ରିୟାନୁକରଣଂ ଲୀଳାରମ୍ୟୈର୍ବେଶକ୍ରିୟାଦିଭିଃ । ମୁଁ ଭାବୁଛି, ସମ୍ଭବ ହେବ—ଏ ସବୁ ଜାତ ହେବ । ଉଭୟର—କନ୍ଦର୍ପର ପରମାର୍ଥ ଚରମଫଳ—ସୁରତିକଳା ସମ୍ଭବ ହେବ । କଳାମାନ—ଅଂଶମାନ ସତେ ନିଶ୍ଚୟ ପାଇବି ।

Digitized by srujanika@gmail.com

ଧିକ୍‌କାର ବାଧକ ମିତେ          ମିତେ ଆଶ୍ୱାସନ୍ତି କେତେ
କେ ଜେମନ୍ତ ହୋଇ ନାହିଁ ପ୍ରେମାରାଧିକା ।
ଧୀକାତର ହେଲି ବିଶେଷେ । ଶେଷେ କାନ୍ତି ଦୂତୀ ଗଲ ଗୋବିନ୍ଦ ପାଶେ ।୨୨।
ପାଶେ ଚାହିଁ କୃଷ୍ଣ ମନ          ମନମଥ ଘନ ଘନ
ଘନଲତା ଘର ଭେଟେ କମାଉଅଛି ।
ଅଚ୍ଛିଦ୍ର ପ୍ରୀତି ହେବାକୁ          ବାରଣ ନୋହେ ରାଧାର
ଧାର ଲୀଳ ଭାବ ହୃଦୟରେ ହୋଇଛି ।
ଇଚ୍ଛି ବିଦଗଧା ପୀରତି । ରତିବଶ ହୋଇ ନାନା ଚିନ୍ତା କରନ୍ତି ।୨୩।
ରଚିଏ ନୋହିବ ତାର          ତାର ସମାନକୁ ତାର
ତାର ବୋଲି ଶରଣ ପଶିବେ ପାଦରେ ।
ପରେ କମ୍ପିବ ଧୀରତି          ରତି କରିବ ପୀରତି
ରତି ରଙ୍ଗେ ସଙ୍ଗେ ରଖ ବୋଲିବ ଖରେ ।
ଖରେ କେତେ ଅନ୍ୟ ନାଗସ୍ତ୍ରୀ । ଗରମାପଣ ରଖିବେ ଅନ୍ୟ କା କରି ।୨୪।

---

୨୨ । ଧାରମୂର୍ତ୍ତି ସ୍ୱେଦ ଧର—କୃଷ୍ଣଙ୍କଠାରେ ପୂର୍ବ ସ୍ନେହ ପୋଷି; ବିମୋହରେ ରାଧା ମୋହହୋଇ ପୃଥିବୀରେ ପଡ଼ିଲେ । ପ୍ରେମାରାଧିକା—ରାଧା ପରି କେହି ପ୍ରେମର ବଶବର୍ତ୍ତୀ ହୋଇନାହିଁ । ଧୀକାତର—ମନର ବିକଳ । ଦୂତୀ—ଲଳିତା ।

୨୩ । ଘନଲତା—ବଲ୍ଲୀ । ମନମଥ—କନ୍ଦର୍ପ କୃଷ୍ଣମନକୁ ପାଶେ—ରଜ୍ଜୁରେ ଘନଘନ—ବାରମ୍ବାର । ଅଚ୍ଛିଦ୍ର ପ୍ରୀତି—ପୂର୍ଣ୍ଣପ୍ରୀତି । ବାରଣ ନୋହେଁ—ବାରି ନୋହେ । ଲୀଳଧାର ରାଧାର ଭାବ ହୋଇଛି । ବିଦଗଧା—କଳାବିଳାସଚତୁର ରାଧା । ରତିବଶ ହୋଇ—ସମ୍ଭୋଗଭୁମନରେ ଭୁବ ।

୨୪ । ତାର ସମାନକୁ—ତାର ତୁଲାକୁ; ତାର ତାର—ଆକାଶର ନକ୍ଷତ୍ରମାନେ; ରଚିଏ ନୋହିବ—ରଚିଏ ମାତ୍ର ସୁନ୍ଦର ନୋହିବ. ପାଦରେ - ଗୋଡ଼ ତଳେ, ତାର ବୋଲି—ନିସ୍ତାର କରବୋଲି ଶରଣ ପଶିବେ । ରତି—କନ୍ଦର୍ପ ସ୍ତ୍ରୀର ଧୀରତି—ଧୈର୍ଯ୍ୟ, (ଶୋଭା ଦେଖି) କମ୍ପିବ—ଅସ୍ଥିର ହେବ ରହିବ ନାହିଁ । ରାଧା ସଙ୍ଗେ ପୀରତି କରିବ ରତିରଙ୍ଗେ—ସୁରତି କେଳିରେ ମୋତେ ସଙ୍ଗେ—ସଙ୍ଗରେ ରଖ ବୋଲି ଖରେ ଶୀଘ୍ରରେ ବୋଲିବ—କହିବ । ଖରେ—ଆକାଶରେ ଅର୍ଥାତ୍ ସ୍ୱର୍ଗରେ ଅନ—ଅନ୍ୟ ନାଗସ୍ତ୍ରୀ—ରସିକିକା ଯେତେ ଅଛନ୍ତି—ରମ୍ଭା ପ୍ରଭୃତି ଯେତେ ସ୍ତ୍ରୀମାନେ ଅଛନ୍ତି କି କରି—କେଉଁ କାର ସୁନ୍ଦରୀଙ୍କ ଗରିମାପଣ ଅଭିମାନ ରଖିବେ —ଅଭି ଛାଡ଼ିଦେବେ ।

Digitized by srujanika@gmail.com

ତବ-ଧଳାଙ୍ଗ ସୁଗତ          ଗତି ଦେବ କି ଭ୍ରମନ୍ତ
ବଳଶଦଗୁଣ କେକଣୀଳା ସମ୍ପୃତ ।
ଗତିରେ ଲଭିବେ ସଂଜ୍ଞ          ସଂଜ୍ଞା ତେଜିବାକୁ ବିଜ୍ଞ
ନାଜ୍ଞାନୀ ହୋଇବେ ଅରୁନ୍ଧତୀ ଗୃହିଁତ ।
ହୃତମଣି ସେ ଅନସୂୟା । ସ୍ତ୍ରୀୟାଭବ ସେନ ହୋଇବ ପ୍ରୀତିଭଦ୍ୟାସ୍ୟା । ୧୫ ।
ଦୟା ଇଚ୍ଛା କର ବାଣୀ          ବାଣୀକି ଭଜନେ ଆଣି
ଆଣି କି ରଖିବେ କଳାନାଥରମଣୀ ।
ମଣିବେ ନୋହିବା ସର          ଶରୀରେ ରହିବେ ଶ୍ରୀର
ଶିରୀ ବଢ଼ାଇ ରଖିବେ କର୍ଣ୍ଣି ତରୁଣୀ ।
ରଣୀ ହୋଇ ଗଜଗ୍ୟ ମନ । ସତତ କାନ୍ତ ଅଙ୍ଗରେ ହେଲେ ଗୋପିତ ।୧୬।
୧୫—୨ କେଳ କଳା ସମ୍ପୃତ କ ।

---

୧୫ । କର ବଜତ ସୁଗନ୍ଧ—ହାତୀଙ୍କ ଗମନା—ରାଧା ଗତି ଦେବ କ—ମୋତେ କାମପୀଡ଼ାରୁ ଉଦ୍ଧାର କରବ କି, ଏ କଥା ଭ୍ରମନ୍ତ । ବଳଶ ଦ୍ୱିଗୁଣ କେଳ—ଚଉଷଠୀ କେଳ ଉଦ୍ଭବ ସମ୍ପୃତ ; ଏକନ କରନ୍ତ—ସେହି ଗତୀକୁ ଦେଖି ସଞ୍ଜ୍ଞା—ଗ୍ରସ୍ୟା ସୂର୍ଯ୍ୟଙ୍କ ସ୍ତ୍ରୀ ସଞ୍ଜ୍ଞା ତେଜିବାକୁ—ଚେତନା ହରାଇବାକୁ ଗତିରେ ଭ୍ରଳବେ—ମନରେ ଭ୍ରଳବେ (ଠିକ୍ କରବେ) ବିଜ୍ଞା—ପଣ୍ଡିତା ବଶିଷ୍ଠଙ୍କ ସ୍ତ୍ରୀ ଅରୁନ୍ଧତୀ ଗୃହିଁତ—ଦେଖି ଦେଇ ତ ବଜ୍ଞାନୀ ହୋଇବେ ଜ୍ଞାନ ହରାଇବେ । ଅନସୂୟା—ଅତ୍ରି ମୁନଙ୍କ ସ୍ତ୍ରୀ; ସେ ନଜର ହୃତମଣି ସ୍ତ୍ରୀୟାଭବ ସେନ—ସଖୀ ଭ୍ରବ ସେନ ପ୍ରୀତିଭଦ୍ୟାସ୍ୟା ହେବେ—ରାଧାଙ୍କ ସଙ୍ଗେ ପ୍ରୀତି କରବେ । ଅସୂୟା କଲେ ନଜର କେବଳ କ୍ଷତି—ତାଙ୍କ ନାମ ଅନସୂୟା ପାହାଙ୍କର ଈର୍ଷା ନାହିଁ—ତେଣୁ ସେ ସମସ୍ତଙ୍କର ପ୍ରୀତିକାରଣୀ—ତେଣୁ ରାଧାଙ୍କର ତାହାହିଁ ହେଲେ ।

୧୬ । ବାଣୀ—ସରସ୍ୱତୀ ଦୟା ଇଚ୍ଛାକର—ରାଧାଙ୍କ କୃପାବାଞ୍ଛି ତାହାଙ୍କ ବାଣୀକି—ବଚନକୁ ଆଣି ଭଜବେ—ଶୋଷିବେ । କଳାନାଥରମଣୀ—ଚନ୍ଦ୍ରଙ୍କ ସ୍ତ୍ରୀ ରୋହିଣୀ ଆଣି—ନଜର ସୌନ୍ଦର୍ଯ୍ୟ ଗର୍ବ ରଖିବେ କି ?—ଛାଡ଼ିଦେବେ । ଶିରୀ—ଲକ୍ଷ୍ମୀ ସର ନୋହିବା ମଣିବେ—ଜ୍ଞାନ କରବେ; ତେଣୁ ରାଧାଙ୍କ ଶରୀରରେ ରହିବେ—ବାସ କରବେ (ଶିରୀ—ଶୋଭାର ଅଧିଷ୍ଠାତ୍ରୀ ଦେବତା) । କର୍ଣ୍ଣି ତରୁଣୀ—ସ୍ତ୍ରୀ ଶିରୀବଢ଼ାଇ ରଖିବେ—ସୌନ୍ଦର୍ଯ୍ୟ ଗର୍ବ ରଖିବେ ? ଗୌରୀ—ପାର୍ବତୀ; ସତ—ନଷ୍ଟଯ୍ୟ, ରଣୀ ହୋଇ—ହାରଯାଇ, ସତତ—ସର୍ବଦା କାନ୍ତ ଅଙ୍ଗରେ—ସ୍ୱାମୀ ଅଙ୍ଗରେ—ମହାଦେବଙ୍କ ଅଙ୍ଗରେ ଗୋପିତ ହେଲେ—ଲୁଚ ରହିଲେ (ରାଧାଙ୍କ କାନ୍ତ—ସୁନ୍ଦର ଅଙ୍ଗରେ ଗୋପିତ ହେଲେ—ଲୀନ ହେଲେ—ରାଧା ଗୌରୀ ବୋଲି ଏ ଅର୍ଥ ମଧ୍ୟ ହୋଇପାରେ । )

Digitized by srujanika@gmail.com

ପୀତବାସ ଶ୍ରୀପଦରେ ଦରେ ଲୁଚିଲେ ବିଧିରେ
ଧୀରେ ସଙ୍ଗ ହେବା ପାଇଁ କରି ଗୁମାନ ।
ମାନରେ ଫେରି ତ୍ରିପୁର ସୁବର୍ଣ୍ଣଅଙ୍ଗୀ ସୁନ୍ଦର
ଦରଶନ ନାହିଁ କାହିଁ ହେବେ ସମାନ ।
ମାନସରେ ଭଜି ରସଦା । ମନ୍ଦାକିନୀ ଶିରେ ଗୋପ୍ୟ ଲଜେ ବାରିଦା । ୨୭ ।
ସଦା ଘନକୋଳେ ଶମ୍ପା ସମ୍ପାଦନେ ଅନୁକମ୍ପା
କମ୍ପାୟମାନ ହେଉଛନ୍ତି ବାଞ୍ଛା ବିଗତେ ।
ଗତେ ଯେତେ ଅପସରୀ ସରି ନୋହେ ଅପସରି
ଶରୀର ରଖିଲେ ପରଭୋଗ ରତରତେ ।
କେତେ ସେ କି ହୋଇବ ତୁଳା । ତୁଳାଙ୍ଗୀ ସୁଶୀଳା ତା ଅତୁଳା ପିତୁଳା । ୨୮ ।

୨୭ । ବାରିଦା—(ବାରି—ଜଳକୁ ଦାନ କରନ୍ତି ବା ବିଶଦା—ନିର୍ମଳଜଳ) ଗଙ୍ଗା—ପୀତବାସ—ବସ୍ତ୍ର, ଏଠାରେ କୃଷ୍ଣଙ୍କ ଶ୍ରୀପାଦରେ ଦରେ—ଈଷତ୍, ବିଧିରେ—ବିଧି ବଳରେ ଲୁଚିଲେ କରୁ ଧୂର୍ଣ୍ଣି ଧୀରେ—ମନରେ ରାଧାଙ୍କ ସଙ୍ଗ ହେବାପାଇଁ, ଗୁମାନ କରି—ଅହଂଭାବ ପୋଷି, ମାନରେ—ଅଭିମାନରେ, ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ମନ୍ଦାକିନୀ—ଭଗିରଥୀ, ଲୋକେ ବାଟ ରୂପରେ ଫେରିଲେ—ବୁଲିଲେ କିନ୍ତୁ ସୁବର୍ଣ୍ଣ ଅଙ୍ଗୀ—ସୁନାପରି ଅଙ୍ଗ ଆଉ ... ଏପରି ରାଧାଙ୍କ ସୁନ୍ଦର—ଶୋଭା । ଦରଶନ ନାହିଁ କାହିଁ—କେଉଁଠି ଦେଖା ନାହିଁ । ସେ କିପରି ସମାନ ହେବେ—ସୁନାଅଙ୍ଗୀ ହେବେ—ଏହା ... ମାନସରେ ଭଜି । ବା ରସଦା—ରାଧାଙ୍କୁ ମନରେ ରଖି) ଲଜ୍ଜାରେ ମନ୍ଦାକିନୀ—ମହାଦେବଙ୍କ ଶିରେ—ଜଟା ମଧ୍ୟରେ ଲାଜରେ ଗୋପ୍ୟ—ଲୁଚିଲେ ।

୨୮ । ଶମ୍ପା—ବିଜୁଳି, ବାଞ୍ଛା ବିଗତେ—ରାଧାଙ୍କ ସମାନ ହେବାର ବାଞ୍ଛା ବିଫଳ ହେବାରୁ ରାଧାଙ୍କ ଅନୁକମ୍ପା—ଦୟା ସମ୍ପାଦନେ—ସମ୍ପାଦିବାକୁ—ଉପକାର କରାଇବାକୁ ସଦା—ସବୁବେଳେ ଘନକୋଳେ କମ୍ପାୟମାନ ହେଉଛନ୍ତି—ମେଘ ଦେହରେ ଥରୁଛନ୍ତି, (କାତରତା ଦର୍ଶନରେ ଦୟା ହେବ ବୋଲି) ଗତେ—ପୂର୍ବ କାଳରେ ବା ପୂର୍ବରୁ ବିଖ୍ୟାତନାମା ରମ୍ଭା, ମେନକା ପ୍ରଭୃତି ଅପ୍ସରାମାନେ ସେମାନେ ରାଧାଙ୍କ ସରି ହୋଇ ନ ପାରି ଅପସରି—ଦୂରହୋଇ ଶରୀରକୁ ପର ଭୋଗରତରେ— ଅନ୍ୟଲୋକ ବିଳାସ କରିବା ନିମନ୍ତେ ରଖିଲେ ଅର୍ଥାତ ସେମାନେ ବେଶ୍ୟା ହେଲେ (ବାରାଙ୍ଗନା ବା ବାରବିଳାସିନୀ ହେଲେ) । କେତେ—ମୁଁ ମନେକରେ ସେ ରାଧା କି ତୁଳା ହେବ—କାହା ସଙ୍ଗେ ତୁଲ୍ୟ ହୋଇବ କି ? ତୁଳାଙ୍ଗୀ—ତୁଳାପରି ଯାହାଙ୍କର କୋମଳ ଅଙ୍ଗ—ସୁଶୀଳା ସୁନ୍ଦର ସ୍ୱଭାବଯୁକ୍ତା । ଅତୁଳାପିତୁଳା—ଅସମାନ୍ତର ।

Digitized by srujanika@gmail.com

ତୁଳାକୋଟି ନାଦେ ପାର    ଜାର ହେବେ ଭକ୍ଷିବାର
ବାରବେଳବୟୂସୀ ଅମୂଲ୍ୟ ଦରବ ।
ରବ ଯେ ଶୁଣିମ ତାର    ଧାରଣ କି ହେବ ଧାର
ତାରପତିମୁଖୀ ତ ମୁକଟମଣ୍ଡର ।
ଦ୍ୱିରଦର ବର ସୁଗତି । ଗତି ମୋତେ ଦେବ ସତେ କରୁ ପୀରତି ।୨୯।
ଭୂତପତି-ଦାହକର    କରନ୍ତି ସେବା ଅପାର
ପାରବତୀଙ୍କି ପୂଜନ୍ତି ବଳିଦାନରେ ।
ନରେ ଖ୍ୟାତ ସେ ଅଭିନ୍ନ    ଭିନ୍ନ ହେବା ଦୁଃଖମାନ
ମାନବର କି କରି ଜାଣିବେ ବ୍ୟୁରେ ।
ଧୀରେ ହୋଏ ଏ ଶଙ୍କା ଜାତ । ଯାତନା କାମର କରବେ କି ନିପାତ ।୩୦।
ପାତନା ପୁଷ୍ପ ଧାତାର    ତାର ବିବେକ ବିସ୍ତାର
ତାରପତି କଳଙ୍କ ହେବାରୁ ଗୋଚର ।
ଚର ଅଚର ଇତର    ତରସ୍ତୁତିନୀ ତର
ତରଣୀ ତରୁଣୀ ଧନା ନାହିଁ ସୁସାର ।
ସାରପାଣି ଚରଣଯୁଗ । ଯୁଗତେ ଭକ୍ତି ତ ଛଡ଼ାଇବ ମୋ ଅଂଗ ।୩୧।

---

୨୯ । ପାର—ଯଥାର । ତୁଳାକୋଟି—ନୂପୁର । ନାଦରେ—ରୁଣୁଝୁଣୁରେ । ଭକ୍ଷିବାର—ପକ୍ଷିସମୂହ । ତପସ୍ୟା ଛାଡ଼ି ଜାର—ବିଠଳମଠ ହେବେ । ମେଷ ବାରବେଳ ବୟସୀ—ଷୋଳ ବରଷୀ । ଅମୂଲ୍ୟ ଦରବ—ଅମୂଲ୍ୟ ଦ୍ରବ୍ୟ (ପଦାର୍ଥ)। ଯେ ତାର—ଯଥାର ରବ ଶୁଣିବ—କଥା ଶୁଣିବ—ଧାରଣ—ଭଣ୍ଡାର ଅର୍ଥାତ୍ ମୁକ୍ତ ତାର କଣ ହେବ । ତାରପତି ମୁଖୀ—ଚନ୍ଦ୍ରମୁଖୀ ଯଥା ତ । ମୁକୁଟ-ମଣ୍ଡନ—ବୈକୁଣ୍ଠପୁର । ବରଦ୍ୱିରଦର ସୁଗତି—ଗଜଗଜଗମନା ଯଥା ।

୩୦ । ଭୂତପତି ଦାହକର—ଶିବଙ୍କୁ । ଅପାର—ବହୁତ ବଳି ଦାନରେ—ପଶୁ ବଳିଦେଇ ( ବା ମାଉଳିଙ୍କ ଘୂଜୋପକରଣଦ୍ୱାରା) ନରେ—ମନୁଷ୍ୟ ଲୋକରେ । ସେ ଅଭିନ୍ନ—ସେ ଦୁର୍ଗାପତିଙ୍କ ଦେହରୁ ଅଲଗା ହୁଅନ୍ତି ନାହିଁ ଏହି କଥା ଖ୍ୟାତ ମାନବର ବ୍ୟୂହେ—ବ୍ୟବହାରରେ । ସହଜରେ ବା ଭିନ୍ନ ହେବା ଦୁଃଖ କି କଷ୍ଟ ଜାଣିବେ । ଧୀରେ—ମନରେ—ଭୟ ଜାତ ହୁଏ—ନିପାତ—ଧ୍ୱଂସ ।

୩୧ । ମୁଁ ବ୍ରହ୍ମାଙ୍କୁ ଅବା ସେବନ୍ତି—ବ୍ରହ୍ମାଙ୍କ ସୃଷ୍ଟି ପାତନାଠାରୁ—ଯଥାର ଧାତାଙ୍କରୁ ତାର—ବ୍ରହ୍ମାର ବିବେକ—ବିଚାର ଶକ୍ତି—ବିସ୍ତାର—ଖ୍ୟାତ ହୋଇଛି । ତାରପତି—ଚନ୍ଦ୍ରଙ୍କଠାରେ କଳଙ୍କ ଗୋଚର ହେବାରୁ—ଦେଖିବାରୁ ତାଙ୍କର ବିଚାର ଶକ୍ତି ଠିକ୍ ନୁହେଁ ସେ କଣ ମୋର ଦୁଃଖ ହରିବେ । ଚର ଅଚର ଇତର

Digitized by srujanika@gmail.com

ଅଗ ତୁଟୁଛି ବୁଦ୍ଧିକ    ଧିକ ନାଗର ସିଦ୍ଧିକ
ଧିକ ଧିକ କାମାନଳ ଜଳେ ସ୍ୱାନ୍ତରେ ।
ତୀରେ ଶମନସ୍ୱସାର    ସାରବାଳୀ ଆଳୀବାର
ବାରବ୍ରତଫଳେ ମିଳାଥିଲେ ପାଶରେ ।
ସରେ ନାହିଁ ଧନ ଯା ପାଇଁ । ପାଇବାକୁ ତାଙ୍କୁ ହେଲ ନାହିଁ ବନମ୍ରୀ ।୩୨।
ନାଇଲ ତୁଣ୍ଡେ ଉତ୍ତର    ତରଳାକ୍ଷୀ ପରକର
କର ହେଲୁନ କାଙ୍କର ବିନା ଧନରେ ।
ନରେନ୍ଦ୍ର ହେବା ସୁକୃତ    କୃତ ବିନେ ଜ୍ଞାନଚ୍ୟୁତ
ଚୂତ ଫଳ ଦେଲ ବାଇଫଳବୁଦ୍ଧିରେ ।
ଧୀରେ ମୋର ବଣିକପଣ । ପଣକର ମୂଲ୍ୟଇବେ ଘେନ ଦୁର୍ଗୁଣ ।୩୩।
ଗୁଣନିଧି ନାମ ଧର    ଧରଣୀ ଅଟନ ସାର
ମାୟାବାଦିନୀ କା ଲଭୁ ସାଧିବା ଛପ ।

---

ତରଙ୍ଗ ତଟିନୀ—ଭୟନଦୀ—କି ତର ତରେ—ତରିବାପାଇଁ ତରଣୀ ନୌକା ରୂପ ତରୁଣୀ—ଯୁବତୀ ସ୍ତ୍ରୀ ବିନା ଦୁସାର—ଉତ୍ତମ ସାର ଉପାୟ ନାହିଁ । ସାରସାକ୍ଷୀ—ପଦ୍ମଲୋଚନା ରାଧାଙ୍କ ଚରଣ ଯୁଗ ଭଜ ମୋ ଅଗ—ଅପରାଧ ।

୩୨ । ଅଗ—ପର୍ବତଲେ ବୁଦ୍ଧି ତୁଟୁଛି ମୋ ନାଗର ସିଦ୍ଧିକ—ନାଗରପଣିଆକୁ ଧିକ—ନିନ୍ଦା ହେଉ । କାମାନଳ—କନ୍ଦର୍ପାଗ୍ନି । ସ୍ୱାନ୍ତରେ—ହୃଦୟରେ—ଧିକଧିକ—ଧକ ଧକ ହୋଇ ଜଳୁଛି । ଶମନ ସ୍ୱସାର ତୀରେ—ଯମ ଭଉଣୀ ଯେ ଯମୁନା ତାର କୂଳରେ—ସାରବାଳୀ ଆଳୀବାର—ଅତି ସୁନ୍ଦରୀ ସ୍ତ୍ରୀ ଯେ ସଙ୍ଗିନୀ ସମୂହ, ବାରବ୍ରତ ଫଳେ—ସୋମବାର ଓ ମଙ୍ଗଳବାର ଦୁଇରେ ଶିବପାର୍ବତୀଙ୍କ ସେବା ଫଳରେ ପାଶରେ—ନିକଟରେ ମିଳିଥିଲେ । ଯା ପାଇଁ—ଯେଉଁ ରାଧାଙ୍କ ପାଇଁ । ବନମ୍ରୀ ହେଲ ନାହିଁ—ବିନମ୍ର କର ନ କହିଲ ପାଦତଳେ ନତ ହେଲ ନାହିଁ ।

୩୩ । ତୁଣ୍ଡେ ଉତ୍ତର ନାଇଲ—ମୁଖରେ ବଚନ ସ୍ଫୁରିଲା ନାହିଁ—ହେ ତରଳାକ୍ଷି—ହେ ଚଞ୍ଚଳାକ୍ଷି, ପରକର କର—ଦାସ କର । ବିନା ଧନରେ—ଧନ ନ ନେଇ । କାଙ୍କର—ଦାସ ତୋର ଗୋଡ଼ତଳ କିଙ୍କର ହେଲଣି । ନରେନ୍ଦ୍ର—ମନୁଷ୍ୟଙ୍କ ମଧ୍ୟରେ ରାଜା ହେବା ସୁକୃତ କୃତ ବିନେ—ପୁଣ୍ୟକର୍ମ ବିନା ପୁଣ୍ୟ ନ ଥିବାରୁ । ଜ୍ଞାନଚ୍ୟୁତ—ମୁଁ ଅଜ୍ଞାନ ହୋଇ । ବାଇଫଳ ବୁଦ୍ଧିରେ—ବାଇଡଙ୍କ ଜ୍ଞାନରେ ଚୂତଫଳ—ପାଚିଲା ଆମ୍ବ । ମୋର ବଣିକପଣ—ବଣିକ ବ୍ୟବହାରକୁ ଧୀରେ—ପଣ୍ଡିତମାନେ । ଦୁର୍ଗୁଣ—ଦୋଷ ଘେନ ପଣକର—ଅଳ୍ପ ମୂଲ୍ୟର (ଯଥା ଅଣାକର କଡ଼ାକଡ଼ି, ଅଧଲାକର) ମନାଇବେ—ବୁଦ୍ଧି କଢ଼ାକର ।

Digitized by srujanika@gmail.com

ତପତ ପିବ କାମର ମରକତ କେଶୀ ନାର
ବରଣ ନ କଲେ ଜାଣ ହେତୁ ସ୍ୱରୂପ ।
ରୂପ ଧ୍ୟାନ କର ରାଧାର । ଧାରଣାଯୋଗେ ପରାଣ ଦେବ ନାଗର ।୩୪।
ଇତରନ୍ତ ଚନ୍ଦ୍ରା ଏପର ପରିପୂର୍ଣ୍ଣ ପ୍ରେମେ ହର
ହରତାଳ ଗୋପୀ ଧ୍ୟାନେ ପାରନ୍ତି ହନ ।
ଦୀନ ସାମନ୍ତସିଂହାର ହାର କରି ଗ୍ରୀବାବାର
ବାରିରାଶି ଉଦର କରିବ ଲଙ୍ଘନ ।
ଘନଶ୍ୟାମ ପ୍ରଣୟ ଭାବ । ଭାବି ସାଧିବ ଲଭିବ ମହାଉତ୍ସବ ।୩୫।

---

## ଦ୍ୱିପଞ୍ଚାଶ ଛାନ୍ଦ

## ଦୂତୀ ଯୁଗଳ ଅନୁରାଗ କଥନ

### ରାଗ—ଶୋକକାମୋଦ

ଶ୍ରୀରାଧା ବାଉଳୀ ପ୍ରେମରତ୍ନ ଭୁଲି ଘେନ ଚିହ୍ନର ଗ୍ରାହକମାନେ ।
କୃଷ୍ଣ ଅଛି ଯାନେ ହୃଦକାଳୁ ଦନେ ପଶୁରତ୍ନ କର ଧରି ଛନ୍ଦେ ।
ପ୍ରାଣବନ୍ଧୁ ସ୍ୱିତ । କହ୍ନା ମୋ ଶ୍ରୁତିକି କର ଗତ ।
ହସି ଦୂତୀ ଭାଷେ ପ୍ରେମଜଳେ ଭାସେ ପୁଲକିତ ମତ ଦମୋଦର ।୧।

---

୩୪ । ଗୁଣନିଧି—ସର୍ବଗୁଣର ଆଧାରଭୂତା । ରାଧାରେ—"ରାଧା ରାଧା କହି" । ଧରଣୀ ଅଟନ—ପୃଥିବୀ ଭ୍ରମଣ । ସାନ୍ତ୍ୱବାଦନା—ସାନ୍ତ୍ୱବଚନ ରାଧାଙ୍କୁ । ତପତି—ତାପ, ଦାହ । ମରକତକେଶୀ—ନୀଳମଣି-କୁନ୍ତଳା ରାଧା ମୋତେ ବର—ସ୍ୱାମୀରୂପେ । ସ୍ୱରୂପ—ନିଶ୍ଚୟ । ଧାରଣା ଯୋଗେ—ଏକାନ୍ତ ଭକ୍ତିଯୋଗରେ । ନାଗର—ନିଶ୍ଚୟ ।

୩୫ । ପରିପୂର୍ଣ୍ଣପ୍ରେମେ—ରାଧାଙ୍କଠାରେ ମୁଗ୍ଧ ହେବାଦ୍ୱାରା । ଗ୍ରୀବବାର—ରାଧାକୃଷ୍ଣଙ୍କ ଚନ୍ଦ୍ରପୂର୍ଣ୍ଣ ଭକ୍ତି ସମୂହକୁ ହାର କରି—ହୃଦରେ ଧରି । ଉଦରେ—ସଂସାରରେ । ବାରିରାଶି—ଜଳସମୂହ ଅର୍ଥାତ୍ ସଂସାର-ସମୁଦ୍ର । ମହାଉତ୍ସବ—ମହାଆନନ୍ଦ ।

---

୧ । ହେ ଭକ୍ତିର ଗ୍ରାହକମାନେ—ହେ ଭକ୍ତିପାଇବା ଇଚ୍ଛୁକମାନେ (ଶ୍ରୋତାଗଣ)—ଭକ୍ତି ପାଇବା ଓ ବୁଝିପାରିବା ରସିକମାନେ । ବାଉଳୀ—କୃଷ୍ଣ

Digitized by srujanika@gmail.com

କେ ଜାଣେ ଭାବନା କୃଷ୍ଣେ ସମ୍ଭାବନା କେତେ କରେ ବୃନ୍ଦାବନ ଗଲେ ।
ବୋଲଇ ଆଲୀକି ଏ ବନଧୂଳିକି ବୋଳିଦିଅ ମୋର ହୃଦସ୍ଥଳେ ।
ନବନାଗର ହେ । ରଙ୍ଗକମଳରେ ମେନ୍ଦ୍ର ଥାଇ ।
ଲଗାଇ ହୃଦରେ ଅଛି ଆନନ୍ଦରେ ଲଗୁଥାଇ ଧରେ ବାରବାର । ୫ ।
ରସି ମଦାଳସୀ ସୁମନା ତୁଳସୀ ମଣ୍ଡେ କବରୀ ଯୋଡ଼ମାଳ ଛାଡ଼ି ।
କସ୍ତୁପତ୍ରିକ କରିବା ଚରକ ବୋଲି ସଖୀ ଧରନ୍ତି ମୁଖ ପୋଛି ।
କାମମୋହନ ହେ । କସ୍ତୁରୀ ଛଡ଼ି ମାଗି ମଠରେ ।
ଦେଖିଲେ କେତକୀ ବୋଲେ ଏ ମାଲତୀ ହେଲା କି ମୋ ଶ୍ୟାମମୋହନ ।୬।

ସ୍ତନାରେ, କୃଷ୍ଣଙ୍କ ବର୍ଣ୍ଣ ନୀଳମଣି ମିଶାଇ ଥିବାରୁ ସମ୍ଭୋଗ ହେଲା ପରି ସୁଖ ଅନୁଭବ କରି ଅଖି ବୁଜି ରହେ ହେ । ଦଇବ ଘଟନ—ଦୈବାତ୍ ମୁଁ ଗୋ, ମୟୂର ନଟନ—ମୟୂର ନାଚ ଦେଖି କହେ ଗୁଣେ—କେମିତି ନେତ୍ର ସୁଖୀ ହୁଏ । ଗୁଣ—କୃଷ୍ଣ ନୃତ୍ୟ କଳାପର ଦେଖି ସୁଖୀ ହୁଏ । କୃଷ୍ଣବର୍ଣ୍ଣ...ମେଘରେ ସୁଖ ଅନୁଭବ କରେ । ଶ୍ରୀଅଙ୍ଗ ଝଲକୁ—ମୋ ହୃଦରେ କୃଷ୍ଣ ଲାଗିଲା ପରି—ମେଘର ନେଳୀପଣ କଳାମାଇ ରହିଛି ଦେଖି ଆନନ୍ଦିତ ହେଉଥାଏ । ସ୍ଥଦ—ଆନନ୍ଦ ।

୫ । କେ ଜାଣେ ଭାବନା—ରାଧିକା ବୃନ୍ଦାବନକୁ ଗଲେ ବୃକ୍ଷମାନଙ୍କୁ କେତେ କେତେ ଭାବନା କରୁ—ଚିନ୍ତା କରେ ସମ୍ଭାବନା କରେ—ମାନ୍ୟ କରେ, କେ ଜାଣେ—କିଏ ଜାଣିପାରିବ (ବା—କେତେ ସମ୍ଭାବନା କରେ—ଭାବନା—ଏଥି ଚିନ୍ତା—ମନର ଭାବ କିଏ ଜାଣେ) ରାଧା କୃଷ୍ଣଙ୍କ ଶ୍ୟାମଳବର୍ଣ୍ଣ ଦେଖି ବା କୃଷ୍ଣଙ୍କ ସଙ୍ଗରେ ସମାନ ବୋଲି— ବା କୃଷ୍ଣଙ୍କ ଅଙ୍ଗସ୍ପର୍ଶ ବୃନ୍ଦାବନରେ ଥିଲେ— କୃଷ୍ଣଙ୍କ ବୁଦ୍ଧିରେ ନାନାପ୍ରକାର ଭାବ ମାନ୍ୟ କଲେ । ଆଲୀକି—ସଖୀଙ୍କି— ବୃନ୍ଦାବନର ଧୂଳି ପବିତ୍ର କୃଷ୍ଣଙ୍କ ପାଦ ପଡ଼ିଥିବାରୁ—ତାହା ମୋ ହୃଦରେ ବୋଳ, ମୁଁ ପବିତ୍ର ହେବି ରଙ୍ଗ କମଳରେ—ରକ୍ତପଦ୍ମରେ ମେନ୍ଦ—କୃଷ୍ଣଙ୍କ ପାଦ ରକ୍ତବର୍ଣ୍ଣ ହେବା ହେତୁ ରକ୍ତବର୍ଣ୍ଣକୁ କୃଷ୍ଣଙ୍କ ପାଦ ବୋଲି ଜାଣୁଥାଏ ।

୬ । ମଦାଳସୀ— କାମ ମଦରେ ଅଳସ ହୋଇ ବସିଥାଏ ... ସୁନ୍ଦରୀ ସ୍ତ୍ରୀ—ରାଧା—ସୁମନା—ମାଲତୀ (ବା କୁନ୍ଦ) ଫୁଲ ଓ ତୁଳସୀ ଏହି ଦୁହିଁଙ୍କ ଗନ୍ଧକରୁ- ଫଗୁକରୁ ରସି—ପ୍ରୀତିଯୁକ୍ତା ହୋଇ ମୁଣ୍ଡରେ ଲଗାଉଥାଏ—ମୁଁ ଗୋରୀ (ମାଲତୀ, କୁନ୍ଦ, ମଲ୍ଲିଫୁଲ ବର୍ଣ୍ଣ । କୃଷ୍ଣ—କଳା (ତୁଳସୀ ବର୍ଣ୍ଣ) ବା ତୁଳସୀଫୁଲକୁ ଗୋଟିକର ମୁଣ୍ଡରେ ଯୋଡ଼େ (ତୁଳସୀଫୁଲ— କୃଷ୍ଣ) । କସ୍ତୁରୀରେ ପତ୍ରକ—ସ୍ତନରେ ପତ୍ରାବଳୀ—କପୋଳରେ ମକରକାଦ—ଲେଖିବା ବା କରିବା କଥା ସଖୀମାନେ ବୋଲି—ବୋଲିବାରୁ ମୁଖ ପୋଛିଦିଏ । କସ୍ତୁରୀକଳା କୃଷ୍ଣମୁଖରେ କୃଷ୍ଣ ସ୍ତନରେ ବଇଷ୍ଟନ ଘର୍ଷଣ ପରି ଦେଖା ହେବ ବୋଲି ବସ୍ତ୍ର ତୁଳାହୋଇ ରହେ ।

Digitized by srujanika@gmail.com

ସୁବଳ ପାଣିକି ଧରି ସେ ପୁଣି କହେ ମମତାରେ ମୁହଁ ଥିଲୁ କାହିଁ ।
ଗୋବିନ୍ଦ ପାଶରେ ଥିଲ ଏ ଭାବରେ ହରଷି କହନ୍ତି ଗୁରୁଜନ ତୁହି ।
ଅହେ ଚିରଧାନ । ଉଦ୍ଧ୍ୟାମ ମାଏ ଯେଉଁ ନାରୀ ।
ତାଙ୍କ ପଦ ଧରି ବୋଲେ ବିମ୍ବାଧରୀ ତୁମ୍ଭେ ମୋର ଗୁରୁଜନପରି ।୭।
ଦେଖି ଗୁଞ୍ଜଫଳ ବୋଲଇ ସଫଳ ତୋହର ଅନୁରାଗ ଏକା ହେଲା ।
ଗୁଞ୍ଜହାପାଟିକି ତାହାରି ପାଟିକି ଅସଇ ସେ ଯେତେ ବାର୍ଣ୍ଣିଦେଲା ।
ଅହେ ଗୋପୀନାଥ । ପୂରୁର ଏ କେଉଁ ମନୋରଥ ।
ହସଇ ଭାବଇ ସ୍ମରଣ କାଢଇ ହା କୃଷ୍ଣସ୍ମରେ ପୋତଇ ମାଥ । ୮ ।

କାମମୋହନ—କୃଷ୍ଣ । ସାଗ୍ୱକଲା—ଯହିଁ କୃଷ୍ଣଙ୍କ କଳାରୂପ ଦେଖିବା ଇଚ୍ଛି ସ୍ନେହରେ ଯାଗ୍ୱ ପଡ଼ାଉଛ । କେତକୀ ପୂର୍ବଜନ୍ମରେ ପାପ କରିଥିଲା ବୋଲି ଭ୍ରମର ରୂପ ପୁରୁଷ ଭୋଗ କଲା ନାହିଁ—ତାହା ଜୀବନ ବ୍ୟର୍ଥ—ମୁଁ ଗୌରୀ କେତକୀ ବର୍ଣ୍ଣ—ଭ୍ରମର କଳା କୃଷ୍ଣ ଧାଇଁ ସକାଶେ ଜୀବନ ବ୍ୟାପି କରିବା ଇଚ୍ଛା କରୁଛୁ । ମୋ ଜୀବନ ମଧ୍ୟ ବ୍ୟର୍ଥ ।

୭ । ସୁବଳ—ଶ୍ରୀକୃଷ୍ଣ ସଖା । ମମତାରେ—ସ୍ନେହରେ । ଏ ଭାବରେ—ଏ ଭାବରେ । ହରଷି—ହରଷିତ— ଆନନ୍ଦରେ ପୁଲକିତ ହୁଏ । ଯେଉଁ ନାରୀ— ସେହି ରାଧା । କହ କଥିର ପର୍ଯ୍ୟନ୍ତ ଯାଇ ସୁବଳଙ୍କ ପାଦ ଧରି—ବିମ୍ବାଧରୀ— ରାଧା କହେ—ତୁମ୍ଭେ ସୁବଳ ମୋ ଗୁରୁଜନ ମାନ ପୂଜ୍ୟ, 'ବିଶ୍ୱମିତ୍ୟସ୍ୟ ମିତ୍ରେଷୁ ବହୁମାନଂ କରୋତିଚ ।

୮ । ଗୁଞ୍ଜଫଳ—କାଇଁଚ । ତୋହର ଅନୁରାଗ ଏକା ସଫଳ ହେଲା । କଳା ଓ ଲାଲ ଦୁଇବର୍ଣ୍ଣ ମିଶିଛି । କୃଷ୍ଣ ତୋତେ ମାଳକରି ଧରିଛନ୍ତି ; ତେଣୁ ତୋର ସ୍ନେହ ସଫଳ—ଗୁଞ୍ଜରପୋକ—ରକ୍ତ ନୀଳବର୍ଣ୍ଣ ଥିବାରୁ ତାର ପକ୍ଷ (ପର) ଉପାଡ଼ି ଗୁନ୍ଥି ମୁଣ୍ଡରେ ଲଗାଇ ଥିବାର ଦେଖି—ରାଧା ପାଟିକି ଯେତେ ଅସେ ତେତେ ବର୍ଣ୍ଣିଗଲା । ତୋର ସ୍ନେହ ମଧ୍ୟ ସଫଳ ହେଲା । କୃଷ୍ଣ ତୋତେ ମୁଣ୍ଡରେ ଗୁନ୍ଥି ଲଗାଇଲେ, ମୁଁ ହତଭାଗୀ ମୋତେ ପଗ୍ଭରୁ ନାହାନ୍ତି । ଗୋପୀନାଥ—ଗୋପୀଙ୍କ ସ୍ୱାମୀ କୃଷ୍ଣ । ପୂରୁର—ପୂରଣକର । (ଏ ତୁମ୍ଭର କେଉଁ ମନୋରଥ—ଇଚ୍ଛା । ତୁମ୍ଭେ ଗୋପୀନାଥ—ମୁଁ ଗୋପୀ, ମୋତେ ନିର୍ଦ୍ଦୟ କାହିଁକି ?) ବା ଏ ରାଧାର କି ମନୋରଥ ଉପସ୍ଥିତ - ପୂରଣକର । ରାଧା କାମବାତୁଳୀ ହୋଇ କହୁତ ହସି କହୁତ କାନ୍ଦ କରଇ—କୃଷ୍ଣଙ୍କର ଗୁଣ ଓ ଆପଣାର ଗୁଣକୁ ନିନ୍ଦାକରି ହା—ଖେଦେ କି ହେଲି କହ । ମିଥ୍ୟାରେ କୃଷ୍ଣରୂପକୁ ଆଲିଙ୍ଗନ କରି ଚୁମ୍ବନ ସ୍ୱରରେ ପୁଣି ମିଥ୍ୟା ବୋଲି ମଣି) ମଥା ଲଜ୍ଜାରେ ପୋତେ ; ରାଧାର ଏ କେଉଁ ମନୋରଥ—ଏପରି ହେଉଛି ଅର୍ଥାତ୍ ତୁମ୍ଭ ବିନା କାମବାତୁଳୀ ହେଲାଣି ।

Digitized by srujanika@gmail.com

ତୋ ପଦପତନ-ଧୂଳିକି ପତନ ଭଲକି ମାନନ୍ତି କପାଳରେ ।
ତହିଁ ମନ୍ମଥରେ ତୋ ଗତି ପଥରେ ଲେଖିଛି କଙ୍କର କର ବାଟରେ ।
ଅରେ ଭାବଭୋଳା । ତବ ଝଡ଼ାପଡ଼ା ଫୁଲ ତୋଳି ।
ଚୂଡ଼ାରେ ଗୁଡ଼ାଇ କରୁଛି ବଡ଼ାଇ ଏବେ ରସିକେନ୍ଦ୍ର ହେଲି ବୋଲି । ୧୩ ।
ତୋ କେଳିବନରେ କଅଁ-ଛଦନରେ ଲେଖିଛି କି ଜାତି ବର୍ଣ୍ଣାବଳି
ହେଉଛି ନିଧନ ଦୟାଧର୍ମ ଧନ ଦେଇ ମୋତେ କିଣ ନବବାଳି ।
ଅରେ ପ୍ରେମଶୀଳା । ଗଣ ତୋ ଗଣସଙ୍ଗତେ ଧାଳା ।
ମରୁଛି ମୁଁ ଭୂରେ ତୋ ପରି ପ୍ରଭୁରେ ଥାଉଁ ଥାଉଁ ବୁଡ଼ୁଛି ତ ଭେଳା ।୧୪।
ତବ ଶଙ୍ଖ କରେ ଲେଖି ବାହୁଲିକରେ ପଦ ଧରି କହେ ସାଦ୍ଧୁ କର ।
କ୍ଷଣକାନ୍ତି ଗତି ଦେଖି ବୋଲେ ଗତି ହେଲେ କର ମୋତେ ସମାଦର ।
ଅରେ ପ୍ରେମୋନ୍ମାଦ । ପିନ୍ଧା ପୀତବାସ ହୃଦେ ଲଦ ।
ନୟନରୁ ବାରି ବହେ ବାରି ବାରି ଯେମନ୍ତ ଝରଇ ଗିରିନଦୀ । ୧୫ ।

---

—ତୋ ଦନସବୁ—ତୁ ଯାକୁ ଭଲ ଭଲ ଦନ ମାରୁଛୁ । ବାଇ ବୁଦ୍ଧି—ବାତୁଳ ହୋଇ ଗଲେଣି ।

୧୩ । ପଦ ପତନ—ତୋ ପାଦରୁ ପଡ଼ିବା ଧୂଳିକି ବା ଯେଉଁ ଧୂଳିରେ ତୋ ପାଦ ପଡ଼ନ୍ତି । ପତନ—ପତନରେ, ଧୂଳିକି—ଛଡ଼ାକରି, କପାଳରେ—କପାଳପଟରେ, ମାନନ୍ତି—ମାନ୍ୟ କରି ଘେନନ୍ତି ବା ମୋହ ଭାଳରେ ଶୋଭା ପାଇନ୍ତି । ମନ୍ମଥରେ ତହିଁ—କନ୍ଦର୍ପଙ୍କୁ ତୟୁକରି । କଙ୍କର—ଶୃଙ୍କର କର ବୋଲି ଲେଖିଛି । ଝଡ଼ାପଡ଼ା—ଝଡ଼ି ପଡ଼ିଥିବା, ଖସି ପଡ଼ିଥିବା । ଫୁଲ—ବାସି ଫୁଲ, ତୋଳି—ତଳରୁ ଗୋଟାଇ । ଚୂଡ଼ାରେ—ମୁକୁଟରେ ଗୁଡ଼ାଇ । ବଡ଼ାଇ—ଗର୍ବ ।

୧୪ । କେଳିବନରେ—ବିଳାସ କାନନରେ । କଅଁ ଛଦନରେ—କଅଁ ପାଖୁଡ଼ାରେ । କି ଜାତି—କି ପ୍ରକାର, କି ସୁନ୍ଦର । ବର୍ଣ୍ଣାବଳି—ଅକ୍ଷର ସବୁ । ହେ ନବବାଳି—ହେ ନୂତନେ, ନିଧନ ହେଉଛି—ମରି ଯାଉଛି । ଦୟା ଓ ଧର୍ମରୂପ ଧନଦେଇ ମୋତେ କିଣ—କିଙ୍କର କରି ରଖ । ତୋ ଗଣ ସଙ୍ଗତେ—ତୋ ଅନୁଚରୀଙ୍କ ସଙ୍ଗରେ; ଗଣ—ଗଣନା କର । ଭୂରେ—ପୃଥିବୀରେ, ମୁଁ ମରୁଛି—ମୁଁ ଅନାଥ ହୋଇଛି, ଭେଳା ତ ବୁଡ଼ୁଛି—ସହାୟ ନାହିଁ, ଉପାୟ କରିବ ?

୧୫ । ତବ—ତୋହର, ଶଙ୍ଖ—ପ୍ରତିମୂର୍ତ୍ତି, କରେ—ହସ୍ତରେ । ବାହୁଲିକରେ—କୁଙ୍କୁମରେ ଜାଫ୍ରାନ କେଶରରେ ଲେଖି । କ୍ଷଣକାନ୍ତି ଗତି—ବିଜୁଳି

Digitized by srujanika@gmail.com

ତ ସେଣ ମନରେ ଶଣ ସୁମନରେ ନୟନ ପଡ଼ିଲେ ନ ଚଳଇ ।
ସେ ଅତି ଆଦରେ କୁଙ୍କୁମ ହ୍ରଦରେ ନିରବଧି ବୋଳି ହେଉଥାଇ ।
ଅରେ ପ୍ରୀତିବତି । ରଜକୀରେ କେତେ କର ସ୍ତୁତି ।
ବଳାଇ ଅଣକୁ ତୋ ପିନ୍ଧାବାସକୁ ଶ୍ରୀଅଙ୍ଗେ ଲଗାଏ ଏକା ସିନା ? ୧୬ ।
ସେନରେ ସୁମନା ବନାଇ ସୁମନା- ମାଳ ଲାଗି ହେଉଅଛୁ ସ୍ନେହେ ।
ଏ କା ରେ ସୁନାରି ଦେଖିଲେ ସୁନାଶ୍ରୀ କୋଳ କରି ଥରି ହା ହା କହେ ।
ଅରେ ରାଗଲତା । ପିକ ବଚନେ କି ଅଦରତା ?
ସାରସଗତିକି ଗୃହୀ ମୁକତିକି ପାଇଲା ପରି ଏ ପ୍ରମୋଦ ତା । ୧୭ ।
କମଳ ସଙ୍ଗରେ ମିଳାଇ ଭୃଙ୍ଗରେ ବୋଲେ ଏପରିକି ସତେ ହେବ ।
ଚୂଡ଼ାରେ ପ୍ରବାଳ-ଅଧର ପ୍ରବାଳ ଖୋସିବାର ମହା ମହୋତ୍ସବ ।
ଅରେ ପ୍ରେମମୂର୍ତ୍ତି । ରାଗଗୁଞ୍ଜେ ଅନୁରାଗ ଅତି ।
ସ୍ନେହଲମ୍ପଟରେ ତୋ ସ୍ନାନଘାଟରେ ଅବଗାହନ ଅଟରେ ନିତି । ୧୮ ।

---

ଫିଟିବ । ଗଉକର—ସାର୍ଥକ କରିଦିଅ । ନୟନରୁ ବାରି—ନୟନରୁ ଜଳ, ଲୁହ । ଶିରନଦୀ—ଯେପରି ଫଟିରେ ।

୧୬ । ତ ସେନ—କଣ ଧ୍ୱନି । ଶଣ ସୁମନରେ—ଶଣ ଫୁଲରେ ନ ଚଳଇ—ଠିଆହୋଇ ରହେ (ରାଧାଙ୍କ ବର୍ଣ୍ଣ ସାଦୃଶ୍ୟ ଦେଖି) । ନିରବଧି—ସବୁବେଳେ । ରଜକୀ—ଧୋବଣୀ । ଧୋବଣୀକୁ ସ୍ତୁତି କର ରାଧାଙ୍କ ପାଟଲୁଗା ରାଧାଙ୍କ ଅଙ୍ଗସଙ୍ଗ ଅବସରରେ ପିନ୍ଧୁଛନ୍ତି ।

୧୭ । ରେ ସୁମନା—ରେ ବୁଦ୍ଧିମତୀ ରାଧେ । ସେନ—ଶୁଣ । ସୁମନାମାଳା—ଫୁଲମାଳା, ବନାଇ—ତିଆରି କରି । ଏ ସୁନାଶ୍ରୀ—ରେ ପଦ୍ମିନୀ ସ୍ତ୍ରୀ-ହେ ରାଧେ ସୁନାଶ୍ରୀ ଗଛ ଦେଖିଲେ ଏ କା—ଏକାକୀ ହୋଇ ବା ଏ କାଣ ଆଶ୍ଚର୍ଯ୍ୟ କଥା । ରାଗଲତା—ପ୍ରେମଲତା, କି ଅଦରତା—ଅତିଶୟ ସ୍ନେହ କରେ ( ରାଧାଙ୍କ ବଚନ କୋକିଳପରି ) । ସାରସ ଗତିକି—ହଂସଗାମିନୀକୁ ଦେଖି; ମୁକତିକି—ମୋକ୍ଷ । ପ୍ରମୋଦ—ଆନନ୍ଦ । (ଗମନ ହଂସର ପରି) ।

୧୮ । କମଳ—ପଦ୍ମ । ଭୃଙ୍ଗ—ଭ୍ରମର । ରାଧା ମୁଖପଦ୍ମକୁ କଳା ଭ୍ରମର ପରି ଚୁମ୍ବନ ଦେବି, ମଧୁ ବା ରସ ପାନ କରିବି । ଚୂଡ଼ାରେ—ମସ୍ତକରେ, ପ୍ରବାଳ ଅଧର—ହେ ପୋହଳାଓଠି । (ବିଦଗ୍ଧମାଧବ) ପ୍ରବାଳ ଖୋସିବାର—ନୂତନ କିସଲୟ (କଅଁଳ ଜାଆ ପତ୍ର) ଖୋସିବାର, ମହାମହୋତ୍ସବ—ମହା ଆନନ୍ଦର ବିଷୟ । ରାଧାର ପାଦ ନୂତନ ପଲ୍ଲବ ପରି, ତା ତଳେ ମୋ ମଥା ନତ ହେଲେ ଶୋଭା ଦୃଶ୍ୟ ହେବ ଏହି ମମତାରେ ପଲ୍ଲବ ଶିରରେ ଖୋସିଥାଏ । ରାଗ ଗୁଞ୍ଜେ—ରଙ୍ଗ ଚାଉଁଳରେ ଅତିଶୟ ସ୍ନେହ ହୋଇଥାଏ । ରାଧାଙ୍କ ଅଧର ଲାଲ, ମୋର ମୁଖ

Digitized by srujanika@gmail.com

ଚମ୍ପକ ମାଳାକୁ ଲମ୍ବାଇ ଗ୍ରୀଳ କା ମିତରେ ପଶୁରେ କି ମାନିଲା ।
ଫୁଲଗୁଞ୍ଜାମାଳ ସଙ୍ଗେ ବନମାଳୀ ମନ ପ୍ରୀତି କାହିଁପାଇଁ ହେଲା ।
ଅରେ ପ୍ରେମକଳା । ନାପିତାଣୀଠାରୁ କି ଶିକ୍ଷା କଲା ।
ବେଶକାରୀମାନେ ଏବେ ସମ୍ମାନେ ଧନ ନେଲେ ବୋଲି ଶୁଣାଗଲା । ୧୯ ।
ହୃଦୟ ପଦକେ ତୋ ରୂପ ପଦକେ ଆପଣା ନାମକୁ ଲେଖାଇଛି ।
ଧ୍ୟାଇଁ ବୋଲକ ତା ରୁକ୍ଷ୍ମଳୀକ କେଉଁ ମମତାରେ ସମ୍ପାଦିଛି ।
ଅରେ ପ୍ରେମଜ୍ଞାନ । ବନାଇଛି ତାମ୍ରବରଣୀ ।
ନାଶନ ଲୋହିତ ଡମ୍ବରୁ ସହିତ ଗୁପତେ କାହିଁକି ସଂଗାନ । ୨୦ ।

---

କଳା, ଏ ଦୁହେଁ ମିଶିଲାପରି ରଙ୍ଗ କାଳିଚ ଦେଖାଯାଏ । ସ୍ନେହଲମ୍ପଟରେ—ତୋ ସ୍ନେହରେ ଅତି ଲୋଭୀହୋଇ, ସନ୍ତୁଷ୍ଟ ହୋଇ । ଅବଗାହନ ଆଚରେ—ସ୍ନାନ କରେ (ତୋତେ ଦେଖିବା ଇଚ୍ଛାରେ ବା ତୋ ଦେହ ଜଳ ମୋ ଦେହରେ ଲାଗୁ ଏହି ଇଚ୍ଛାରେ) ।

୧୯ । ଚମ୍ପାଫୁଲ ମାଳାକୁ ବକ୍ଷସ୍ଥଳୀରେ ଧାରଣ କରି କି ବସ୍ତୁ ମିତକୁ ପଶୁରେ ମାନିଲୁ କି—( ରାଧାଙ୍କ ବାହୁଯୁଗ ଚମ୍ପାମାଳା ସଦୃଶ ବକ୍ଷ ଆଲିଙ୍ଗିତ ) । ଫୁଲଗୁଞ୍ଜା ମାଳ— ମାଳ ଫୁଲ ନେଇ ରାଧାଙ୍କ ପାଖକୁ ମିବାରୁ ସେ ମା ଗୁପ୍ତକଥା ରାଧାଙ୍କୁ କହିବ ବା ଗୁପ୍ତ ତାହା ନ ଫୁଲ ମାଳରେ ଲୁଚାଇ ନେଇ ଦେବ, ଏହା ବିଚାରି ମାଳ ସେଥି କୃଷ୍ଣ ମନ ନେଲେ । ନାପିତା ରାଧାଙ୍କ ନଖାଦି ଅଳତା ଦିଏ, ତାଠାରୁ ରାଧାଙ୍କ ବିଷୟ ଶୁଣିଲେ । ବେଶକାରୀମାନେ—ରାଧାଙ୍କୁ ବେଶ କରିବା ସ୍ତ୍ରୀମାନେ, ଏବେ ସମ୍ମାନ କରି ଧନ ଦେଲେ—ମର୍ମ କଥା ରାଧାଙ୍କୁ କହିବ ବୋଲି ।

୨୦ । ହୃଦୟ ପଦକେ—ହୃଦୟରେ ଯେଉଁ ସୁନା ପଦକ ଅଛି ସେଥିରେ ତୋ ରୂପ ଅଛି ; ତାର ପଦକେ—ପାଦ ଦେଶରେ ନିଜ ନାମକୁ ଲେଖାଇଛି । ଅର୍ଥାତ୍ ପଦକରେ ରାଧାଙ୍କ ରୂପ ଅଙ୍କିତ କରି ତା ତଳେ ନିଜ ନାମକୁ ଦାସ ରୂପରେ ଲେଖାଇଛି ( ବା ହୃଦୟ ପଦକେ—ହୃଦୟ ସ୍ଥାନରେ ଥିବା ପଦକେ—ସୁନା ପଦକରେ ତୋ ରୂପ ଓ ଆପଣା ନାମ ଲେଖାଇଛି ) । ବୋଲକ—ଟୁଲ୍ମୁଣିକା ତିଆରି କରି ତା ରୁକ୍ଷ୍ମଳୀକ—ଗୁଡ଼ିକୁ କେଉଁ ମମତାରେ—କେଉଁ ମନରେ ଭାବି ସମ୍ପାଦିଛି—କରାଇଛି—ଟୁଲ୍ମୁଣିରେ ରାଧା ନାମକୁ ରୂଳରେ ଜପ କରୁଛି । ଅରେ ପ୍ରେମଜ୍ଞାନା—ପ୍ରେମ ଜ୍ଞାନବତୀ ; ତାମ୍ର ବରଣୀ—ତମ୍ବାପାଣି ବନାଇଛି—ଲୋହିତ ବମନ କଷା ବସ୍ତ୍ର ( ଗେରୁଆ ଲୁଗା ) ଡମ୍ବରୁ—ଯୋଗୀଙ୍କ ବାଦ୍ୟ ବିଶେଷ । ଗୁପତେ—ଗୋପନରେ ସଞ୍ଚିଲାଣି ( ଅର୍ଥାତ୍ ହେ ରାଧେ ! ତୋହଲାଗି କୃଷ୍ଣ ଯୋଗୀ ହୋଇ ତମ୍ବାପାଣି ଧରି ରାଧା ନାମ ଜପ କରି ଜଗତରେ ବୁଲିବ ।

Digitized by srujanika@gmail.com

ଶୁଣି ଏ ବଚନ   କଣୋସ୍ତ-ଲୋଚନ-   କମଳ ଜଳରେ ବୁଡ଼ିଗଲା ।
ଭାଳଇ ରମଣୀ   ପ୍ରୀତି ଗୁଣମଣି   ଦୁଃଖ ଏତେ ସରଯାଏ ହେଲା ।
ଧିକ ଧିକ ବିଧି । ଏଥିକି ସଖ ବଳାଇ କେଧି ।
ଏତେ ସର ଯାଏ   କଥା ପୁଣି ଯାଏ   ଏହା ମଧ୍ୟ ପ୍ରାଣ ଅଛି ରହି । ୨୧ ।
ମୋହପର ପଣେ   ହେଲେ ଦାସୀପଣେ   ପାଦସେବା ଯୋଗ୍ୟ ହେବନାହିଁ ।
ଏତେ ଅଭାଗିନୀ   ହେବାକୁ ଲୋଚିନୀ   ଏତେ ଆଶା ବଳାଇଲା କେଧି ।
ଆହେ ପ୍ରାଣପ୍ରଭୁ । ପ୍ରଣୟ-ଆନନ୍ଦ-ସୁଖବିଭୁ ।
ଏ ସ୍ଥାର କୁମତ—ଠାରେ ଦେଲି ମତ ନ ଜାଣି କାର୍ଯ୍ୟ କି ଲାଭ ଲୋଭୁଁ । ୨୨ ।
ହେବ ଯେବେ ଶତ   ନୃନାସ୍ତି କଳ୍ପିତ   ରମା ଉମା ଶତ ଦାସୀ ହୋଇବେ ।
ଗୁହିଁଲେ ମୁରତ   ବଲ୍ଲବବରତୀ   ରତିଅନେ ଧୃତି ନ ରଖିବେ ।
ଆହେ ପ୍ରାଣେଶ୍ୱର । ଅମୃତସାଗର ନାମ ତୋର ।
ଶୁଣିଲେ ଗୁଣକୁ   ବିବେକ ପଣକୁ   ବେଦମାତା କରଦେବେ ଦୂର । ୨୩ ।
ଏମନ୍ତ ଦୁଲଭ କି କର ସୁଲଭ ହେବ ବୋଲି କଲି ଆଶା ଦୂର ।
ଏ ଭାଗ୍ୟ ବିରଞ୍ଚି ଭାଲେ ଥିଲା ରଞ୍ଚି କି କରି ଜାଣନ୍ତି ନାରୀ ସ୍ଥାର ।
ଅହେ ପ୍ରାଣବନ୍ଧୁ । ସତ ଶୁଦ୍ଧ ତୁମ୍ଭେ କୃପାସିନ୍ଧୁ ।
ଦୀନରେ ସଦୟ ହୋଇଛ ଉଦୟ ହେମନ୍ତେ ନଳିନୀ ରଖେ ବିଧୁ । ୨୪ ।

---

୨୧ । ପ୍ରୀତି ଗୁଣମଣି—କୃଷ୍ଣ । କେଧି—କପଟ । ୨୨ । ଲୋଚିନୀ—କୃଷ୍ଣଙ୍କ ସ୍ତ୍ରୀ ହେବାକୁ । ପ୍ରଣୟ ଆନନ୍ଦ ସୁଖବିଭୁ—ପ୍ରୀତି ଆନନ୍ଦ ସୁଖର ମାଲିକ ବା କନ୍ଦର୍ପ ସୁଖର ଅଧିକାରୀ କୃଷ୍ଣ । କି ଲାଭ ଲୋଭୁଁ—କଣ ପାଇବା ଆଶାରେ ନ ଜାଣି କଥା ମନ ଦେଲି ।

୨୩ । ନୃନାସ୍ତି କଳ୍ପିତ—ମାନବୀ କଥା ଛାଡ଼ (କାରଣ ସେ ସାମାନ୍ୟା) । ରମା—ଲକ୍ଷ୍ମୀ, ଉମା—ପାର୍ବତୀ । ବଲ୍ଲବବରତୀ—ପତିବ୍ରତା ସ୍ତ୍ରୀମାନେ । ଧୃତି—ଧୈର୍ଯ୍ୟ । ଅମୃତସାଗର—ସୁଧାପରି ମିଷ୍ଟ ବା ଅତି ମଧୁର । ବେଦମାତା—ଗାୟତ୍ରୀ । ବିବେକପଣକୁ—ବୁଦ୍ଧିବୃତ୍ତିକୁ । ସେ ତାଙ୍କ ଆଶାରେ ବାଉଳା ହେବେ ।

୨୪ । କୃଷ୍ଣଙ୍କଠାରେ ଆଶା କରିଥିଲି, ସେ ଦୁର୍ଲଭ—ସୁଲଭ ହେବେ କି ? ବିରଞ୍ଚି—ବ୍ରହ୍ମା । ସତଶୁଦ୍ଧ—ସ୍ୱଭାବ ସିଦ୍ଧ । କୃପାସିନ୍ଧୁ—ଦୟାସାଗର । ଦୀନରେ—ଦୁଃଖିନୀ ମୋ ଠାରେ ସଦୟ—ଦୟା ଉଦୟ ହୋଇଛି । ହେମନ୍ତ ନଳିନୀ—ପଦ୍ମିନୀକୁ ବିଧୁ—ଚନ୍ଦ୍ର ରଖେ । ହେମନ୍ତ ସାମାନ୍ୟ ନାରୀ ପଦ୍ମିନୀକୁ ଚନ୍ଦ୍ର ରଖିଲ ସେହିପରି ତୁମ୍ଭେ ଗୃହୀ ସ୍ତ୍ରୀ ମୋତେ ଆପଣ ରଖିଛନ୍ତି, ମୋ ଭାଗ୍ୟ ଅତି ଭଲ ।

Digitized by srujanika@gmail.com

ପାଇ ଚିନ୍ତାମଣି   ଖିଳକଣା ମଣି   ମୁଁ ପାପିଷ୍ଠୀ କଲି କି ନଗ୍ରଣ ।
ଯେମନ୍ତେ ଦ୍ୱିତୀୟା-   ଚନ୍ଦ୍ରମା ପ୍ରୀତିଅ-   ପଣ କଲି ତୁମ୍ଭେ ପରକାଶ ।
ଅହେ ପ୍ରାଣେଶ୍ୱର । ବୃଦ୍ଧି କଲି ଦିନୁଁ ଦିନୁଁ ଯଶ ।
ମୋ ହୃଦକୁମୁଦ   କଳାକରେ ମୁଦ କଲି ନ ବିଚାରି ଗୁଣଦୋଷ । ୨୫ ।
ଏମନ୍ତ ବିଚାରୁ   ରାଧା ମୁଖ ରୁଚି   ଅରୁଣ ପତ୍ରଏ ଦଶିଗଲା ।
ପୁଲକ ଗଣ୍ଡରୁ   ହା ବନ୍ଧୁ ତୁଣ୍ଡରୁ ବାରୁଁ ବାରୁଁ ବଳେ ବାହାରିଲା ।
ବୋଲେ ଧିକ ଧିକ । ଛି ଛି ରେ ଜୀବନ ଅବିବେକ ।
ନ କଲୁ ସଞ୍ଚାର   ଏ ଛଡ଼ି ବିଗ୍ରହ   ବୁଡ଼ାଇଲୁ ତାଳେ ପ୍ରୀତଟେକ । ୨୬ ।
ଅମୃତବାରିଧି   ଚେତିଲୁ ଅବଧି   ଅଛୁ ତୁଚ୍ଛ କୁଳ ଲଜଧର୍ମ ।
ପ୍ରଣୟ କନ୍ଦଳୀ-   ଦଳୁ ଦେଲୁ ଦଳି   ପୋଡ଼ୁ ପୋଡ଼ୁ ଅଗ୍ନିଗିରି କର୍ମ ।
ଅରେ ପାପିମନ । ନେତ୍ର ସଙ୍ଗେ ଥିଲୁ ଦେଖାଦେନ ।
ବନ୍ଧୁ ରଖ କର   ଶ୍ରୀପଦେ କଙ୍କଣ   ଲୁହାଇଲୁ ନାହିଁ ଏ ବଚନ  ୨୭ ।
ଏପରି ଭାବନା   କରୁଁ କରୁଁ ବନା-   ନନ ପର ହୃଦ ଦହେ ପ୍ରୀତ ।
ସ୍ୱେଦଜାତ ତନୁ   କମ୍ପିଲା ସ୍ତନନୁ   ଅଟରିଲା ଲୁଚାବେଣୀ ଗ୍ରନ୍ଥ ।
ଏ ଦଶାକୁ ଦେଖି । ଦୁଃଖରେ ମଜ୍ଜିଲେ ପ୍ରିୟ ସଖୀ ।
ଚେତାଇଲେ ଦୂତୀକ   କଥା ଯୋଗୁଁ ଏତିକ ଲଭ ପାଇଲା ଅଜନ୍ମସୁଖୀ ।୨୮।

---

୨୫ । ଚିନ୍ତାମଣି—ବାଞ୍ଛାରତ୍ନ ପାଇ ଖିଳକଣା—ଭୋଡ଼, ମଣି—ଜାଣି, ପାପିଷ୍ଠୀ—ପାପିନୀ, ନଗ୍ରଣ କଲି—ଅଣା ଚ୍ଛେଦନ କରିଦେଲି, ଦ୍ୱିତୀୟା ଚନ୍ଦ୍ର ଦିନକୁ ଦିନ କ୍ରମେ ବଢ଼େ, ସେପରି ମୋଠାରେ ପ୍ରୀତିଅପଣ—ସ୍ନେହ କରିବା ବ୍ୟବହାରକୁ ତୁମ୍ଭେ ପ୍ରକାଶ କଲ । ହୃଦକୁମୁଦ—ହୃଦୟରୂପ କଇଁ । ମୁଦ—ଆନନ୍ଦ, କଳାକରେ—ଚନ୍ଦ୍ରକପରି ।

୨୬ । ଅରୁଣ ପତ୍ରଏ—ଉଇଁଲା ସୂର୍ଯ୍ୟ ପରି (ଅର୍ଥାତ୍ ମୁଖ ଗୌର, ସେଥିରେ ଅନୁରାଗ ମିଶିଲା) ବାରୁଁ ବାରୁଁ—ବାରଣ କରୁ କରୁ, ଲୁଗିଲ୍ ଲୁଗିଲ । ନ କଲୁ ସଞ୍ଚାର—ବାହାର ନ ଗଲୁ । ପ୍ରୀତ ଟେକ—ଦୃଢ଼ବନ୍ଧ ପ୍ରୀତି । ତାଳେ—ଥଳକରେ, ବୁଡ଼ାଇଲୁ—ନାଶକଲୁ ।

୨୭ । ଅମୃତବାରିଧି—ଅମୃତ ସାଗରକୁ—କୃଷ୍ଣଙ୍କୁ । ତୁଚ୍ଛ—ହୀନ, ସାମାନ୍ୟ । ଅଶ୍ରୁଅଛୁ—ଆଶ୍ରୟ କରିଅଛୁ । ପ୍ରଣୟକନ୍ଦଳୀଦଳୁ—ସ୍ନେହର ଗଛ ହେଲାଦଳୁ, ସ୍ନେହ ଜାତ ହେଲାବେଳେ । ଦଳି ଦେଲୁ—ନାଶକଲୁ । ରେ ମନ ! ତୁ ଆଖିରେ ଥାଇ ଦେଖୁଥିଲୁ । ହେ ବନ୍ଧୁ ! ଶ୍ରୀପଦେ—ଶ୍ରୀଯୁକ୍ତ ପଦରେ କଙ୍କଣ—ବ୍ରଜସ୍ୱାମୀ, ଏ କଥା ଲୁହାଇଲୁ ନାହିଁ—ଶୁଣିଲୁ ନାହିଁ ।

Digitized by srujanika@gmail.com

ସେ ବୋଲେ ରାଧିକା ପ୍ରେମଆରାଧିକା ମୋ ବଚନ ମନେ ଥିଲେ ସେନ ।
କେତେ ବଇଭବ ହୁଅନ୍ତାନ ଭବ— ପର ଛାର କ କରନ୍ତା ମ୍ଳାନ ।
ଅଗୋ ସଖୀବ୍ରାଜ । ଅଙ୍ଗୀକାର ଲେଖ ଲେଖୁଁ ଅଜ ।
ମଦନ କଦନ ବଦନ ଛେଦନ ଭେଟାଇ ଦେଖ ରସିକରାଜ । ୨୯ ।
ମନ୍ତ୍ର ଉପଦେଶ ପରାଏ ସନ୍ଦେଶ ମଣି ଗୁଣମଣୀ ଗୁଣି ଗୁଣି ।
ପ୍ରଣୟ ସିଦ୍ଧିକ ଲଜ୍ଜା-ଜଳଧିକ ବଳେ ବଳେ ବଳାଇଲା ପୁଣି ।
ମର୍ଯ୍ୟାଦାକୁ ରଖି । ସ୍ମିତେ ଗୃହ୍ଣୁଁ ମନ ଜାଣି ସଖୀ ।
ବୋଲାଇଲେ ଦୂତୀକି ତେଣୁ ଏ ରାତିକି କରାଅ ବୋଧିବା ଚନ୍ଦ୍ରମୁଖୀ ।୩୦।
ଭଲ ଏ ବଧିକି କୃଷ୍ଣ ସନ୍ନିଧିକି ଅତି ବେଗବେଗି ଚଳିଗଲା ।
ବୋଲଇ ସାମନ୍ତ— ସିଂହାର ସାମନ୍ତ ପୁଣ୍ୟ ଆଜ ମୋର ଧନ୍ୟ ହେଲା ।
ଅହେ ଧୀରଜନେ । ସେନିବାର ହେଉ ସାବଧାନେ ।
ପ୍ରସଙ୍ଗ ଶୁଣିବ ଦେବ ମୁକତିକି ଥିର ଛାନ୍ଦକୁ ରସିକେ ମନେ ।୩୧ ।

---

୨୮ । ବଳାବଳ—ବଣଦଆଁ । ପ୍ରୀତି—ସ୍ନେହ । ସ୍ୱେଦ—ଝାଳ । ସ୍ୱତନୁ—ରାଧା । ରାଧାଙ୍କ ସାତ୍ତ୍ୱିକ ଭାବ ଜନ୍ମିଲା । ଭୂତାବେଶୀ ରାତି—ଭୂତ ଲାଗିଲା ବ୍ୟବହାରକୁ ଅଟଇଲା । ଏତେକ—ଏହି ଅବସ୍ଥାକୁ ।

୨୯ । ପ୍ରେମ ଆରାଧିକା—କୃଷ୍ଣପ୍ରେମସେବନୀ ରାଧିକା । କେତେ ବଇଭବ—କେତେ ବିଭବ, ସମ୍ପଦ ବା ସୁଖ । ଭବପର—କାମ । ମ୍ଳାନ—ଦୁଃଖୀ କରନ୍ତା କି । ସଖୀବ୍ରାଜ—ସଖୀସମୂହ । ଅଙ୍ଗୀକାର ଲେଖ—ସ୍ୱୀକାର ପତ୍ର । ମଦନକଦନ—କାମପୀଡ଼ା । ରସିକରାଜ—କୃଷ୍ଣ ।

୩୦ । ଦୂତୀର ସନ୍ଦେଶ—ଦୂତୀର କଥା । ଗୁଣୀମଣି—ରାଧା । ଗୁଣି ଗୁଣି—ଭାବି ଭାବି । ରାଧାର ପ୍ରଣୟ ସିଦ୍ଧିକ—ପ୍ରୀତିର ଫଳଲାଭ, କୃଷ୍ଣଙ୍କ ସହ ମିଳନ । ଲଜ୍ଜା ଜଳଧିକ—ଲାଜ ସମୁଦ୍ରକୁ; ବଳେ ବଳେ—ଆପେ ଆପେ, ସ୍ୱତଃ ପୁଣି ବଳାଇ ପକାଇଲା । ଲଜ୍ଜା ଛାଡ଼ି କୃଷ୍ଣ ମେଳନରେ ମନ ବୁଡ଼ିଗଲା । ମର୍ଯ୍ୟାଦାକୁ ରଖି—ନିଜର ମାନ୍ୟ ରଖି, ସ୍ମିତେ—ଅଳ୍ପ ହସି, ଗୃହ୍ଣୁଁ, ସଖୀମାନେ ମନ ଜାଣି (ରାଧାଙ୍କ) । ଏ ରାତିକି କରାଅ—ରସିକରାଜଙ୍କ ସଙ୍ଗେ ଭେଟ କରାଅ । ଚନ୍ଦ୍ରମୁଖୀ—ରାଧା । ବୋଧିବା—ବୁଝାଇବା, ସନ୍ତୋଷ କରିବା ।

୩୧ । ଏ ବଧିକ ଭଲ—ରାଧାକୃଷ୍ଣଙ୍କ ମିଳନ ପ୍ରସଙ୍ଗକୁ ଭଲ ଭଲ । ସାବଧାନେ—ଅନୁରାଗରେ । ପ୍ରସଙ୍ଗ—ରାଧାକୃଷ୍ଣଙ୍କ କଥା । ଶୁଣିବ—ଶୁଣିଲେ ।

Digitized by srujanika@gmail.com

ଦୁର୍ଘଟ-ଘଟନା-ଫଘଟ-ଘଟକ ଘଟ ଥିଲେ ହେବ ବିଧି ।
ବର ବରନାର ନିରତର ତର ରତ ହେବ ଯିବା ବିଧି ।
ମିତ ହେ । ଶ୍ରୁତ ଶ୍ରୁତରେ ପଡ଼ିଛି ।
ବନ୍ଧୁ କର ଭରଗତ ଗତ ଦେବ ଦେବବର ବର ଅଛି । ୩ ।
ହୃଦର ଦର ଦରଶନ ସନକମୋହିନୀ ଦେଲେ ହେବ ଦୂର ।
ମିତରେ ମିତରେ ଭାଷନ୍ତି ଭାସନ୍ତି ରସରେ ସରେ ଫସାର ।
ମିଦ ହେ । ସୁଧାର ଧାର ବଚନ ।
ବାରଣ ରଣରଣ ରଣ ବାଣକୁ କର ରକ୍ଷିଲ ଜୀବନ । ୪ ।
ରସିବ ଶିବମୋହିନୀ ତ ମୋ ହିତରେ ବାନ୍ଧ ବାନ୍ଧବ କି ମତେ ।
ଜୀବନ ବନଜ-ମୁହିଁଙ୍କ ମୁହିଁ କ ବୋଲିବି କୋହୁଛି ପ୍ରତେ ।
ମିତ ହେ । ସୁକୃତ କୃତ ମୋ କେତେ ।
ଦାସ ତ ସତ ହେବାର ବାରପଡ଼ ପଡ଼ଉ ହେନ୍ତା କେମନ୍ତେ । ୫ ।

---

୩ । ଦୁର୍ଘଟ ଘଟନା—ଅସମ୍ଭବ କଥା । ଫଘଟ ଘଟକ—ଘଟଣାକାରକ । ବିଧି—ବିଧାନ, ଉପାୟ ହେବ । ବରବରନାର—ଉତ୍କୃଷ୍ଟ କାନ୍ତିମତୀ ସଧାର । ନିରତରେ—ପୂର୍ବ ଆସକ୍ତିରେ, । ରତ—କାମକେଳି ବା ସ୍ନେହପାଇଁ । ତର—ଶୀଘ୍ରରେ । ଯିବା ବିଧି—ବିଧାନ ହେବ । ବରବରନାର—ସଧାର । ନୀର—ଅଶ୍ରୁଜଳ । ତରତର—ଅତିଶୀଘ୍ର । ରତ ବିଧି—କରିବା ବିଧି । ଯିବାହେବ—ଶୂନ୍ୟଯିବ ବା ବରବରନାର—ସଧାର, ନିରତରେ—ସର୍ବଦା ଆସକ୍ତିରେ । ତର—ବ୍ୟଗ୍ରତା । ଯିବା ବିଧି ଉତ ହେବ—ହୋଇପଡ଼ିବ । “ନିରନ୍ତର ତରତର ହେବ” ପାଠ ଗ୍ରହଣ କଲେ—ନିରନ୍ତର ତରତର ଯିବା ବିଧି ହେବ ; ଏସବୁ ଅର୍ଥ ପରେ ଏହି ଅର୍ଥ ସମୀଚୀନ—ବରବରନାର ତର ଯିବା ବିଧିରେ—ନିର୍ବାଣରେ; ନିରତର—ପୂର୍ବ ଆସକ୍ତିରେ ରତ—କୁମ୍ଭଠାରେ ସ୍ନେହ ହେବ । ଶ୍ରୁତରେ—ବେଦରେ ବା କର୍ଣ୍ଣରେ, ଶ୍ରୁତ—ଶୁଣା ପଡ଼ନ୍ତି । ଦେବବର—ବ୍ରହ୍ମା ।

୪ । ସନକ-ମୋହିନୀ—ସନକାଦି ଋଷିମୋହିନୀ ସଧା । ଦର—ଭୟ, କାମଭୟ । ମିତରେ—ମଧୁମଙ୍ଗଳଙ୍କୁ । ମିତରେ—ଅଳ୍ପ କଥାରେ । ରସରେ ଭାସନ୍ତି—ବିପ୍ରଲମ୍ଭାଖ୍ୟ ଶୃଙ୍ଗାର ରସରେ ବା ବିରହାର୍ଣ୍ଣବରେ ଭାସନ୍ତି । ମୋର ଫସାର ସରେ—ମୁଁ ଫସାରରେ ରହିପାରିବି ନାହିଁ । ବଚନ—କଥା । ସୁଧାର ଧାର—ଅମୃତର ଧାରା ପରି । ରଣରଣ ରଣବାଣକୁ—କନ୍ଦର୍ପର ଯୁଦ୍ଧର ଶରକୁ । ବାରଣ—ନିବାରଣ କରି, ଜୀବନ—ପ୍ରାଣ ରକ୍ଷିଲ ।

୫ । ବାନ୍ଧ—ବିଧାତା । ମତେ—ନିଶ୍ଚୟ, ବାନ୍ଧବ କି—କହିବ କି । ଶିବମୋହିନୀ—ମହାମୋହିନୀ ମହାଦେବ ମୋହିନୀ. ମୋହିତରେ—ମୋ ମଙ୍ଗଳପାଇଁ;

Digitized by srujanika@gmail.com

ପଦ ପଦ୍ମଙ୍କ ସକଳ କି ଜୀବ ଜୀବନଜୀବନିକା ପାଇଁ ।
ଛାମୁ ଦରଶନ ପଣ ପଣାପଣ ବ୍ରତ ଫଳରୁ ମିଳଇ ।
ମିତ ହେ । ଶ୍ରୀପଦ ଶ୍ରୀପଦଦାୟୀ ।
ସାର୍ଥ କେଳିକର କର କର କରିକରଦନ୍ତ ସେବା ମାଗିବିଁ । ୭ ।
ହର ବରତୁଳା ତୁଳାଅଙ୍ଗୀ ଅଙ୍ଗୀକାର ଉରଜ ରଞ୍ଜନ ।
ବିଚିତ୍ର ଚିତ୍ରକର କର ସୁକୃତ କୃତ ବିଧି ଅଲେଖନ ।
ମିତ ହେ । ସୁମନେ ସୁମନେ କର ।
ସୁବେଣୀ ସୁବେଣୀ ନିବନ୍ଧ ବନ୍ଧନ ଧନଦପଦ କି ସର । ୮ ।

---

ରସିବ—ଅନୁଭବ କରିବ । ବନଜମୁହିଁଙ୍କ—ପଦ୍ମମୁଖୀଙ୍କ, ରାଧାଙ୍କୁ । ଜୀବନ—ମୋ ପ୍ରାଣ । ପ୍ରତେ—ପ୍ରତ୍ୟୟ, ବିଶ୍ୱାସ । କୃତ ସୁକୃତ—କଳ୍ପ ପୁଣ୍ୟ । କେତେ—ଅତି ସାମାନ୍ୟ, ଅଳ୍ପ । ବାରଦେ—ଜଳାଧିପତି ବରୁଣ ବା ବରୁଣ-ନାୟିକାପତି । ମୁଁ ଦାସ ହେବାରେ—ରାଧାଙ୍କ କେଣା ଙ୍କଙ୍କର ହେବା ସତ, ମୁଁ କେମନ୍ତେ ତାର ପତି ହେବ । ଶିବମୋହିନୀ—ଗଙ୍ଗା, ତାର ସ୍ୱାମୀ ବରୁଣ । ବନଜମୁହିଁ—ଲକ୍ଷ୍ମୀ, ତାର ପିତା ବରୁଣ । ବା ସତ ଦାସ ହେବାର ବାର 'ବାରଣ କର'; ତାର ପାଦରେ ପତିତ ହେବ କେମନ୍ତେ—କପଟ ପଡ଼ିବ ।

୭ । ଜୀବନଜୀବନିକା—ଚନ୍ଦ୍ରାକ୍ଷୀ ରାଧାଙ୍କୁ, ପାଇଁ—ପ୍ରାପ୍ତ ହେବା ପାଇଁ, ପଦ-ପଦ୍ମଙ୍କ—ପାଦପଦ୍ମଙ୍କୁ, ଜୀବ—ପ୍ରାଣ, ସକଳଙ୍କ—ଜୀବନ ଦେଇ ପକାଇବି କି ? ଛାମୁ ଦରଶନ ପଣ—ଆଗରେ ଦରଶି ଧରିବା କାମ । ପଣ ପଣ ବ୍ରତ ଫଳରୁ—ବହୁ ତପସ୍ୟା ଫଳରୁ, ମିଳଇ—ଲାଭ ହୁଅଇ । ଶ୍ରୀପଦ—ରାଧାଙ୍କ ଶୋଭାଯୁକ୍ତ ପାଦ, ଶ୍ରୀପଦ—ଲକ୍ଷ୍ମୀପଦ ଦାୟୀ—ଦିଅଇ । ହେ କରିକରଦନ୍ତ—ଦୀର୍ଘ ଆଲମ୍ବ ବାହୁଦଣ୍ଡ ରାଧେ, କେଳିକର—ଭୃତ୍ୟର କର—ହସ୍ତକୁ ସାର୍ଥ—ସଫଳ କର । ଏହା ବହୁ ପାଦ ସେବା ମାଗିବି ।

୮ । ଉରୁବରତୁଳା—ଗୋଲ ଜଙ୍ଘ । ତୁଳାଅଙ୍ଗୀ—ତୁଳା ପରି ଅଙ୍ଗ ଅତି କୋମଳ ରାଧାର । ଅଙ୍ଗୀକାର—ଅନୁମତି ; ଉରଜ—ସ୍ତନଦ୍ୱୟକୁ ; ରଞ୍ଜନ—ମଣ୍ଡି, ବିଚିତ୍ରଚିତ୍ର କରି—ଅଦ୍ଭୁତ ଚିତ୍ର କରିବା ମୋର କର—ହାତ କୃତ ସୁକୃତ—କଳ୍ପପୁଣ୍ୟ । ବିଧି ଅଲେଖନ—ବିଧାତା ଲେଖିପାରିବ ନାହିଁ । ସୁମନେ—ଉତ୍ତମ ମନରେ । ସୁମନେ—ଫୁଲରେ । ସୁବେଣୀ—ଉତ୍ତମ ବେଣୀ ଯାହାର, ସେପରି ରାଧାର । ସୁବେଣୀନିବନ୍ଧ—ଫୁଲ କରି ବାଳରେ ବେଣୀ ବନ୍ଧନ କରିବାକୁ, ଧନଦପଦ—କୁବେରପଦ । ସରି ହେବ କି—ସମାନ ହେବ କି ।

Digitized by srujanika@gmail.com

ଅବଳା ବଳାଇ ଖଞ୍ଜିବାର ବାରପଟ ଛିଡ଼ି ଗଲେ ।
ବାସ ବାସବପଦ ପଦତଳରେ ଗଳ କର ଦେଇ ଛଳେ ।
ମିତ ହେ । ତାମ୍ବୂଳ ତାମ୍ବୂଳ ଦେବା ।
ବସନ ସନମାନ ମାନବର ବ୍ରତଫଳ ଗଣିବା । ୮ ।
ଯୋଗେଭଙ୍ଗୀ ଭଙ୍ଗିମାନ ମାନବତୀ ବଢ଼ଣ ଦ୍ୱିଗୁଣ ଭାବ ।
କଙ୍କଣୀ କଣି କଣିବ କା ବକାରପର-ପରମାଦ ଯିବ ।
ମିତ ହେ । କର କରଜ ଗୁଳିବ ।
ଯା ଯା ଅପରାଧୀ ରାଧିକା ଧିକ୍କାର କାରଣ ଶୁଣିଲେ ହେବ । ୯ ।
କୋଳ କରୁ କରୁ କରୁଣାନଧିରେ ଧୀରେ ଧୀରେ କହିଦେବ ।
ବବସନ ସନମତ ମଧୁକାଷିଣୀର ନାରେ ଦେଖିବ ।
ମିତ ହେ । ମନ୍ଦ ମନ୍ଦ ହାସ କର ।
ହସିବ, ଶିବର ବର ବରଦର ଦରଶନ କର ପାର । ୧୦ ।
୯—୨ କଙ୍କିଣୀ କଣିକଣି କଣିବ ବକାପର ପରମାଦ ଯିବ-କ, ଖ, ଝ,
ଠ, ୧୦—୨ ନରତେ କ, ଖ, ଚ, ଜ, ଝ, ଠ ।

---

୮ । ଅବଳା—ରାଧାର । ବଳାଇ—ବଳାଇବାରେ । ଖଞ୍ଜାଇ—ପିନ୍ଧାଇ । ବାରପଟ—ବସ୍ତ୍ର । ଛିଡ଼ି—ଏ ସମସ୍ତ ବା ରାଧାର ପାଦରେ ବଳା ପିନ୍ଧାଇଲେ ବସ୍ତ୍ରଙ୍କ ବଡ଼ପଣକୁ ବଳାଇ—ବଳଯାଏ । ବାସ—ପିନ୍ଧିବା ଲୁଗା (ରାଧାର) । ଛଳେ—କପଟରେ, ଗଳ କରିଦେଇ—କଟିଦେଶରୁ ଖସାଇଦେଲେ, ବାସବପଦ ପଦତଳରେ—ଇନ୍ଦ୍ରପଦର ସୁଖ ପାଦତଳରେ ତୁଚ୍ଛ । ତାମ୍ବୂଳ—ତାଙ୍କଠାରେ; ରାଧାଙ୍କୁ, ତାମ୍ବୂଳ ତାମ୍ବୂଳ ପାନ ଦେବା, ବସନ ସନମାନ—ବସ୍ତ୍ରରେ ଲୁଗା ଯୋଗାଇବା । ବୁଝସନମାନ—(ସମ୍ମାନ) ଦେଖାଇବା । ମାନବର ବ୍ରତଫଳକୁ ସେ ଗଣିବା (ମଣିବା)—ମନୁଷ୍ୟର ବ୍ରତାଦିର ଫଳ ସ୍ୱରୂପ ତାଙ୍କର ସେବାକରିବା ।

୯ । ମାନବତୀ—ଅଭିମାନବତୀ ରାଧାର । ବଢ଼ଣ ଦ୍ୱିଗୁଣ ଭଙ୍ଗିମାନ—ଚଉଷଠି କେଳିକଳା । ଯୋଗେଭଙ୍ଗୀଙ୍କ—ଯୋଗୀମାନଙ୍କର ଅର୍ଥାତ୍ ସନକ, ସନାତନ ପ୍ରଭୃତିଙ୍କର ଯୋଗକୁ ଭଙ୍ଗି ପକାଇବ ଏପରିଭାବ ଦେଇ । ତାର କଙ୍କିଣୀର କଣିକଣି ଶବ୍ଦ । ବକର ପର—ଶ୍ରୀକୃଷ୍ଣ । ପରମାଦ—ଦୁଃଖ । କର କରଜ—ହାତନଖ । ଧିକ୍କାର—ରାଧିକାଙ୍କ ଗାଳି । "ଅପରାଧୀ—ଦୋଷୀ, ଯା ଯା—ଦୂର ହୁଅ" । ଶୁଣିଲେ କାରଣ ହେବ—କୃତାର୍ଥ ହେବ ।

୧୦ । କରୁଣାନଧିରେ—କରୁଣାରେ ଦୟାରେ ସମୁଦ୍ରସ୍ୱରୂପା ରାଧା । ଧୀରେ—ଆସ୍ତେ । ମଧୁକାଷିଣୀର—ସୁନ୍ଦରୀ ରାଧାର । ସନମତ—ଅଙ୍ଗୀକାର କଲେ ।

Digitized by srujanika@gmail.com

ସ୍ତବ ସ୍ତବନ ବନଜବଦନୀର ନିରତେ କର ଏପରି ।
ବାତୁଳ ତୁଳ ହେବାରେ ବାରେ ସଖୀ ଶଙ୍ଖାବ୍ଜ ବୋଧ କରି ।
ମିତ ହେ । କାମ କାମନା ପୂରିବ ।
ଅଶିବ ଶିବ ହେଲ୍ସ ଦୂତୀ ଭୂଷିବ ଶିବପର ହୁଟିପିବ । ୧୧ ।
ସୁରନାଗରୀ ଗରବମାନ ସତ ମାନସ ରୁ ଟଳିଯିବ ।
ନାଗରମଣିକି ନାଗରମଣୀ କି ମଣି ହେଉ ନ ପୂଛିବ ।
ମିତ ହେ । ସୁନ୍ଦର ଦରଶନରେ ।
ମାନବୀ କି ବାର୍ତ୍ତା ମାନ ମାନସର ସରକିବେ ସ୍ତ୍ରୀକ ଖରେ । ୧୨ ।
ଉମା ରମାର ମାର ମାରଣରେ ତ ଧୀ-ର ଧୀର ଦୂର ହେବ ।
ଶଚୀ ତ ଶତ୍ରୁର ଭରସ୍ତ ଲଜ୍ଜା ବଶ ରତ ଯାଉ ହେବ ।
ମିତ ହେ । ଶ୍ରୀନ ଧ୍ୱନାରେ ନା-ରେ ।
ଇନ୍ଦ୍ରାଣୀ ଇନ୍ଦ୍ରାଣୀଭବର ବାରଧନ ଧନ ଚେଷ୍ଟେ ହେବେ ଖରେ । ୧୩ ।

---

ବିବସନ—ରାଧାଙ୍କ ଉଲଗ୍ନ ଅବସ୍ଥା । ନିରତ—ସର୍ବଦା । ରାଧା ଭୂଷିବ—କହିବ । ବର ବରଦର ଶବର—ଉତ୍କୃଷ୍ଟ ବରଦାତା ଶବର କି ସ୍ତନର ଦରଶନ କରିପାରୁ—ଦର୍ଶନ କରିପାରିବୁ ବା ବରଦର—ବଡ଼ଭାଗ୍ୟ କଥା । ଶବର ବର ହେଲେ ଦରଶନ କରିପାରିବୁ ବା ବରଦର ଶବର ବରରେ ଦରଶନ କରି ପାରିଲ ଅର୍ଥାତ୍ ଶବରୂପ ସ୍ତନର ସେବାକଲେ ଏହା ଦେଖି ପାରିଲ ।

୧୧ । ବନଜବଦନୀର—ପଦ୍ମମୁଖୀ ରାଧାର, ନିରତେ—ସର୍ବଦା । ସ୍ତବ ସ୍ତବନ କର—ବହୁତ ଶ୍ଳାଘା କର । ବାତୁଳ ତୁଳ ହେବାରେ—ପାଗଳଙ୍କ ସଙ୍ଗେ ସମାନ ହେବାରୁ; ବାରେ—ଥରେ । ଶଙ୍ଖାବ୍ଜ—କୃଷ୍ଣଙ୍କୁ । କାମ କାମନା—କାମଇଚ୍ଛା । ଦୂତୀ ଅଶିବ—ଶିବ (ମଙ୍ଗଳ) ହେଲ୍ସ ଭୂଷିବ । ଶିବପର—କାମଦେବ ।

୧୨ । ସୁରନାଗରୀ—ରମ୍ଭା, ମେନକା, ଉର୍ବଶୀ, ଶଚୀ ପ୍ରଭୃତିଙ୍କ ମାନସ ଗର୍ବମାନ—ମନର ବଡ଼ ଠେକପଣ, ସତ—ନିଶ୍ଚୟ, ଟଳିଯିବ—ଦୂରିଯିବ—ଦୂରହେବ । ନାଗରମଣିକି—ନାଗରଶ୍ରେଷ୍ଠ ରାଧାକୁ—ନାଗରମଣୀମାନେ ମଣି—ରତ୍ନ ହେଉ ନ ପୂଛିବକି—ନିଶ୍ଚୟ ପୂଜିବ । ମାନବୀ କି—ନାରୀ କଥା କଣ କହିବା । ଖରେ—ଅତିଶୀଘ୍ର, ମାନସର ମାନବନ୍ତ—ମନର ବଡ଼ପଣ ଛାଡ଼ିଦେଇ—ସ୍ତ୍ରୀକ ସରକିବେ ।

୧୩ । ଉମା—ପାର୍ବତୀଙ୍କର । ରମାର—ଲକ୍ଷ୍ମୀଙ୍କର । ମାର ମାରଣରେ—କନ୍ଦର୍ପ ବାଧାରେ । ଧୀର-ବୁଦ୍ଧିର, ଧୀର—ଧୈର୍ଯ୍ୟ, ଦୂର ହେବ ଅର୍ଥାତ୍ ସେମାନେ

Digitized by srujanika@gmail.com

ଟେଡାର ଛଳ ଛଳଣ କୁଳବଧୂ ବନ୍ଧୁ ରସିକପଣେ ।
ଧ୍ରୁବ ଧ୍ରୁବଲୋକ ଲୋକ ଲୋକନରେ ଦାସ ହେବେ ନାରୀଗଣେ ।
ମିତ ହେ । ଦର୍ପ ଦର୍ପକର ଲୋଚନ ।
ଦରଶନ ସନକାଦ ଜନ ଜନକାଦ ଭୁଲିବେ ଯୁଗତେ । ୧୪ ।
ଏ ବାଧିରେ ଧୀରେନ୍ଦ୍ରଙ୍କୁ ସଖା ବୋଧି ବୋଧିଦ୍ରୁମ ତଳେ ବସି ।
ପ୍ରେମଅବାଧିକା ବାଧିକା ଉଦନ୍ତ ଦାଣ୍ଡ ଦଳ ହୃଷ୍ଟା ଅସି ।
ବୋଇଲ । ହେ ବାଧୁ ବାଧୂର ଚେଜ ।
ବଣ ବାସନ୍ତପଞ୍ଚବାଧବା ଧରଣୀଶ ସୁତା ଚଳ ଅଜ । ୧୫ ।

---

ଷୈର୍ଯ୍ୟଧର ରକ୍ଷପାରବେ ନାହିଁ । ଶଚୀ ଇନ୍ଦ୍ରଙ୍କ ସ୍ତ୍ରୀ । ଚନ୍ତର—ମନରେ । ତରସ୍ତ ଲଭବ—ବସ୍ତୁ ପାଇବ । ରତ—କେଳନ । ଆଶଙ୍କନ୍ତ ରତ—କାମ କେଳଦେବ । ହେ ମିତ—ହେ କୃଷ୍ଣ । ତରୁଣୀ—ନବୀନା ସ୍ତ୍ରୀମାନେ ନାଁରେ—ତୁମ୍ଭନାମ ଶୁଣି । ଭାବ—କାମଭାବ, ଭାବନା କଷ୍ଟ । ଖରେ—ଶୀଘ୍ରରେ । ଧନଲୋଭେ—ଧନରୂପକ ତୁମ୍ଭଙ୍କୁ ପାଇବା ପାଇଁ, ଭାବରେ ବରଧନରେ ଭଣୀହେବେ—ତୁମ୍ଭଙ୍କୁ ବଶେଷ ଭାବରେ ଭାବିଲେ ସୁଧା ପାଇବେ ନାହିଁ ।

୧୪ । ଛଳଣ କୁଳବଧୂମାନେ—ଛଳଣପାଟଙ୍କ କୁଳସ୍ତ୍ରୀମାନେ, ତୁମ୍ଭର ବନ୍ଧୁକୁ—ପ୍ରୀତିଲଭ ରସିକପଣେ—ରସିକମୀରେ ଛାଡି ଦେଖାଇବେ । ଧ୍ରୁବଲୋକ ଲୋକ ନାରୀଗଣେ—ଧ୍ରୁବଲୋକରେ ଥିବା ଲୋକଙ୍କ ନାରୀମାନେ । ତୁମ୍ଭ ଲୋକନରେ—ତୁମ୍ଭଙ୍କୁ ଦେଖି । ଦାସହେବେ—ଦାସୀ ହେବେ । ଧ୍ରୁବ—ନିଶ୍ଚୟ । ହେ କୃଷ୍ଣ, ଦର୍ପକର - କନ୍ଦର୍ପର । ଦର୍ପ—ଅପମାନ । ସନକାଦଜନେ—ସନକ, ସନାତନ, ସନନ୍ଦନ ପ୍ରଭୃତି ଋଷିମାନେ । ଜନକାଦ— ଜନକ ପ୍ରଭୃତି ରାଜର୍ଷି ଓ ଦେବର୍ଷିମାନେ । ଦରଶନେ—ତୁମ୍ଭ ରୂପ ଦେଖି । ଯୁଗତେ—ଠିକ୍, ନିଶ୍ଚୟ । ଭୁଲିବେ—ଭୁଲିଯିବେ । (ସ୍ତ୍ରୀରୂପକୁ ପାଇ କୃଷ୍ଣଙ୍କ ସଙ୍ଗେ କ୍ରୀଡା କରନ୍ତୁ) ଏହା ଲୋଡିବେ ।

୧୫ । ସଖା—ମଧୁମଙ୍ଗଳ । ଏ ବାଧିରେ —ଏପ୍ରକାରରେ । ଧୀରେନ୍ଦ୍ରଙ୍କୁ— ଧୀର ଶ୍ରେଷ୍ଠଙ୍କୁ । ବୋଧିଦ୍ରୁମ ତଳେ—ଅଶ୍ୱତ୍ଥ ଗଛମୂଳେ ବସି, ବୋଧି—ବୁଝାଇ ବୁଝାଉ ପ୍ରେମ ଅବାଧିକା—ପ୍ରେମବଶ ବାଧାର, ଉଦନ୍ତ—କଥା । ହେ ବାଧୁ—ହେ କୃଷ୍ଣଚନ୍ଦ୍ର । ବାଧୂର - ଦୁଃଖ । ଚେଜ— ଛାଡ । ବାସନ୍ତପଞ୍ଚବାଧବା—ବସନ୍ତ କାଳର କାଅଁଳପରି ପଞ୍ଚ ଓଠ ଯାହାର, ଏପରି ଯେ ଧରଣୀଶ ସୁତା—ବୃଷଭାନୁ ରାଜକେମା ରାଧାଙ୍କୁ ଅଜ, ଚଳ ବଳ—ଅଙ୍ଗ ଦାର କରାଇଲ ।

Digitized by srujanika@gmail.com

ଅଲେଖ ଲେଖପଦ ପଦତଳରେ ଲେଖି ଲେଖ ପ୍ରାପ୍ତି ହେବ ।
ଜୀବନ୍ତ ରତିପତିର ଉଦ୍ଧୃତ ପତାକାକୁ ଉଡ଼ାଇବ ।
ଗୋବିନ୍ଦ । ହରଷ ରସ ଶୁଣିଲେ ।
ବାହାର ହାର କରୁ କରିଗମନା ମନାଇଲ୍ଲ ଜନେ ଦେଖିଲେ । ୧୬ ।
ପାଇ ପରସାଦ ସାଦର ସନ୍ତୋଷେ ତ୍ରିବର୍ଗଦାତାଙ୍କର ।
ଭଣିଲ ଗିର ପରଗୂଢ଼ଗୂଢ଼କ ହୋଇ କଲ୍ପ ଚିତ୍ତହାର ।
ନାଗର । କଲ୍ପ କଳ୍ପଲତା ଶୁଣି ।
ନିରତ ରତରତନକୁ ନିଦାନ ଦାନ ଦେବ ହେବ ଋଣୀ । ୧୭ ।
ଶେଷେ ସେ ବାରିଜାନନୀ ତ ନିଷ୍ଟ ଏ କଣ୍ଠତଟାଗ୍ରେ ଭରି ।
ମୁକତି ବଳିତ ପ୍ରିୟ ଜୀବନ୍ତରେ ଦିନା ପ୍ରକାଶିଲେ ହରି ।
ଦୂତ ଗୋ । ସୁଅଙ୍ଗୀ ଅଙ୍ଗୀକାରରେ ।
ଜୀବନ ବନଜମୁଖୀଙ୍କ ମୁହିଁ କି ବିକୁଥିବ ଜନ୍ମାନ୍ତରେ । ୧୮ ।

---

୧୬ । ଅଲେଖ—ଅଦ୍ଭୁତ । ଲେଖପଦ—ସ୍ୱର୍ଗସୁଖ । ପଦତଳରେ—ତୁମ୍ଭ ଗୋଡ଼ତଳରେ । ଲେଖ—ଚିତ୍ରାଙ୍କ ଲେଖା । ପ୍ରାପ୍ତି ହେବ—ପାଇବ । ( ମୋ ହାତରେ ଚିତ୍ରାଙ୍କ ଦିଅ ଗୋଡ଼ତଳରେ ତୁମ୍ଭର ବିପୁଳ ସ୍ୱର୍ଗସୁଖ ମିଳିବ ) । ରତିପତିର ଉଦ୍ଧୃତ ଜୟ ପତାକାକୁ—କନ୍ଦର୍ପକୁ ଜିଣି ଜୟ ପତାକାକୁ ଜଗତରେ ପ୍ରକାଶ କରିବ । ଗୋବିନ୍ଦ—କୃଷ୍ଣ । ରସ—ରସକଥା । ହରଷ—ଆନନ୍ଦ । କରିଗମନା ମନାଇଲ ଜନେ—ରାଧାକୁ ମନାଇବା, ଜନ - ଦୂତୀ ।

୧୭ । ତ୍ରିବର୍ଗଦାତାଙ୍କର—ଧର୍ମାର୍ଥକାମମୋକ୍ଷଦାତା କୃଷ୍ଣଙ୍କର, ସାଦର—ସ୍ନେହପୂର୍ବକ ପ୍ରସାଦ ମାଳ ରୂପକ ଅନୁଗ୍ରହ । ସନ୍ତୋଷେ—ହୃଷ୍ଟ । ଭଣିଲ ଗିର—ପଦ୍ମହାସ ବଚନ । ପରଗୂଢ଼ଗୂଢ଼କ—ପ୍ରଗୂଢ଼ ଭାବ । ଚିତ୍ତହର କଲ୍ପ—କୃଷ୍ଣଙ୍କ ଚିତ୍ତକୁ ହରଣ କଲା । ନାଗର—ହେ କୃଷ୍ଣ । କଳ୍ପଲତା—କଳ୍ପ—ଇଚ୍ଛାପ୍ରଦ ଲତା ସ୍ୱରୂପା ରାଧା । କଲ୍ପ—ବସ୍ତ୍ର । ଶୁଣି—ଶୁଣିକି । ନିରତ—ସବୁବେଳେ. ରତ—ସୁରତରୂପ ରତନକୁ ନିଦାନ—ନିଶ୍ଚୟ ଦାନ ଦେବ । ଋଣୀ ହେବ—ଶୁଝିପାରିବ ନାହିଁ ।

୧୮ । ବାରିଜାନନୀଙ୍କ—ପଦ୍ମମୁଖୀ ରାଧାଙ୍କୁ । କଣ୍ଠତଟାଗ୍ରେ—କଣ୍ଠପଟରେ, ନିରନ୍ତ—ନିଶ୍ଚିନ୍ତ । ଜୀବନ୍ତରେ—ଜୀବ ଥାଉଁ ଥାଉଁ, ଜୀବିତାବସ୍ଥାରେ । ମୁକତି ବଳିତ—ମୋକ୍ଷ ପ୍ରାପ୍ତିକୁ । ହରି—କୃଷ୍ଣ । ଦୂତ ଆଗରେ ପ୍ରକାଶିଲେ । ସୁଅଙ୍ଗୀ—ରାଧା । ଅଙ୍ଗୀକାରରେ—ଅନୁମତିରେ । ବନଜମୁଖୀଙ୍କ—ପଦ୍ମମୁଖୀଙ୍କ, ମୁହିଁ କି ଜନ୍ମାନ୍ତରେ—ଅନ୍ୟ ଜନ୍ମରେ ଜୀବନ ପ୍ରାଣ ବିକୁଥିବ ଅର୍ଥାତ୍ ଇହଜନ୍ମରେ ଶୁଝି ନ ପାରିଲେ ତା ଅନୁମତିରେ ଜୀବନ ଆଉ ଜନ୍ମ ପର୍ଯ୍ୟନ୍ତ ବିକିଦେବି ।

Digitized by srujanika@gmail.com

ହୃଣୀ ଉଦ୍‌ଭବ ତରସ୍ତ ହର ହର ଲେଖ ବଚନ କର ।
ପାଉ ସାହା ଉତ୍ତମାର ମାର ପାଉ ମାରଣାକୁ ତତପର ।
ଏମନ୍ତ । ଶ୍ରବଣେ ଶ୍ରବଣେ ହର ।
ଭୂଷା ସ୍ୱ-ଶାତକୁମ୍ଭ-କୁମ୍ଭସ୍ତନୀକି ଦେଲା କି ମିତେ ପଚାରି । ୧୯ ।
ମଧୁମଙ୍ଗଳ ମଙ୍ଗଳ ପ୍ରକାଶିଲ ସିତହାସୀ ତ ସିଦ୍ଧାଣୀ ।
ମୁଦ ମୁଦପଠନରୁ ନ ରୁଚେଣ୍ଟି ଚେଟୀ ଭଙ୍ଗିଦେବେ ଜାଣି ।
ମିତ ହେ । ବାଣୀ ବାଣୀସ୍ଥିତ ଯାର ।
ସଙ୍ଗୀ ସଙ୍ଗୀତବିଦଙ୍କୁ କି ବଶୁର ଗୃହକୁ ନେବେ ପଶୁର । ୨୦ ।
ଭାବ ଭାବନା ସନ୍ନିଧିଙ୍କ ଧୀ-କାଉଁବନ୍ତ ଭାଷା ଲେଖି ଦେଲେ ।
ପଞ୍ଚାଶ୍ରୀ ଗୃହମୁଖ ହୁଅ ସୁମୁଖ ମୁଖରେ କହିବାର ଚଳେ ।
ସେ କାଳେ । ମାଧବ ମାଧବ ଭାଷେ ।
ଶ୍ରୁତି ଶ୍ରୁତିକି କି ସୁଖ ଦେବ ଦେବଈଶ ପେନ୍ଦାଇଲ ଏ ପଦେଶ । ୨୧ ।

---

୧୯ । ହୃଣୀ ଉଦ୍‌ଭବ—କନ୍ଦର୍ପ, ଦେ ନନ୍ଦ, ତରସ୍ତ—ବସ୍ତ୍ର, ହର—ଛିଣ୍ଡ, ଲେଖ—ଉଠାଅ । ବଚନକର—ଲେଖ । ଉତ୍ତମାର—ରାଧାର । ସାହା ପାଉ—ସହାୟ ପାଇ । ମାରମାରଣାକୁ—ମାର ଖଣ୍ଡନକୁ ବା ମାର ବାଧାକୁ, ତତ୍ପର ହୋଇ—ଉଦ୍‌ଯୋଗୀ ହୋଇ, ମାର—ନାଶକର । ଶ୍ରବଣରେ—କର୍ଣ୍ଣରେ, ଶ୍ରବଣେ—ଶୁଣି । ସ୍ୱ-ଶାତକୁମ୍ଭ-କୁମ୍ଭସ୍ତନୀକି—କାନ୍ତରେ ସୁବର୍ଣ୍ଣଘଟସ୍ତନୀ ରାଧାକୁ ଭୂଷାଦେବା କି । ମିତେ—ମଧୁମଙ୍ଗଳକୁ, ପଚାରିଲେ । ପାଉ ସାହା ସାହା ଉତ୍ତମାର ମାର ମାରଣାକୁ ତତ୍ପର—ଏହି ପାଠ ଗ୍ରହଣ କଲେ ଉତ୍ତମା—ରାଧାର ସାହା—ସାହାଯ୍ୟ, ସାହା ପାଉ—ଅବଲମ୍ବନ କରି, ମାର ମାରଣାକୁ—ମାର ବାଧାକୁ, ତତ୍ପର ହୁଅ—ବାଧା ଦେବାରେ ଉଦ୍‌ଯୋଗୀ ହୁଅ ।

୨୦ । ମଧୁମଙ୍ଗଳ, ମଙ୍ଗଳ - ଭଲ ହେବ = ବୋଲି ପ୍ରକାଶିତ—ପ୍ରକାଶ କଲେ । ସିତହାସୀ—ଶ୍ୱେତହାସିନୀ ରାଧା ତ ସିଦ୍ଧାଣୀ—ସ୍ୱୟଂ ତପସ୍ୱୀ । ମୁଦପଠନରୁ—ଉଠି ପଢ଼ିବାରୁ, ମୁଦ—ଆନନ୍ଦ, ନ ରୁଚେଣ୍ଟି—ରୁଚିକର ହେବ ନାହିଁ । ଏହା ଜାଣି ଚେଟୀ—ଦାସୀ, ମୁଦ ଭଙ୍ଗି ଦେବେ - ଉଠି ଖୋଲିଦେବେ । ହେ ମିତ ଯେଉଁ ରାଧାର ବାଣୀ ବଚନରେ ବାଣୀ—ସରସ୍ୱତୀ ସ୍ଥିତ ରହି ଅଛନ୍ତି, ବଶୁର—ବଶୁର କର । ସଙ୍ଗୀ ସଖୀଙ୍କୁ—ହୃଦୟକୁ ପଶୁର ସଙ୍ଗୀତବିଦଙ୍କୁ ଗୃହକୁ ନେବେ କି—ରାଧାଙ୍କ ନିକଟକୁ ଉଠାଇ ନେଇ ଯିବେ କି ?

୨୧ । ଧୀ—କାଉଁବନ୍ତ—ବୁଦ୍ଧିରେ ଯଶସ୍ୱୀ । ଭାବ—ବଶୁର । ଭାବନା—ଉତ୍କଣ୍ଠା ଭାବନା ସ୍ତ୍ରୀ ରାଧାଙ୍କ ସନ୍ନିଧିକି—ସମୀପକୁ । ଗୃହମୁଖ—ବନ୍ଦୀ । ସୁମୁଖ

Digitized by srujanika@gmail.com

ଗ୍ରାସ ଅଣୀ ଅସି ଅବଶେ ବସେ ତ ଏମନ୍ତ ମତ ଶ୍ରୀଧର ।
ପ୍ରବଳ ବଳ ଭାବ ଧୀରେ ପ୍ରେମର ମରଦେ ଧୈର୍ଯ୍ୟ କୃଷ୍ଣର ।
ଅନ କେ । ପୀରତି ରତି ଚେତଶବ ।
ଅରମନ୍ତୁ ମନୁ ମନୁ ଗଲେ ନନ୍ଦନନ୍ଦନ ଭାବ ନ ଯିବ । ୨୨ ।

---

## ଚତୁଃପଞ୍ଚାଶତ୍ ଛାନ୍ଦ

## ଶ୍ରୀକଣ୍ଠୋତ୍କଣ୍ଠିତଙ୍କ ଶ୍ରୀରାମଙ୍କୁ ଶ୍ରୀକୃଷ୍ଣଙ୍କ ଚଟାଉ

### ରାଗ—ମଙ୍ଗଳବାଗେଶ୍ରୀ

ଶୁଣ ହେ ସୂଜନେ ଗୋବନ୍ଦ ଭାବନେ କଣ୍ଠୋତ୍କ ବସି ନିର୍ଜନେ ।
ଛନ ଛନ ମନ ଘନ ଘନ ଶ୍ୱାସ ଅଶା ହୃତା ଅଗମନେ ।
ନେତ୍ର ହୋଉଛୁ ଚପ । ପ୍ରାତଭୂଚ୍ଛିତ ରଥାଙ୍ଗୀ
ହୃତାଙ୍କ ଦୂତାସ୍ତା ମଣି ଚନ୍ଦ୍ର ସ୍ନେହେ ଚତ୍ୱରେଭୋଜନୁରାଗୀ । ୧ ।

---

ସ୍ବସ୍ଥ—ଅନୁକୂଳ ସ୍ବସ୍ଥ—ଶୁଭକର । ସଙ୍କାଶ—ଦୂତ । ମାଧବ—କୃଷ୍ଣ । ମାଧବ—ଜଗନ୍ନାଥ (ଅନୁକୂଳ କଲାବେଳେ ଦୁର୍ଗାମାଧବ ନାମ ଉଚ୍ଚାରଣ କରନ୍ତି—ଏଠାରେ ଶୃଙ୍ଖଳା ଅନୁରୋଧରେ କେବଳ ମାଧବ ଶବ୍ଦ ପ୍ରଯୁକ୍ତ) ଶ୍ରୁତିକ—ରାଧା କର୍ଣ୍ଣକୁ । ଶ୍ରୁତି—ଏ ଉଠିରେ ଶୁଣାଣି, ଏହି ଅତେଣ—ଏହି ଅଶା ପ୍ରାପ୍ତିରେ । ଦେବକୀଙ୍କ—କୃଷ୍ଣ । ଦୋହଳଲେ—ବଗୃହଲେ ।

୨୨ । ଅଣୀ—ସର୍ପ । ଗ୍ରାସ—ଖାଦ୍ୟପଦାର୍ଥ ଅର୍ଥାତ୍ ସାପର ଖାଦ୍ୟପଦାର୍ଥ, ଭେକ ଅସି ଅବଶେ-ନିଶ୍ଚେଷ୍ଟରେ ଜଡଭାବରେ ବସିଲା ପରି ( ସର୍ପ ଆଗରେ ବା ସର୍ପ ତୁଣ୍ଡରୁ ଖସି ) ଶ୍ରୀଧର ଏମନ୍ତ ମତ—ଶ୍ରୀକୃଷ୍ଣ ଏହିପରି ବସି ରହିଲେ । ପ୍ରେମର ଭାବ ଧୀରେ—ବୁଦ୍ଧିରେ ପ୍ରବଳ ବଳ ହେବାରୁ—ବେଗ ବଢ଼ିବାରୁ କୃଷ୍ଣଙ୍କ ଧୈର୍ଯ୍ୟ, ମରଦେ—ଦଳଦେଲା । ଅନ କେ—ଆଉ କିଏ; ପ୍ରୀତି ଓ ରତି ଛାଡ଼ପାରିବ । ମନଗଲେ—କେତେ ମନ୍ୱନ୍ତର ଗଲେ ସୁଦ୍ଧା ଅରମନ୍ୟୁ କବର ମନରୁ ନନ୍ଦନନ୍ଦନ ଭାବ—ଶ୍ରୀକୃଷ୍ଣଙ୍କଠାରେ ଭକ୍ତି, ନ ଯିବ—ଛାଡ଼ିହେବ ନାହିଁ ।

---

୧ । ଗୋବନ୍ଦ ଭାବନେ—କୃଷ୍ଣଙ୍କ ଚିନ୍ତାରେ । ଛନ ଛନ—ଉତ୍କଣ୍ଠିତ । ଶ୍ୱାସ—ନିଶ୍ୱାସ । ଘନ ଘନ—ବାରମ୍ବାର । ଅଗମନେ—ଆସିବାରେ । ଅଶା—ଶ୍ରଦ୍ଧା କରୁଥିବାରୁ । ନେତ୍ର—ରାଧାଙ୍କ ଅକ୍ଷି । ପ୍ରାତଭୂଚ୍ଛିତ—ସକାଳକୁ ଅପେକ୍ଷାରେ ଇଚ୍ଛା କରୁଥିବା ଚକ୍ରବାକ ପରି ଉତ୍କଣ୍ଠିତ ହୋଇଅଛି । ରଥାଙ୍ଗୀ—ଚକ୍ରବାକ

Digitized by srujanika@gmail.com

( ନକ୍ଷତ୍ର ଲକ୍ଷଣା ଉପମା )

ଏମନ୍ତ ସମୟେ ସୁଭାଗ୍ୟ ଉଦୟେ ଦୂତୀକା ପ୍ରବେଶ ହେଲା ।
ବଦନ ପ୍ରସନ୍ନାମୃତ ପାଇ ରାଧା ଆଶାତରୁ ପଲ୍ଲବିଲା ।
ଜୀବ ଜାଗିଲା ଯେ । ସଙ୍ଗେ ସ୍ନେହାତୁର ଯେନ

( ନୀଚ ଲକ୍ଷଣା )

କାର୍ଯ୍ୟସିଦ୍ଧ କଲା ଦୂତୀ ବୋଲି ଦେଲା ଭାଷା ମୃତସଞ୍ଜୀବନୀ । ୨ ।

( ଅଶସ୍ତ ଲକ୍ଷଣା )

ଦୂତୀ ମୁଦ ଦେଲା ନାହିଁ ମୁଦ ଦେଲା ଏମନ୍ତ ପରତେ ହେଲା ।
ଲେଖରେ ଅଲେଖ ସୁଖ ଗୃହମୁଖ ଲେଖନ କରୁ କି ଦେଲା ।
ଲାଜ ଅଇଲା ଯେ । ସ୍ନେହ ମର୍ଯ୍ୟାଦାକୁ ଯେନ ।
ଉରାଞ୍ଚଳ ଦେଶା କରୁ ଅଞ୍ଜଳିକି ପାଏଡ଼ା ପାଡ଼ିଲା ଧନୀ । ୩ ।

---

( ରାତ୍ରରେ ଚକ୍ରବାକ ଓ ଚକ୍ରବାକୀର ବିରହ ଏବଂ ସକାଳେ ମିଳନ ହୁଏ ) । ଚକୋର ପକ୍ଷୀ ଚନ୍ଦ୍ର ସ୍ନେହରେ ଅନୁରାଗୀ ହେଲାପରି ରାଧାଙ୍କ ଉକ୍ତରୂପ ଚକୋର ଦୂତୀକୁ ଦ୍ୱିତୀୟ ଚନ୍ଦ୍ରମଣି ସ୍ନେହରେ ଅନୁରାଗୀ—ପ୍ରେମଯୁକ୍ତ ।

୨ । ସୁଭାଗ୍ୟ ଉଦୟେ—ସୁନ୍ଦର ଅନୁରାଧା ନକ୍ଷତ୍ର ଉଦୟ, ଏମନ୍ତ ସମୟରେ ଦୂତିକା ପହଞ୍ଚିଲା । ବଦନ ପ୍ରସନ୍ନ—ପ୍ରଫୁଲ୍ଲମୁଖ ପ୍ରସନ୍ନ ( ହର୍ଷଲତା ) ରୂପ ଅମୃତ—ଜଳପାଇ ରାଧାର ଆଶାତରୁ ପଲ୍ଲବିଲା—କଅଁଳିଲା ଅର୍ଥାତ୍ ରାଧାଙ୍କ ସୁଭାଗ୍ୟ ଉଦୟ ହେବାରୁ କୃଷ୍ଣଙ୍କ ସ୍ୱୀକାରରେ ଦୂତୀର ହୃଷ୍ଟମୁଖରୂପ ଜଳ ପାଇ ରାଧାଙ୍କ ଆଶାରୂପ ତରୁ କଅଁଳିଲା । ଦୂତୀର ହରଷ ମୁଖରୁ କୃଷ୍ଣ ସ୍ୱୀକାର ଜାଣି ରାଧାଙ୍କର ଆଶା ବୃଦ୍ଧି ହେଲା । ଜୀବ—ପ୍ରାଣ, ସଙ୍ଗେ ସ୍ନେହ ଆତୁର—ସ୍ନେହରେ ବ୍ୟାକୁଳତା ଯେନ, ଜାଗିଲା—ଜାଗିଉଠିଲା, ଚେତ ଉଠିଲା । ଦୂତୀ କାର୍ଯ୍ୟ ସିଦ୍ଧ କଲା—କୃଷ୍ଣଙ୍କୁ ସ୍ୱୀକୃତ କରାଇଲା, ବୋଲି କହି ଭାଷା ଦେଲା—କୃଷ୍ଣଙ୍କ ଉତ୍ତର ଦେଲା ; ସେ ଉତ୍ତର ନୁହେଁ କିନ୍ତୁ ରାଧାଙ୍କ ଜୀବନ କୃଷ୍ଣ ବିରହରେ ଯାଉଥିଲା ; ମୃତ ସଞ୍ଜୀବନୀ—ମରଣରୁ ଜୀଆଁଇବା ଔଷଧ ହେଲା । ଏହି ପଦରେ ଅନୁରାଧା ନକ୍ଷତ୍ର ଉଦୟରେ ଦୂତୀର ପ୍ରବେଶ ଓ ପରସ୍ତ୍ରୀ ଓ ପରପୁରୁଷ ମେଳନରେ ଦୂତୀଦ୍ୱାରା ଘଟି ଦଅଇବା—ନକ୍ଷତ୍ର ଓ ନୀଚ ଲକ୍ଷଣାଲଙ୍କାର ହେଲା ।

୩ । ମୁଦ—ଉଠାଉ । ମୁଦ—ଆନନ୍ଦ । ପରତେ—ବିଶ୍ୱାସ । ଗୃହମୁଖ—ବ୍ରହ୍ମା । ଲେଖରେ—ଭାଷାରେ । ଅଲେଖ—ଅସଂଖ୍ୟ । ଲେଖନ କରୁ କି ଦେଲା—ଲେଖିଦେଲା କି ? ସ୍ନେହ—ପ୍ରୀତି । ମର୍ଯ୍ୟାଦା—କୁଳଧର୍ମ । ଉରାଞ୍ଚଳ—ଛାତିଲୁଗା । କର ଅଞ୍ଜଳିକ—ହାତଅଞ୍ଜୁଳାକୁ । ପାଏଡ଼ା—ପାହାଡ଼ା ତଳେ ପରି ହେବା ଲୁଗା

କରଗତ ଅଛି ହେଲେ ଶଶୀ ଭ୍ରମିଲ ନେତ୍ର ନିର୍ଦ୍ଧିଲ ଭଲା ।
ଆନନ୍ଦ କ୍ଷୀରସାଗର ବଢ଼ି ଧୀର ଧୈର୍ଯ୍ୟତଟ ନ ରଖିଲା ।
ଚିନ୍ତାତାମସ ଯେ । ପଳାଇଗଲା ଉଚ୍ଛନ୍ନେ ।
ହୃଦକୁମୁଦ ପ୍ରମୁଦ ହେଲା ଦିନ-ତାପ ନ ରହିଲା ମନେ । ୪ ।

( ରୂପକାଶ୍ରିତ ଶ୍ଳେଷ )

ତରଳତର ନୟନ ତରତର ଶ୍ୱୈର ପରତୀତ ହୋଏ ।
ବର୍ଣ୍ଣାବଳି ସିଦ୍ଧି ନିଧି ଲଭିବାକୁ ବାଞ୍ଛିର ଖୋଜେ ଉପାୟେ ।
ମନ ଗ୍ରୀଷ୍ମକ ଯେ । ମୁଦ ଘନରସେ ଲେଖି ।
କୃତ ମୁକୁଳଫଳ ଧନ୍ୟ ହୋଇଲା କର ମୋକ୍ଷପଦ ଲଭି । ୫ ।

---

ପାଡ଼ିଲା—ପକାଇଲା । ଯେ ମୁଦ ତୁଷ୍ଟି ରାଧାଙ୍କୁ ଦେଲା ସେ ମୁଦ ଆନନ୍ଦ ଦେଲା—ସେ ଲେଖାରେ—ଅକ୍ଷରରେ ବ୍ରହ୍ମା ବକ୍ଷ୍ୟଶେଖ ଲେଖି ଦେଲା ନ—ଅଶୟୁ ଲକ୍ଷଣା ହେଲା

୪ । କରଗତ ..ଶଶୀ—ଚନ୍ଦ୍ର ହାତମୁଠାରେ ରହିଲା । ଭ୍ରମିଲ—ଭ୍ରମଣ କଲା । ନିର୍ଦ୍ଧିଳ—ବୈଠିକଲା—ଭ୍ରମଟାକୁ ନଦେଖି ଗୃହିଲା । ଧୀର—ବୁଦ୍ଧିର । ଧୈର୍ଯ୍ୟତଟ—ଧୀରତାରୂପ ସୀମା । ଆନନ୍ଦ କ୍ଷୀରସାଗର—ଆନନ୍ଦରୂପ କ୍ଷୀର ସମୁଦ୍ର, ଆନନ୍ଦ ଅତ୍ୟଧିକ ହେଲା । ଚିନ୍ତାତାମସ—ଚିନ୍ତା ରୂପ ଅନ୍ଧକାର । ଉଚ୍ଛନ୍ନେ—ବେଗାରି ହୋଇ—ବ୍ୟଗ୍ରରେ ଅର୍ଥାତ୍ ଆଉ ଚିନ୍ତା ରହିଲା ନାହିଁ । ହୃଦକୁମୁଦ—ହୃଦୟରୂପ କଇଁଫୁଲ ପ୍ରମୋଦ ବା ପ୍ରମୁଦ—ଆନନ୍ଦ ହେଲା, ଫୁଟିଲା । ଦିନତାପ—ଦୁଃଖପୀଡ଼ା । ଏ ପଦରେ ରୂପକରେ ଚନ୍ଦ୍ରକୁ ଆରୋପ କରିବାରେ ଆନନ୍ଦ କ୍ଷୀରସାଗର, ଧୈର୍ଯ୍ୟତଟ, ଚିନ୍ତା ଅନ୍ଧକାର, ହୃଦୟ କୁମୁଦ ହେଲା । ଦିନ ତାପ—ଦିବସରେ ସୂର୍ଯ୍ୟଙ୍କ ତାପ ଏ ପଦମାନଙ୍କରେ ଅଶୟୁ ଲଙ୍କାର ଫୁଟି । ଚନ୍ଦ୍ରଙ୍କ ଉଦୟରେ କ୍ଷୀର ସମୁଦ୍ର ବଢ଼େ, ଅନ୍ଧାର ନଷ୍ଟ ହୁଏ, କୁମୁଦ ଫୁଟେ, ଦିନର ତାପ ନଷ୍ଟହୁଏ ।

୫ । ତରଳତର ନୟନ—ରାଧାଙ୍କ ଅତି ଚଞ୍ଚଳ ଆଖି, ତରତର—ଚଗଚଗ । ଶ୍ୱୈର ପରତୀତ ହୁଏ—ଶ୍ୱୈର ରୂପ ଜଣାଯାଏ । ବର୍ଣ୍ଣାବଳି—ଗଠିର ଅକ୍ଷରସବୁ, ନିଧି—କୁବେରଙ୍କ ନବନିଧି (ମହାପଦ୍ମ, ପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, କୁନ୍ଦ, ନୀଳ, ଖର୍ବ) । ସିଦ୍ଧି—ଅଷ୍ଟବିଭୂତି ବା ଐଶ୍ୱର୍ଯ୍ୟ (ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ ଓ କାମାବସାୟିତା) ହେଲା । ତାକୁ ଲଭିବାକୁ ବାଞ୍ଛିର ଉପାୟେ—ଉପାୟମାନ ଖୋଜେ । ଶ୍ୱୈର ମଧ୍ୟ କଳା ଦେହରେ ବୋଳି ଅଞ୍ଜନ ଲଗାଇ ନିଧି—ଧନ ପାଇବାକୁ ଉପାୟ ଖୋଜେ । ମନରୂପକ ଗ୍ରୀଷ୍ମକ ମୁଦ ରୂପକ ଘନରସେ—ମେଘପାଣି ଓ ନବୀନ ଶୃଙ୍ଗାର

Digitized by srujanika@gmail.com

( ଉପମା ଅଳଙ୍କାର )

ମାନ୍ୟସ୍ନେହରେ ଶିରେ ଉରେ ଲଗାଇ ମୃଦେ ଦେଖି ବର୍ଣ୍ଣାବଳୀ ।
ସଞ୍ଚ ଘଞ୍ଚ ଘନ ବରଳ ଫରଳ ବର୍ତ୍ତୁଳ ମୁକ୍ତାମାଳୀ ।
ସବୁ ଶିଖର ଯେ । ସମସ୍ତେ ସମାନ ତହିଁ ।
ଥାଉ ଅଉ ଗୁଣ କହିଁ ବିଚକ୍ଷଣ ଚିପ ଦେବ ଦନ୍ତ ନାହିଁ । ୭ ।
ଉରଜର ମନୋହର ମାରଦର୍ପହର ଗୁଣାବଳୀ ଭଲି ।
ଶ୍ରୀ ଶ୍ରୀ ସଦାଶିବ ଚରଣେ ଶରଣ ପ୍ରଥମେ ଏ ବର୍ଣ୍ଣାବଳୀ ।
ତହୁଁ ଉତ୍ତରୁ ଯେ । ପଞ୍ଚ ଶ୍ରୀ ରଚନା କର ।
ଏ ଉତ୍ତରୁ ଗୁଣନିଧି ନାମସିଦ୍ଧି କି ଯତନେ ଛନ୍ଦ କର । ୭ ।

---

ରସରେ ଲେଖି । କୃତ ସୁକୃତଫଳେ—କଳ୍ପ ପୁଣ୍ୟବଳରୁ । କର—ହସ୍ତ ମୋକ୍ଷପଦଲର—ଛଟିପିଟାଇ ଧନ୍ୟଦେଲ । ନେତ୍ରରୂପକ ଚକୋର, ବର୍ଣ୍ଣାବଳ ସିଦ୍ଧି ରୂପକ ନିଧିଲୁ, ମନ ରୂପକ ଗୃତକ, ମୃଦ ଲୂପକ ଘନରମ ପ୍ରଭୃତିରେ ରୂପକାଳଙ୍କାର । ବର୍ଣ୍ଣାବଳ, ସିଦ୍ଧି, ନିଧି, ଘନରସ ମୋକ୍ଷପଦମାନଙ୍କରେ ଶୋଭାଳଙ୍କାର ଦେଲ ।

୭ । ମାନ୍ୟସ୍ନେହରେ ଶିରେ ଉରେ ଲଗାଇ—ସମ୍ମାନରେ ମସ୍ତକରେ ଓ ପ୍ରୀତିରେ ସ୍ତନରେ ଲଗାଇ । ମୃଦେ—ଛଟିରେ ବା ଅନନ୍ଦରେ । ବର୍ଣ୍ଣାବଳ—ଅକ୍ଷରସବୁ । ସଞ୍ଚ—ସୁନ୍ଦର । ଘଞ୍ଚ—ଗହଳ । ଘନ—ମାଝ, ନିବିଡ଼ (ତଫାତ ବା ବ୍ୟବଧାନ ନ ଥାଇ) ବରଳ—ଛଡ଼ାଛଡ଼ା । ଫରଳ—ସଫା । ବର୍ତ୍ତୁଳ—ଗୋଲ । ଅକ୍ଷର ମୁଣ୍ଡଗୁଡ଼ିକ ମୁକ୍ତାମାଳପର ଗୋଲ ଏବଂ ସମସ୍ତ ସମାନ । ସବୁଶିଖର—ସମସ୍ତଙ୍କ ଶିଖର—ମୁଣ୍ଡ ବା ଅଗ୍ରଭାଗ ସବୁ ସମାନ—ଅକ୍ଷର ସାନବଡ଼ ନାହିଁ । ଅଉ ଗୁଣ ଥାଉ···ଅଉ ଗୁଣ କଥା କଣ କହିବି । କେହିଁ ବିଚକ୍ଷଣ—ପଣ୍ଡିତ, ପ୍ରସିଦ୍ଧ ଲେଖକ । ଚିପ ଦେବ—ଲେଖିବାକୁ ଦାନ୍ତ ଚଳ ଇବ । ଅକ୍ଷରାବଳୀରେ ମୁକ୍ତାବଳୀର ଉପମା ଅଳଙ୍କାର ଦେଲ ।

୭ । ମନୋହର—ସୁନ୍ଦର । ମାର ଦର୍ପହର—କନ୍ଦର୍ପର ଦର୍ପକ ଦଳନେବା (ଶିବ ସଦୃଶ ଦେହରୁ) ଉରଜର—ସ୍ତନର ଗୁଣାବଳୀ (ମହାଦେବଙ୍କର ପଇ ଗୁଣାବଳୀ) ଶୋଭିଦ ଗୁଣସବୁ ଭଳି—ରାଧାଙ୍କ ସ୍ତନଦ୍ୱୟ ଶିବଙ୍କ ପରି ସୁନ୍ଦର, ଏହା ଭାବ ।ପ୍ରଥମେ—ପହିଲେ, ଆଦ୍ୟରେ । ଏ ବର୍ଣ୍ଣାବଳୀ—ଏହି ଅକ୍ଷର ସବୁ ଅଛି । ପଞ୍ଚ ଶ୍ରୀ ରଚନା କର—ପାଞ୍ଚୋଟି ଶ୍ରୀ ଲେଖି । ଏ ଉତ୍ତରୁ—ତାପରେ । ଗୁଣନିଧି—ଗୁଣର ଅଧାର, ଗୁଣିକେ—ଶ୍ରୀକୃଷ୍ଣ । ନାମ ସିଦ୍ଧି କି—ରାଧାଙ୍କ ନାମ ଯୋଜନାକୁ । ଯତନେ ଛନ୍ଦ କର—ପଦ୍ୟରେ ଲେଖିଅଛନ୍ତି । ରାଧାଙ୍କ ନାମ ପୂର୍ବରେ ପାଞ୍ଚଗୋଟି ଶ୍ରୀ ବସାଇଅଛନ୍ତି ।

Digitized by srujanika@gmail.com

ଅରେ ପ୍ରାଣବନ୍ଧୁ ଦୟାସିନ୍ଧୁ ପ୍ରେମଶୀଳା ସେବକବତ୍ସଳା ।
କାମକଳ୍ପଲତା ସ୍ନେହସୁଖଦାତା କାମାନ୍ଧ-ଡୋଳାପିତୁଳା ।
ବାନା ଉଡ଼ୁଛୁ ଯେ । ଦୀନଜନକୃତାର୍ଥିନୀ ।
ଗୁଣ ଶୁଣିଲ ଦିନୁ ବଶ ହୋଇଛନ୍ତି'କି ବୋଲି ଲେଖିବ ଧନ । ୮ ।
ଅତୁଳା ଡୋଳାପିତୁଳା ମୁଁ ବୋଲନ୍ତି ଦରଶନବାଧ ଅଛି ।
ଜନ ହେଲେ ଦୀନ ଧନଠାରେ ସନମାନ ତ ନ ଥାଇ କିଛି ।
ଭାଲଛଳକ ଯେ । ଛଳକେ ଲୋପକୁ ଯାଏ ।
ହୃଦୟେ ପଦକ ଗ୍ରୀବମଣିସ୍ରକ ଅନ୍ତରସ୍ତବକୁ ପାଏ । ୯ ।
ଉପମାମାନେ ଅପମାନେ ମଣ୍ଡଳେ ତାହାଙ୍କ କର ଲକ୍ଷିବ ।
କାନ୍ତିକି ଗୃହି କ୍ଷଣକାନ୍ତି କମ୍ପଇ ହୋଇ ଅଲକ୍ଷ ପ୍ରାଭବି ।
ଓଷ୍ଠ ଲୋକନେ ଯେ । ବିମ୍ବ ଭସ୍ମ ବାଲୋକନ ।
ନାସା ଲକ୍ଷାକୁ ହାରଣ ଶୁକ ସାଗ୍ରି କାନନେ କଲେ ସଦନ । ୧୦ ।

---

୮ । ପ୍ରାଣବନ୍ଧୁ—ଜୀବନସଙ୍ଗିନୀ । କାମକଳ୍ପଲତା—କାମଇଚ୍ଛା ପରିପୂରଣକାରିଣୀ । ସ୍ନେହସୁଖଦାତା—ସ୍ନେହ ଓ ସୁଖର ଦାନକାରିଣୀ । କାମାନ୍ଧ—ଡୋଳାପିତୁଳା—କାମରେ ଅନ୍ଧ ଲୋକର ଆଖିର ପୁଅ, କନୀନିକାର ତୁଲ୍ୟକାରିଣୀ । ଦୀନଜନ କୃତାର୍ଥିନୀ—ଦୁଃଖୀ ଲୋକର ଦୁଃଖହାରିଣୀ; ଏହି ଧନ—ରେ ଧନେ୍ୟ ସ୍ୱଧେ ।

୯ । ଅତୁଳା—ଅସମା, ଯାହାର ସମାନ କେହି ନାହିଁ । ଡୋଳାପିତୁଳା—ମୋର ଆଖିର ପୁଅ ବୋଲି କହନ୍ତି କିନ୍ତୁ ମୋର ଡୋଳା ପିତୁଳା ହେଲେ, ଦରଶନ ବାଧ ଅଛି—ମୋର ଦର୍ଶନରେ ବାଧା ଅଛି—ମୁଁ ତୋତେ ଦେଖିପାରୁନାହିଁ । ଜନ—ଲୋକ; ଦୀନ ହେଲେ—ଦୁଃଖୀ ହେଲେ, ତାର କିଛି ସନମାନ—ମାନ୍ୟ ନ ଥାଏ । ତୁ ହେଲୁ ଧନ ମୁଁ ହେଲି ଦୀନ । ଧନଠାରେ—ଧନବନ୍ତ, ତୋହଠାରେ ମୋର କିଛି ସମ୍ମାନ ନାହିଁ । ଭାଲ ଛଳକ—କପାଳ ଛଳକ ଅଟା କହନ୍ତି; ସେ ତ ଅଳ୍ପ ସମୟରେ ଲୋପକୁ ପାଏ—ଲିଭିଯାଏ । ହୃଦୟରେ ପଦକ ବୋଲି କହନ୍ତି ବା ଗ୍ରୀବ ମଣିସ୍ରକ—ବେକର ରତ୍ନହାର କହନ୍ତି, କିନ୍ତୁ ସେ ବୁଦ୍ଧେ ଅନ୍ତର ସ୍ତବକୁ ପାଏ, ଦେହର ବାହାରରେ ଥାନ୍ତି ।

୧୦ । ଉପମାମାନେ—ଚନ୍ଦ୍ର, ପଦ୍ମ, ବିଜୁଳି, ବିମ୍ବ ପ୍ରଭୃତି । ଲକ୍ଷିବ—ଲକ୍ଷ୍ୟ ଦେବ, ତୁଳା କରିବ । କାନ୍ତିକି—ଶୋଭାକୁ ଦେଖି । କ୍ଷଣକାନ୍ତି—ବିଜୁଳି । ଅଲକ୍ଷ—ତୁଳନା ନୋହି; ପ୍ରାଭବି—ପରାସ୍ତ ହୋଇ । କମ୍ପଇ—ଭୟରେ ଥରୁଛି । ଓଷ୍ଠ ଲୋକନେ—ଓଠ ଦେଖି । ବିମ୍ବ—ପାଚିଲା କାନ୍ଦିମି କାକୁଡ଼ି । ଭସ—

Digitized by srujanika@gmail.com

ଈକ୍ଷଣକୁ ହାରି ହରିଣ ପଳାଇ ଶଶିରେ ଶରଣ ହେଲା ।
ମୁଖ ଦେଖନ୍ତେ ସେ ପୁଣ କ୍ଷୀଣ ହୋଇ ଶିବଙ୍କୁ ଆଶ୍ରୟ କଲା ।
କୁଚ ବଢ଼ାଇ ଯେ । ଶୁଣନ୍ତେ ହେଲେ ପଥର ।
ସମ ନୋହିବାର ଗଜସ୍ଥୀ ଲୁଚିଲେ କାନ୍ତଅଙ୍ଗେ ତତ୍ପର । ୧୧ ।
ହରି ଡମ୍ବରୁ କଟି ସମ ହେବାକୁ ଶିବା ଶିବ ସେବିଥିଲେ ।
ପ୍ରଭୁ ମାନ ମ୍ଳାନ ଦେଖି ପଞ୍ଚାନନ ମର୍ତ୍ତ୍ୟ ଛାଡ଼ି ପଳାଇଲେ ।
ଡର ଡମ୍ବରୁ ଯେ । ଡାକ କହୁଛୁ ଜଗତେ ।
କବି ପିନା! ଦୋଷୀ ବିନା ଅପରାଧେ ଦୋଷ ଲଗାଉଛୁ ମୋତେ ।୧୨।

---

ପାଉଁଶ । ବିଲେପନ ହେଲା—ବୋଳି ହେଲା ସଂସାର ଗ୍ରହ ବୈରାଗୀ ବନିଗଲା । ( ପାଉଁଶ ପାଉଁଶିଆ ପଡ଼ିବା ହେତୁ ଏପରି କୁହାଗଲା ) । ନାସା—ନାକ । ଭାଷା—କଥା । ଶୁକ ଓ ଶାରୀ ବଣରେ ଲୁଚି ରହିଲେ । ନାକ—ଶୁଆର ଥଣ୍ଟଠାରୁ ସୁନ୍ଦର; କଥା—ଶାରୀର ସ୍ୱରଠାରୁ ମିଠା ହେତୁ ।

୧୧ । ଈକ୍ଷଣକୁ—ଆଖିକୁ । ଶଶିରେ—ଚନ୍ଦ୍ରଠାରେ ( ହରିଣ ଚନ୍ଦ୍ରକୁ ପାଇବା ନିମିତ୍ତ ଦଉଡ଼ ଦଉଡ଼ ପାଇଲା ନାହିଁ, ମାତ୍ର ତାଙ୍କ ଦେହରେ କଳଙ୍କ ହୋଇ ରହିଲା ) କବି ଏଠାରେ କହୁଛନ୍ତି ଯେ ରାଧାଙ୍କ ଆଖିକୁ ତା ଆଖିଠାରୁ ସୁନ୍ଦର ଦେଖି ଲଜ୍ଜାରେ ଚନ୍ଦ୍ରଙ୍କ କ୍ରୋଡ଼ରେ ପଶିଗଲା । ହରିଣ ଆଖିଠାରୁ ତାଙ୍କ ଆଖି ସୁନ୍ଦର । ସେ ଚନ୍ଦ୍ର ତୁମ୍ଭ ମୁଖ ଦେଖନ୍ତେ—( ଚନ୍ଦ୍ର କଳଙ୍କଯୁକ୍ତ—ତୁମ୍ଭ ମୁଖ କଳଙ୍କହୀନ ଓ ଅଧିକ ଲାବଣ୍ୟମୟ ) କ୍ଷୀଣ ହୋଇ ଶିବଙ୍କୁ ଆଶ୍ରୟ କଲା ( ଜପର ଅଧିକ ସୁନ୍ଦର ହେବ ) । ତୋର କୁଚ—ସ୍ତନ, ବଢ଼ାଇ—ବଡ଼ପଣ, ଶୁଣି ପଥର ହୋଇଗଲେ । ଗଜସ୍ଥୀ—ପାର୍ବତୀ । ସମ—ସମାନ ( ସୌନ୍ଦର୍ଯ୍ୟରେ ) ନୋହି କରି କାନ୍ତ ଅଙ୍ଗେ—ସ୍ୱାମୀ ମହାଦେବଙ୍କ ଦେହରେ ତତ୍ପର—ତନ୍ମୟ ହୋଇ ବ୍ୟାକୁଳ ହୋଇ ଲୁଚିଲେ ।

୧୨ । ହରି—ସିଂହ । ଶିବାକୁ—ପାର୍ବତୀଙ୍କୁ; ଡମ୍ବରୁ ଶିବ—ମହାଦେବଙ୍କୁ । ପ୍ରଭୁ ମାନ ମ୍ଳାନ—ପାର୍ବତୀଙ୍କ ଠେକ ଊଣା ପଡ଼ିବାରୁ ( ଲଜ୍ଜାରେ ମହାଦେବଙ୍କ ଅଙ୍ଗରେ ଲୀନ ହେବା ଦେଖି ) । ପଞ୍ଚାନନ—ସିଂହ । ମର୍ତ୍ତ୍ୟ ଛାଡ଼ି ସ୍ୱର୍ଗକୁ ଯିବା ଲୋକଙ୍କ ବିଶ୍ୱାସ । ଡମ୍ବରୁ ଉକ୍ତି କରି କହୁଛି, ମୋର ଅପରାଧ ନାହିଁ, ମୁଁ କେତେବେଳେ ହେଲେ ରାଧାଙ୍କ କଟି ସଙ୍ଗରେ ସମାନ ବୋଲି କହେ ନାହିଁ—କବିମାନେ ତାଙ୍କ ସଙ୍ଗେ ମୋତେ ତୁଳନାରେ ଆଣି ଦୋଷୀ କରନ୍ତି ।

Digitized by srujanika@gmail.com

ଗଡଚ୍ଛ ଶୃଙ୍ଗ ଦନ୍ତୀଏ ଦିଗାନ୍ତରେ ପଳାଇ ଯାଇ ପଶିଲେ ।
ସର ହେବାକୁ ଅଣ କରି ମରାଳ ବିଧି ଅନୁଗତ ହେଲେ ।
କେଶ ବିଲୋକି ଯେ । ଘନ ବର୍ଣ୍ଣ ନାନାପରି ।
ବାଣୀ ସ୍ନେହେ ବାଣୀ ବୀଣାକୁ ବଜାଇଲେ ଅତ୍ୟନ୍ତ ଆଦର କରି ।୧୩।
ଦନ୍ତ ଜ୍ୟୋତି ଦେଖି ହୀର ଶାଣେ ବସି ତନୁ କ୍ଷୀଣ କରୁଅଛି ।
ଦର ଦରେ କରେ ଗୁହାରି ଅମରେ କେବା ଗ୍ରୀବା ଲକ୍ଷ କଲା ।
ଧନୁ ବହୁଛନ୍ତି ଯେ । ଭ୍ରୂଲତା ସ୍ନେହରେ ମାର ।
ଶ୍ରୁତି ଗୁଣ ଗୁଣି ଶ୍ରୁତି ଗୁଣାଗୁଣି କରୁଅଛି କୁଶଧର । ୧୪ ।
ନୟନ ଆନନ ହାସ ବାସ ପାଦ ହୃଦ ପାଣି ପ୍ରୀତିବଶେ ।
କମଳ କଳତ୍ର କରି ଦେଖୁଛନ୍ତି ଚିତ୍ତୁ ଭାନୁ ଅହର୍ନିଶେ ।
ସିନ୍ଧୁ ସମ୍ପଦା ଯେ । ନିବାସ କଲେ ଅଧର ।
ମାନ ମ୍ଳାନ ଯାଇ ସ୍ଥାନାସ୍ଥାନ ହେଲେ ସବୁ ଉପମା ଏପରି ।୧୫।

---

୧୩ । ଦନ୍ତୀଏ—ହାତୀମାନେ । ଦିଗନ୍ତରେ—ଅନ୍ୟ ଦିଗକୁ । (ଗତିରେ ହାରି) ମରାଳ—ହଂସ । ବିଧି—ବ୍ରହ୍ମା (ହଂସ ବ୍ରହ୍ମାଙ୍କ ବାହାନ) । କେଶ ବିଲୋକି—ବାଳ ଦେଖି ( ଗାଢ଼ କୃଷ୍ଣତା ଦେଖି ) । ଲଜ୍ଜାରେ ଓ ଦୁଃଖରେ ବିକୃତ ହୋଇ ନାନାବର୍ଣ୍ଣ—କଳା, ଧଳା, ନୀଳ, ହଳଦିଆ ହୋଇଗଲା । ବାଣୀ ସ୍ନେହେ—ତୋ ବଚନ ଲୋଭରେ ଅର୍ଥାତ୍ ତୋ ବଚନ ପରି ନିଜର ବଚନକୁ କରିବାକୁ ବାଣୀ—ସରସ୍ୱତୀ ଅତି ସ୍ନେହରେ ବୀଣା ସର୍ବଦା ବଜାଇଲେ ।

୧୪ । ଦନ୍ତ ଜ୍ୟୋତି—ଦାନ୍ତର ଶୋଭା ଦେଖାପଡ଼ିବାରୁ ଉଜ୍ଜ୍ୱଳତାକୁ ବଢ଼ାଇବା ଉଦ୍ଦେଶ୍ୟରେ ପୁଣି ଶାଣରେ ବସି ଦେହ, କ୍ଷୀଣ—କୃଶ, ପାତଳ ( କିନ୍ତୁ ଫଳ କିଛି ହେଲା ନାହିଁ; କେବଳ କ୍ଷୀଣ ହେବା ସାର ହେଲା ) । ଦର—ଶଙ୍ଖ । ଦରେ—ଡରରେ; ଗୁହାରି କଲା—ମିନତି କରି ଜଣାଇଲା । କେବା—କେଉଁ କବି କାହିଁକି; ଗ୍ରୀବା—ରାଧାଙ୍କ ସଙ୍ଗେ ମୋତେ ଲକ୍ଷ କଲା—ସମାନ କଲା(ମୁଁ ସାମାନ୍ୟ—ମୁଁ କିପରି ଗ୍ରୀବା ସଙ୍ଗେ ସମ ? ଏହା ସେ କବିର ଅବୋଧତା ମାତ୍ର, ମୁଁ ସମାନ ଏହା କେବେ ହେଲେ ହୁଏନାହିଁ ) ରାଧାଙ୍କ ଭ୍ରୂଲତା ସ୍ନେହରେ—କନ୍ଦର୍ପ ଧନୁ—ପୁଷ୍ପଧନୁ ଧରିଛି; ( ତାର ସମାନ ହେବୁ ସ୍ମାରକରୂପେ ଧନୁ ଧରିଛି ) ଶ୍ରୁତି ଗୁଣଗୁଣି—କାନର ଶୋଭାକୁ ଚିନ୍ତାକରି, କୁଶଧର—ବ୍ରହ୍ମା; ଶ୍ରୁତି—ବେଦ । ଗୁଣାଗୁଣି—ସର୍ବଦା ପଢ଼ୁଅଛି । ନାମର ସମତାହେତୁ ରାଧାଙ୍କ କାନକୁ ନାମରେ ରଖିବାକୁ ବେଦ ପଢ଼ୁଛନ୍ତି । ଅତଏବ ରାଧାଙ୍କ ପ୍ରତ୍ୟେକ ଅଙ୍ଗର ଉପମା ନାହିଁ ।

୧୫ । ରାଧାଙ୍କର ଚକ୍ଷୁ, ମୁଖ, ହାସ (ଶୁକ୍ଳପଦ୍ମ), ବାସ (ଶରୀର ଗନ୍ଧରେ) ପାଦ, ହୃଦ, ପାଣି—ହାତ ଏସବୁ ପଦ୍ମ; ତେଣୁ—ଏମାନଙ୍କର ପ୍ରୀତିବଶେ—ସ୍ନେହରେ

Digitized by srujanika@gmail.com

ରାମନେତ୍ରାନନ୍ଦଦାୟିନୀ ବୋଲନ୍ତ ସଂଶୟ ଚିତ୍ତରେ ହେବ ।
ସୀତା ପାର୍ବତୀ ରେବତୀ ବୋଲିବାକୁ ସତ ଲେଶେ ନ ବଳିବ ।
ରତି ତୁଳନା ଯେ ରତି ବୋଲି ତ ନ ପାର ।
କର୍ଣ୍ଣ ବାକ୍-ଶରୀ ବୋଲିବ ହେଲେହେଁ ବହୁନେତ୍ର ବଶକାରୀ । ୧୬ ।
ରମ୍ଭା ଉର୍ବଶୀ କାହିଁ କେ ଗଣିମ ରମ୍ଭୋରୁକୁ ବସିବାରେ ।
ବଚନ ଅନୁଗତ ବାଣୀ ଅଣିକ ଅଣି ଗଣିବା ଲକ୍ଷରେ ।
ଖଞ୍ଜ ସିନ୍ଧିକ ଯେ । ଲକ୍ଷିବାର ବଡ଼ ନୋହେ ।
କାଶ୍ମୀରିଭିରବା ଲକ୍ଷ କ ବୋଲିବା ତୁଚ୍ଛ କଥା ଶୋଭା ନୋହେ । ୧୭ ।

---

ବସ୍ତ୍ର ଓ ଭୂଜ କମଳକୁ—ପଦ୍ମକୁ, କଳିତ କର—ଗ୍ରହଣକରି, ଅହର୍ନିଶେ—ପ୍ରତିଦିନ ଦେଖୁଛନ୍ତି (ପୂର୍ଣ୍ଣ ପଦ୍ମକୁ ସ୍ତ୍ରୀ କର ଓ ବସ୍ତ୍ର ହସ୍ତରେ ପଦ୍ମ ଧରନ୍ତି) । ସିନ୍ଧୁ ସମ୍ଭବା—ଲକ୍ଷ୍ମୀ, ଶୋଭାଦେବୀ, ଆଦର—ଆଗ୍ରହାନ୍ୱିତା ହୋଇ ସେବାକରିବା ଉଦ୍ଦେଶ୍ୟରେ ରାଧାଙ୍କ ଶରୀରରେ ନିବାସ କଲେ—ଲୀନହେଲେ (ରାଧା ସର୍ବଶୋଭାମୟୀ) ସବୁ ଉପମା—ଉପମାନମାନେ, ମାନ ମ୍ଲାନ ପାଇ—ବଡ଼ପଣ ବା ମର୍ଯ୍ୟାଦା ଊଣା ହେବାରୁ, ସ୍ଥାନାସ୍ଥାନ—ଏଠି ସେଠି ହୋଇ, ରହିଲେ—(ରାଧା ଅନୁପମା) ।

୧୬ । ରାମନେତ୍ରାନନ୍ଦଦାୟିନୀ—ରାମ—ମନୋହର, ଯେ ନେତ୍ର ତାହାଦ୍ୱାରା ମୋର ଓ ଜଗତର ଆନନ୍ଦଦାୟିନୀ (ବା ରାମନେତ୍ରା ମୃଗନୟନା ଆନନ୍ଦଦାୟିନୀ ବୋଲନ୍ତି । ହରିଣ ନେତ୍ରକୁ ସମାନ ନୋହି ବନକୁ ପଳାଇଛି ବୋଲି ତ କହିଲେ ଏ ହେତୁ ସନ୍ଦେହ ହେଲା) ରାମଙ୍କ ନେତ୍ରର ଆନନ୍ଦଦାୟିନୀ—ଏଥିରେ ସଂଶୟ ହେଲା; କାରଣ କୌଣସି ରାମଙ୍କ ସଙ୍ଗେ ଏହାଙ୍କର ତ ସ୍ତ୍ରୀରୂପେ ବା ମାତାରୂପେ ସମ୍ବନ୍ଧ ନାହିଁ ତେଣୁ ସନ୍ଦେହ । ରାଧା ଅଧିକ ସୁନ୍ଦରୀ ଥିବାହେତୁ ସୀତା (ରାମଚନ୍ଦ୍ରଙ୍କ ସ୍ତ୍ରୀ); ପାର୍ବତୀ (ପରଶୁରାମଙ୍କ ମାତୃଭୂତା) ରେବତୀ (ବଳରାମଙ୍କ ସ୍ତ୍ରୀ) କହିବା ସତ ବଳୁନାହିଁ—ପ୍ରାଣ ବା ମନ ଅଲକରେ ହେଲେ ବଳୁନାହିଁ । ରତିକୁ—କନ୍ଦର୍ପ ସ୍ତ୍ରୀକୁ, ରାଧାଙ୍କ ସଙ୍ଗେ ତୁଳନା କଲେ । ରତି ବୋଲି—ରତିଏ ମାତ୍ର ବୋଲି—କହି ନ ପାର, ତା ତହିଁ ତୁଳନା ଯୋଗ୍ୟ ନୁହେ । ବହୁନେତ୍ର ବଶକାରୀ—ବହୁତ ଲୋକଙ୍କ ନେତ୍ରକୁ ବଶ କରନ୍ତି—ଯେ ରାଧା । ବହୁ ନେତ୍ର—ଇନ୍ଦ୍ର (ସହସ୍ରାକ୍ଷ) ତାଙ୍କ ବଶକାରିଣୀ—ଶଚୀ । କର୍ଣ୍ଣ ବାକ୍—ପାଗଳ ଶଚୀ ବୋଲି କହିବ ।

୧୭ । ରମ୍ଭୋରୁକୁ—ରମ୍ଭୋରୁ ରାଧା, ବସିବାରେ—ବସିଲାବେଳେ, ଆଗରେ ବହିଲାବେଳେ । (ବା ବସିବାରେ—ସଙ୍ଗ ହେବାରେ) ରମ୍ଭା ଉର୍ବଶୀ—ସ୍ୱର୍ଗ ବେଶ୍ୟାମାନଙ୍କୁ । କାହିଁ—ଥରେ କେ ଗଣିମ । ରାଧା ସଙ୍ଗରେ ବସିବାକୁ ରମ୍ଭା ଉର୍ବଶୀ ଯୋଗ୍ୟ ନୁହନ୍ତି । ବାଣୀ—ସରସ୍ୱତୀ । ରାଧାଙ୍କ ବଚନକୁ, ଅନୁଗତ—

Digitized by srujanika@gmail.com

ସୁନାସୀର ନୀଳଲୋହିତ ନୟନ ବିଧି ବିଧାନରେ ଅଛି ।
ରେବତୀକାନ୍ତ ବଦନେ ହାସେ ହଣେ ବାଣୀ ବଚନେ ବସିଛି ।
ଶ୍ରୀସ୍ତ୍ରୀ ଗଜସ୍ତ୍ରୀ ଯେ । ଅବୋରିଛନ୍ତି ସର୍ବାଙ୍ଗ ।
ଅରୁଣ ଶରଣ ଚରଣ ତଳରେ ସୁଗଣ୍ଡ ଗଣ୍ଡରେ ସଙ୍ଗ । ୧୮ ।
ସଣ୍ଠ ଘଣ୍ଠ ହୁଇ କୁଚ ମେରୁଶିର ସର୍ବ ସୁମନସ-ବାସ ।
ଅଧରେ ମନ୍ଦାର ଗୁରୁ କବିବର ପ୍ରତକ୍ଷେ ତ ପରକାଶ ।
ବୋଧ ବୁଦ୍ଧିରେ ଯେ । ବୁଧ ଅଛି ମନେ ଭର ।
ବୃଥା ହେଲେ ତୋର ସୁରପୁରସାର ସୁଖ ମୁଁ କରିବି ଜର । ୧୯ ।

---

ସେବିଛନ୍ତି । ଲକ୍ଷରେ—ତୁଳନାରେ ଆଣି କ—ସରସ୍ୱତୀଙ୍କ ଠେକକୁ କପଟ ଆଣି ଗଣିବା (ବା ରାଧାଙ୍କ ବଚନ ଆଣି କ—ବଚନ ଭଙ୍ଗୀକୁ ବାଣୀ ଅନୁଗତ ଇତ୍ୟାଦ) । ଦଧି ସିନ୍ଧିକି (ଏହି ଗ୍ରନ୍ଥର ୫ମ ପଦ ଦେଖ) ଲକ୍ଷିବାର ବଡ଼ ନୋହେ—ସାମାନ୍ୟ କଥା । ବର୍ଣ୍ଣ ବଉଳିବା—ସଂସାରର ସମସ୍ତ ସ୍ୱରୂପା ରାଧ । ତୁଚ୍ଛ କଥା—ଊଣା କଥା । ଶୋଭା ନୁହେଁ—ସୁନ୍ଦର ନୁହେଁ ।

୧୮ । ସୁନାସୀର—ଶୋଭନ ନାସିକା ଥିଲା ରାଧାର; ନୀଳ ଲୋହିତ ନୟନ – ନେଳିଆ, ନାଲିଆ ଆଖି । ବିଧି ବିଧାନରେ ଅଛି—ବ୍ରହ୍ମାଙ୍କ ସୃଷ୍ଟି ଅଛି, ବ୍ରହ୍ମା ଏପରି ତାକୁ କରିଅଛନ୍ତି । ନୟନ ବିଧାନରେ—ଆଖିର ଗଢ଼ଣ ଭଙ୍ଗିରେ, ଇନ୍ଦ୍ର (ପୀତ) ନୀଳ ଲୋହିତ (ଶିବ) ବିଧି (ବ୍ରହ୍ମା) ଅଛି—ଅଛନ୍ତି । ଚକ୍ଷୁ, ପୀତ, ନୀଳ, ଲୋହିତ ଓ ଶୁକ୍ଳବର୍ଣ୍ଣ – ବ୍ରହ୍ମା, ଚକ୍ଷୁରେ ଅଛନ୍ତି । ରେବତୀକାନ୍ତ – ରେବତୀ ନକ୍ଷତ୍ରର ପତି ଚନ୍ଦ୍ର ମୁଖରେ ଓ ହସରେ ଅଛି । ଚନ୍ଦ୍ର ପରି ମୁଖ ଓ ଚନ୍ଦ୍ର ପରି ହାସ । ବାଣୀ—ସରସ୍ୱତୀ । ବଚନେ—କଥାରେ । ବସିଛି—ଅଛି । ଶ୍ରୀସ୍ତ୍ରୀ ଗଜସ୍ତ୍ରୀ—ଲକ୍ଷ୍ମୀ ଓ ପାର୍ବତୀ ସମସ୍ତ ଦେହ ଅବୋରିଛନ୍ତି । ଗୌର ଶୋଭାରେ ରାଧା ଶୋଭାବତୀ । ସୁଗଣ୍ଡ—ଶୋଭନ ଗଣ୍ଡଶୀଳା, ରାଧାର ଗଣ୍ଡରେ—ଗାଲରେ ସଙ୍ଗ ହୋଇ ଅରୁଣ—ସୂର୍ଯ୍ୟ ସାରଥି ବା ସୂର୍ଯ୍ୟ ଚରଣ ତଳେ ଶରଣ ପଶିଛି (ରାଧାଙ୍କ ଚରଣତଳ ଲାଲ) 'ସୂର୍ଯ୍ୟ ସାରଥି—ଅବିଷ୍କୃତା ରୁଣପୁରସରଃ ଏକତୋଽର୍କ' ଶକୁନ୍ତଳା ୪ର୍ଥ ସର୍ଗ । 'ସୂର୍ଯ୍ୟ—ସବେଗେ ବାଳାରୁଣକୋମଳେନ'—କୁମାର । 'ସଂପୂଜ୍ୟତେ ସନ୍ଧ୍ୟୈର ରୁଣାଂଶୁ ବଦନେ…ରଘୁ—୫-୭୧) ।

୧୯ । ସଣ୍ଠ—ସୁନ୍ଦର । ଘଣ୍ଠ—ଘନ, ଲଗାଲଗି । କୁଚ—ରାଧାଙ୍କ ସ୍ତନଦ୍ୱୟ, ମେରୁଶିର—ମେରୁ ପର୍ବତର ଶୃଙ୍ଗ । ସର୍ବସୁମନସବାସ—ସବୁ ଦେବତାଙ୍କ ଘର ଓ ସବୁ ଲୋକଙ୍କ ମନ ଲାଗି ରହିଛି । ଅଧରେ—ଓଷ୍ଠରେ । ମନ୍ଦାର—ମନ୍ଦାର ଫୁଲର ଉପମା । ସେ ପ୍ରତ୍ୟକ୍ଷେ କବିବରଙ୍କ ଗୁରୁ—ସେ ଅତୀବ ପଣ୍ଡିତା । ପରକାଶ

ପଢ଼ି ଶରଣ ଦାନପଣ କୃପଣପଣ ତ ଜାଣିବ ଥିବ ।
ଶ୍ରୁତରେ ପ୍ରମାଣ କର୍ଣ୍ଣ ନାମ ଜାଣ ସୁବଳୀ ଵିକଳ ଭ୍ରବ ।
ହରିଚନ୍ଦନ ଯେ । ସଦା ହୃଦେ ବିରାଜଇ ।
ପ୍ରତ୍ୟକ୍ଷରେ ତୁ ତ ଚନ୍ତାମଣି ଶିବ ନାମରେ ଦାନୀ ଉଦ୍ଧାର । ୨୦ ।
ଏପରି ବିଗୁର ଯେତେ ମୁଁ ବୋଇଲି ବଳବ ଗୁଣ ଅପାର ।
ଜନ୍ମ ନୋହିଲେ କି ହେବ ତୁ ତ ମୋର ସର୍ବସ୍ୱ ସିନା ସ୍ୱମାବର ।
ଲଭ ଲଭିବ ଯେ । ଦସିଲେ ଉଣା ବିଗୁର ।
ପ୍ରଭୁ ଦାସ ଦୋଷ ବଞ୍ଚାନ୍ତି ନାହିଁ କି ଅଭିସ୍ତ ଏ ଯେଉଁ କହ । ୨୧ ।

---

ଅଧରରେ—ଓଷ୍ଠରେ । ମନ୍ଦ—ଶନି । ଆର—ମଙ୍ଗଳ । ଗୁରୁ—ବୃହସ୍ପତି । କବିବର—ଶୁକ୍ର ବା ପ୍ରତ୍ୟକ୍ଷେ—ସଫା ଅଖି ଆଗରେ । ପରବାଣ—ଜଣା । ତାଙ୍କ ଓଷ୍ଠରୁ ପାଣ୍ଡିତ୍ୟ ଓ କବିତ୍ୱ ପ୍ରକାଶମାନ ହେଉଛି । ବୋଧ ବୁଦ୍ଧିରେ—ଜାଣିମା ବୁଦ୍ଧିରେ । ବୁଧ ଗ୍ରହ ଅଛି । ମନେ କର – ସେ ବଡ଼ ଜ୍ଞାନୀ । ତୋର ଦୟା ହେଲେ ସ୍ୱର୍ଗର ସାର ସୁଖ ମୁଁ ଲୁଟି କରିବି ।

୨୦ । ଦାନପଣ—ଦାନର ଧର୍ମ ଅର୍ଥାତ୍ ଦାନଦେବା ଶରଣ ପଶିଛି । କୃପଣ ପଣ—କୁଣ୍ଠିତଗିର । ଶ୍ରୁତରେ—ଶାସ୍ତ୍ର ପୁରାଣାଦିରେ, କର୍ଣ୍ଣ ଦାନୀରୂପେ ପ୍ରସିଦ୍ଧ । ରାଧାଙ୍କ ଶ୍ରୁତରେ କର୍ଣ୍ଣ ନାମ ସିଦ୍ଧ । ବିକଳ ଭ୍ରବ – ରାଧାଙ୍କ ଉଦରରେ ଯେ ଛନୋଟି ଚମର ମୋଡ଼ ପଡ଼ିଛି, ତା ଦୁର୍ବଳ—ବଳଉକମ ମୋଡ଼ ହୋଇଛି (ବିକଳ ହେଲା ବଳୀ ରାଜାର ଦାନୀ ଭ୍ରବ ଜାଣ । ରାଧାଙ୍କ ହୃଦସ୍ଥରେ ସବୁବେଳେ ହରିଚନ୍ଦନ ଶୋଭାପାଏ) । ରାଧାଙ୍କ ସ୍ତନରେ ହରିଚନ୍ଦନ (ହଳଦିଆ ଚନ୍ଦନ ବୋଲାହୁଏ) । ହରିଚନ୍ଦନ—ହରିଶ୍ଚନ୍ଦ୍ର ରାଜା ଦାନୀ—ହୃଦୟରେ ଶୋଭା ପାଉ-ଅଛନ୍ତି । ପ୍ରତ୍ୟକ୍ଷରେ—ସମକ୍ଷରେ; ଆଖି ଆଗରେ ତୁ ତ ଚନ୍ତାମଣି—ବାଞ୍ଛା ପୂରଣ କରିବା ରତ୍ନ, ଶିବ ନାମରେ—ମଙ୍ଗଳ ନାମରେ ବାନା ଉଡ଼ାଉଅଛି—ଶିବ, ଦାନୀ ଏସବୁ ଦାନୀ ରୂପେ ପ୍ରସିଦ୍ଧ । ହେ ରାଧେ—ତୋ ଶ୍ରୁତରେ କର୍ଣ୍ଣଦାତା ତୋ ବିକଳରେ—ବଳିଦାତା, ହୃଦରେ ହରିଚନ୍ଦନ ଦାତା, ତୁ ତ ଚନ୍ତାମଣି (ମୋକ୍ଷଦାତା ଜନାର୍ଦ୍ଦନ) ଶିବ—ବରଦାତା—(ଏସବୁ ଦାତାପଣିଆରେ ଅଛନ୍ତି) ।

୨୧ । ତୋର ଗୁଣ ଅପାର—ଅସଂଖ୍ୟ, କଳବ—ରହିଯିବ, କହିହେବ ନାହିଁ, ତୁ ମୋର ସର୍ବସ୍ୱ । ଉଣା ବିଗୁର ଦସିଲେ—ଗୁଣ ସବୁ ବର୍ଣ୍ଣିଲି ନାହିଁ; କମି ହେଲା ଏହା ମନେ କରି ଉପହାସ କଲେ; ଲଭ ଲଭିବ —ମୋର ଭଲ ହେବ । ବଞ୍ଚାନ୍ତି— ମାଫ କରନ୍ତି ନାହିଁ କି; ଏ ଯେଉଁ କହ— ଏ ହେତୁ, ଏହା ଭ୍ରବ ଅଭିସ୍ତ—ମୋର ଭୟ ନାହିଁ ।

ବିକି ହେଲି ଦାସ କି ପଣ ବର୍ତ୍ତିବ ଶେଷରେ ନୋହିବ ଶେଷ ।
କାହିଁକି ତପ କରିଥିଲି ଧନ୍ୟ ସେ ପୁଣ୍ୟ ହେଲି ପରକାଶ ।
ମାତ୍ର ଏତିକି ଯେ । ଭାଗ୍ୟ ଦକ୍ଷିଣଙ୍କ ହେତୁ ।
ତବ ଶ୍ରୀଛାମୁକୁ ଜଣାଣ ଦେବାକୁ ଯୋଗ୍ୟ ହେଲି ଯାହା ମୁହିଁ ।୨୨।
ନାମ ଶ୍ରବଣ କଲି ଦିନୁ ମନ ତ ବନେ ହୋଇଥିଲି ବିକି ।
ସ୍ୱପ୍ନ ସମ୍ଭାଷଣ ଦିନୁ ଦେହ ପ୍ରାଣ ଦେଇଛି ଗୁଣାଧିକି ।
ଏବେ ଏଣିକି ଯେ । ମାର-ବାଧ-ଡର ନାହିଁ ।
ରାଧାଦାସ ନାଣ ହେଲି ଲୋକେ ବୋଲିବେ ତ ସର୍ବସିଦ୍ଧି ସେହି ।୨୩।
ଅନୁଗତ ହେଲେ ମହତ ଯେମନ୍ତ ସେମନ୍ତ ତାହା ବିଚାର ।
ଶଶ ଶଶୀ ଉରେ ବିଧୁ ଶିବ ଶିରେ ଅତ୍ୟନ୍ତ ପାଇ ଆଦର ।
ଗୁଣ ନ ଥିଲେ ଯେ । ଅହି ଭସ୍ମେ ଶିବ ପ୍ରୀତ ।
ସେପରି ଗରିମା ସାର୍ଥ ମନୋରମା ହେବ ସେବନରେ ଭଗତ ।୨୪।
ଦେଖିଲେ ପାତକୀ ତୀର୍ଥ ବାରିକି ଏ କଥା ହୋଇ ବିବେକ ।
ଦୀନଠାରେ କିନା ଦୟାକୁ ବିଧାନ କରନ୍ତି ବିବେକ ଲୋକ ।
ଦୈନ୍ୟ ଫଳଇ ଯେ । ଅବଶ୍ୟ କଳପଲତା ।
ତୁଚ୍ଛ ଭ୍ରମର ଅନୁଗତ ସକାଶେ ପଦ୍ମିନୀ ଲଙ୍ଘେ ସବିତା ।୨୫।

୨୩-୧—ହେଉଥିଲି ସ୍ୱ, ନି, ଠ, ଏ ପାଠ ମଧ୍ୟ ହୋଇପାରେ ।

---

୨୨ । ବିକିହେଲି ଦାସ—ତୋର କିଣା ଚାକର, ତୋର କି ପଣ ବର୍ତ୍ତିବ; ଶେଷରେ—ସହସ୍ରମୁଣ୍ଡା ବାସୁକିଙ୍କ ଦ୍ୱାରା ଶେଷ ହେବନାହିଁ । କାହିଁ—କେଉଁ ତୀର୍ଥରେ ମୁଁ କି ତପସ୍ୟା କରିଥିଲି—ସେ ପୁଣ୍ୟ ଫଳରୁ ମୁଁ ଧନ୍ୟ ହେଲି । କେତୁ—କପଟ । ଭାଗ୍ୟ—ଶୁଭ ଅଦୃଷ୍ଟ ।

୨୩ । ସ୍ୱପ୍ନ ସମ୍ଭାଷଣଦିନୁ—ସ୍ୱପ୍ନରେ ମେଳନରେ କଥାଭାଷା ହେବାଦିନୁ । ଗୁଣାଧିକି—ରାଧାକୁ । ମାରବାଧ—କନ୍ଦର୍ପ ପୀଡ଼ା । ସର୍ବସିଦ୍ଧି—ସବୁ ସମ୍ପତ୍ତି ।

୨୪ । ଶଶ—ଠେକୁଆ । ଶଶୀ—ଚନ୍ଦ୍ର । ଉରେ—ହୃଦରେ । ବିଧୁ—ଚନ୍ଦ୍ର । ଗୁଣ ନ ଥିଲେ ସୁଦ୍ଧା । ଅହି—ସର୍ପ । ଭସ୍ମ—ପାଉଁଶ । ପ୍ରୀତ—ସ୍ନେହ । ହେ ମନୋରମା—ହେ ମନୋହାରିଣୀ, ସେପରି ଗରିମା—ମହତ୍ତ୍ୱ, ବଡ଼ପଣିଆ । ସେବନରେ—ଆଦରରେ । ମୋର ଭଗତ—ସେବା, ସାର୍ଥ ହେବ—ସଫଳ ହେବ (ମୁଁ ଗୁଣହୀନ ମୋତେ ସେପରି ସେବନରୁ ) ।

୨୫ । ବିବେକ—ବିଚାର । ବିବେକ ଲୋକ—ବିଚାରଶୀଳ ବ୍ୟକ୍ତି । ଦୈନ୍ୟ—ଦୈନ୍ୟ ଦୁଃଖ ଯୋଗୁଁ, ଅବଶ୍ୟ—ନିଶ୍ଚୟ, କଳ୍ପଲତା ଫଳଇ—

Digitized by srujanika@gmail.com

ଉଭୟ କୂଳ ବିଶୁଦ୍ଧ ଜୀବନରସ ପୂର ହୃଦ ଉଚ୍ଛୁଳଇ ।
କାନ୍ତପାଶେ ଅଭିସାର କରେ ଅଙ୍ଗ ତରଙ୍ଗେ କୂଳ ବୁଡ଼ାଇ ।
ଶୁଚିପଦବୀ ଯେ । କରିବାରୁଁ ବିତରଣ ।
ତାପ ବିନାଶିନୀ ଯେଣୁ ବଗ୍ଧବଲ୍ଲ ବିଷ୍ଣୁପଦୀ ତୁ ପ୍ରମାଣ । ୨୬ ।
କାମ କପିଳ କୋପାନଳେ ଜଳୁଛି ସଗର କୁମର ପରି ।
ଦୂତୀ ଭଗୀରଥ ହେଲା ଗଙ୍ଗାପରି ଯଶ ରଖ ପ୍ରାଣେଶ୍ୱରୀ ।
କି ମୁଁ ଲେଖିବି ଯେ । ତୁ ତ ସୁଜାଣ ପଣ୍ଡିତା ।
ପର ଉପକାରଠାରୁ ଧର୍ମ ନାହିଁ, କହଇ ବେଦସଂହିତା । ୨୭ ।

---

ମନୋରଥ ପୂର୍ଣ୍ଣ କରେ । ପଦ୍ମିନୀ—ପଦ୍ମଲତା, ସ୍ୱପତି ସବିତା—ସୂର୍ଯ୍ୟ, ଲଙ୍ଘେ—ଛାଡ଼ିଦିଏ । ତୁଚ୍ଛ—ସାମାନ୍ୟ । ଅନୁଗତ ସକାଶେ—ଆଶ୍ରିତ କରିବା ହେତୁ ; ସେବକାରୁ । ମୁଁ ସେହିପରି ତୁଚ୍ଛ, ମୋତେ ଗ୍ରହଣ କର ।

୨୬ । ହେ ରାଧେ ! ତୁ ବିଷ୍ଣୁପଦୀ ଗଙ୍ଗା, ପ୍ରମାଣ—ନିଶ୍ଚୟ । ଗଙ୍ଗା ପକ୍ଷରେ—ଗଙ୍ଗାର ଉଭୟ ତଟ, ବିଶୁଦ୍ଧ—ପବିତ୍ର । ଜୀବନରସରେ—ଜଳରେ, ହୃଦ—ବକ୍ଷସ୍ଥଳ, ପୂରି—ଉଚ୍ଛୁଳି ପଡ଼େ । ଅଙ୍ଗତରଙ୍ଗେ—ନିଜର ଲହରୀଦ୍ୱାରା, କୂଳ—ଦୁଇ କୂଳକୁ ବୁଡ଼ାଇ ଦିଏ ଓ କାନ୍ତପାଶେ ଅଭିସାର କରେ—ସ୍ୱାମୀ ସମୁଦ୍ରକୁ ଲକ୍ଷ୍ୟ କରି ଗତି କରେ । ଶୁଚିପଦବୀ—ପବିତ୍ର ମାର୍ଗ, ସ୍ଥାନ ମୁକ୍ତି ବିତରଣ ଦାନ କରିବାରୁ—ଗଙ୍ଗାରେ ସ୍ନାନ କଲେ ଲୋକ ମୁକ୍ତ ହୁଏ । ତାପବିନାଶିନୀ—ଶରୀର ତାପ ନାଶ କରେ ଓ ତ୍ରିତାପ ନାଶ କରେ । ରାଧା ପକ୍ଷେ—ଜୀବନରସ ପୂରି—ପବିତ୍ର ଅପ୍ରାକୃତ ମଧୁର ରସ (ଉଜ୍ଜ୍ୱଳ ରସ) ପୂର୍ଣ୍ଣ ହୋଇ, ଉଭୟ କୂଳ—ପିତୃକୂଳ ଓ ମାତୃକୂଳକୁ, ଉଚ୍ଛୁଳି ପଡ଼େ—ଲଙ୍ଘନ କରି ଗତି କରେ; କାନ୍ତପାଶେ କୃଷ୍ଣପାଶେ । ଅଙ୍ଗତରଙ୍ଗେ—ଦେହର ଲାବଣ୍ୟାତିଶଯ୍ୟରେ କୂଳ ବୁଡ଼ାଇ—ଉଭୟ କୂଳକୁ ଛାଡ଼ିଦେଇ, ଅଭିସାର କରେ—ଉତ୍କଣ୍ଠିତଭାବରେ ଗମନ କରେ (ତୁ) ଶୁଚିପଦବୀ—ଶୃଙ୍ଗାର (ମଧୁର) ରସର ମାର୍ଗ ବିତରଣ କରିବାରୁ—ଦେବାରୁ, ତାପବିନାଶିନୀ—କନ୍ଦର୍ପ ପୀଡ଼ା ନାଶକାରିଣୀ—ତେଣୁ ତୁ (ଗଙ୍ଗା) ପରକୀୟା କାନ୍ତ ପାଶକୁ ଅଭିସାର କର ।

୨୭ । କନ୍ଦର୍ପ ହେଲା କପିଳ ଋଷି । କପିଳ ଯେପରି ସଗର କୁମରଙ୍କୁ କ୍ରୋଧାଗ୍ନିରେ ଦଗ୍ଧ କରିଥିଲେ ସେହିପରି ମୁଁ କନ୍ଦର୍ପ ତାପରେ ଦଗ୍ଧ । ଭଗୀରଥ ଗଙ୍ଗାକୁ ଆଣି ସଗର କୁମରଙ୍କୁ ଜୀଆଁଇଥିଲେ—ଦୂତୀ ଏଠାରେ ଭଗୀରଥ ତୋତେ ସେ ଆଣୁ ; ତୁ ଆସି ମୋତେ ଜୀବନରେ ରଖି ଗଙ୍ଗାଙ୍କ ପରି କୀର୍ତ୍ତି ଜଗତରେ ରଖ । ବେଦ ସଂହିତା—ବେଦ ସ୍ମୃତି ପ୍ରଭୃତି ଶାସ୍ତ୍ର ।

Digitized by srujanika@gmail.com

ଦଶେ ଦଶେ ଦିଶେ ତବ ଚନ୍ଦ୍ରାନନ ଅଚ୍ଛିଦ୍ର ପରିସରେ ମୋତେ ।
ହୃଦ ଦ୍ରବଇ ରବିକାନ୍ତ କାନ୍ତିକି ଦୃଷ୍ଟି ଦେଲେ ଯେଉଁମତେ ।
ମନ ହୋଉଛି ଯେ । ଅନଳେ ପତଙ୍ଗ ବତ ।
ଛାଡ଼ି ହେବ ନାହିଁ ଶରୀର ଭିତରେ ଥିବାଯାଏ ଏ ଜୀବତ । ୨୮ ।
ରସନା ଚୁମ୍ବିଛି ଓଷ୍ଠସୁଧା, ନେତ୍ର ପିଉଛି ସୁଷମାମୃତ ।
ମୁଣ୍ଡ ଗଲେ ତୁଣ୍ଡ ଲୋଭ ନ ଛାଡ଼ଇ ଦେଖ ରାହୁ ଅଦ୍ୟାପି ତ ।
ପ୍ରୀତି ପାରିବ ଯେ । ଯାହା ଇଚ୍ଛା ତାହା ହେଉ ।
ଘନେ କୁଳିଶ ଥିଲେହେଁ କି ଚାତକ ଆଶା ତେଜି ପାରେ ଅଉ ।୨୯।
ସ୍ମିତସୁଧା ଦେଇ କଟାକ୍ଷ-ବଡ଼ଶ ମନ-ମୀନରେ ଲଗାଇ ।
ପାମର ମାର-ଧୀବର ପ୍ରେମ-ସୂତ୍ର ବଳେ କଲେ ଅକର୍ଷଇ ।
ପ୍ରାଣ କହୁଛି ଯେ । କୃପାମୃତ ଯୋଗୁଁ ପିନା ।
କୂଳ ଜଳଧିରେ ପଶିବା ଲୋଭରେ ବାଧୁନାହିଁ ଏ ବେଦନା ।୩୦।

---

୨୮ । ଦଶେ ଦଶେ—ସବୁଆଡ଼େ ତୋ ଚନ୍ଦ୍ରମୁଖ ଦିଶୁଛି । ଅଚ୍ଛିଦ୍ର—ପୂର୍ଣ୍ଣ ନିଷ୍କଳଙ୍କ—ଚନ୍ଦ୍ରମୁଖ । ରବିକାନ୍ତ—ସୂର୍ଯ୍ୟକାନ୍ତ ମଣି । କାନ୍ତିକି—ସୂର୍ଯ୍ୟଙ୍କୁ । ଦେଖିଲେ ଜଳ ଉଠେ—ସେପରି ହୃଦୟ ଜଳ ଉଠେ । ଅନଳେ—ଲୋଭନୀୟ ଅଗ୍ନିରେ । ପତଙ୍ଗ—ପୋକପରି ମନ ହେଉଛି—ପ୍ରାଣ ଛାଡ଼ି ଦେଉଛି । କିନ୍ତୁ ଶରୀର ଭିତରେ ଥିବାଯାଏ—ଅର୍ଥାତ୍ ମୋ ମନ ଭିତରେ ଥିବାଯାଏ ଏ ଜୀବତ—ଏ ପ୍ରାଣ ଛାଡ଼ି ହେବ ନାହିଁ ।

୨୯ । ତୁମ୍ଭ ଓଷ୍ଠରୂପ ସୁଧା । ରସନା—ଜିହ୍ୱା । ତୁମ୍ଭ ସୁଷମାମୃତ—ଶୋଭାରୂପ ଅମୃତ ଚକ୍ଷୁ ପାନ କରୁଛି । ରାହୁ ଜୀବରେ ଅମୃତ ଚାଖିଥିବାରୁ ମୁଣ୍ଡଗଲେହେଁ ତୁଣ୍ଡ ଲୋଭ ଛାଡ଼ିଲା ନାହିଁ—ଆଜି ଚନ୍ଦ୍ରକୁ ( ଅମୃତର ଆଧାର ) ପାନ କରୁଛି । ରାହୁ ଲୁଚି ଦେବତାଙ୍କ ସଙ୍ଗରେ ଅମୃତ ଖାଉଥିଲା । ଚନ୍ଦ୍ର ସୂର୍ଯ୍ୟ ଜଣାଇ ଦେବାରେ ବିଷ୍ଣୁ ତା ମୁଣ୍ଡ ଚକ୍ରରେ କାଟିଦେଲେ କିନ୍ତୁ ସେ ଅମୃତ ଖାଇଥିବାରୁ ମୁଣ୍ଡ ଗଣ୍ଡି ଦୁହେଁ ବଞ୍ଚିଲେ । ପ୍ରୀତି ପାରିବ—ସମ୍ଭୋଗସକାଶେ ଯାହା ଇଚ୍ଛା ତାହାହେଉ ମୁଣ୍ଡ ବା ଗଣ୍ଡି ଯାଉ । ଘନେ—ମେଘରେ । କୁଳିଶ—ବଜ୍ର ଥିଲେହେଁ ଚାତକ ଆଶା—ସ୍ନେହ, ତେଜିପାରେ—ଛାଡ଼ିପାରେ କି—ଅଉ କାହାକୁ ଭଜିପାରେ କି—ସେହିପରି ତୋତେ ଛାଡ଼ି ପାରିବି ନାହିଁ ।

୩୦ । ପାମର—କୁତ୍ସିତ । ଧୀବର—କେଉଟ । କୁତ୍ସିତ କନ୍ଦର୍ପରୂପ କେଉଟ; ସ୍ମିତସୁଧା—ମନ୍ଦହାସରୂପ ଅମୃତ । ଦେଇ—ଯୋଖି ବା ଗୁନ୍ଥି । କଟାକ୍ଷ ବଡ଼ଶ—ତୋ ନେତ୍ର ପ୍ରାନ୍ତ ଚାହାଣିରୂପ ବନଶୀଖଣ୍ଡିକ ମୋ ମନରୂପ ମାଛରେ

Digitized by srujanika@gmail.com

ହୃଦ ଆଲବାଳେ ଅନୁରାଗ ବୀଜ ରୁପିତ କର ବାନ୍ଧବ ।
ସ୍ମର ଦବାକର ତାପେ ସଖ୍ୟଲେ କନ୍ଦଳୀବେଳେ କ ଭାବ ।
ଅଙ୍ଗୀକୃତକୁ ଯେ । ଘନରସଦାନେ କର ।
କେତେ କଲ୍ପତରୁ ଫଳ ଉପୁଜିବ ଜାଣିମୁ କ ସ୍ୱାଦୁ ତାର । ୩୧ ।
ହାସସୁଧା ସିଞ୍ଚି ସଞ୍ଚିତ କରନ୍ତୁ ବିପକ୍ଷୀଲକ୍ଷ୍ମି ଯାହାକୁ ।
ସର ପରାଭବ ଦେବେ ଅସୁନ୍ଦର ବିଗୁର ହେବ ତାହାକୁ ।
ନିନ୍ଦା କରିବେ ଯେ । ହସି ରସିକଜନମାନେ ।
ପ୍ରବୀଣା ଲକ୍ଷଣା ବାଧୁବ ସିନା ! ସେନାଯାଉ ଦିବ୍ୟ ଅବଧାନେ । ୩୨ ।

---

ଲଗାଇ । ତୋ ପ୍ରେମସୂତ୍ରବଳେ—ତୋର ସ୍ନେହରୂପ ଡୋରଦ୍ୱାରା । କଳେ—ଧୀରେ ଧୀରେ, କୌଶଳରେ । ଆକର୍ଷିଇ—ଓଟାରୁଛ । ତୋ କୃପାମୃତ—ଦୟାରୂପ ଜଳ ଯୋଗୁଁ ସିନା ଏ ପ୍ରାଣ ରହିଛି ! ତୋ ପ୍ରତନଲୁବ୍ଧରେ ପଡ଼ିବା ଲୋଭରେ—ରହିବା ଆଶାରେ ( କୁମ୍ଭରେ ମୀନ ମଧ୍ୟ ରହେ ) ଏ ବେଦନା ବାଧ ନାହିଁ ।

୩୧ । ହୃଦରୂପ ଆଲବାଳେ—ମନ୍ଦାରେ । ଅନୁରାଗ ବୀଜ—ପ୍ରେମମଞ୍ଜି, ରୁପିତ କର—ଲଗାଇ; କନ୍ଦଳୀ ବେଳେ—ଅଙ୍କୁର ହେବା ବେଳରେ—ଗଜା ହେବା ସମୟରେ, କ ଭାବ—କି ବିଗୁର କର; ସ୍ମର ଦବାକର ତାପେ—କନ୍ଦର୍ପରୂପ ସୂର୍ଯ୍ୟ କିରଣରେ ; ସଖ୍ୟଲେ—ଶୁଷ୍କ କରନ୍ତୁ, ଶୁଖେଇ ଦେଉଛୁ । ଘନରସ ଦାନରେ—ପ୍ରଚୁର ଜଳ ଦାନରେ—ନବଳ ଶୃଙ୍ଗାର ରସ ଦାନରେ; ଅଙ୍ଗୀକୃତକୁ କର—ସ୍ୱୀକୃତକୁ କର । କେତେ କଳ୍ପତରୁ ଫଳ ଉପୁଜିବ—କେତେରୂପେ କୌତୂହଳ ଓ ଆଶ୍ଚର୍ଯ୍ୟପ୍ରଦ ଫଳ ଫଳିବ । ତାର—ସେ ଫଳର; କ ସ୍ୱାଦୁ—କିପରି ସ୍ୱାଦୁ; ଜାଣିମୁ—ଆମେ ଅନୁଭବ କରନ୍ତୁ ।

୩୨ । ହେ ବିପକ୍ଷୀଲକ୍ଷ୍ମି—ହେ ସୀଣାବତୀନ; ଯେଉଁ କୃଷ୍ଣଙ୍କୁ ହାସସୁଧା—ମନ୍ଦହାସରୂପ ଅମୃତ ସିଞ୍ଚି ସଞ୍ଚିତ କରନ୍ତୁ—ପାଳିଛୁ । ତାଙ୍କୁ ପର—ଶତ୍ରୁ କନ୍ଦର୍ପ ପରାଭବ ଦେଲେ—ପୀଡ଼ାଦେଲେ, କାହାକୁ ଅସୁନ୍ଦର ହେବ ବିଗୁର—( ତୋତେହିଁ ଅସୁନ୍ଦର ହେବ) । ରସିକଜନମାନେ ହସି—ମୁଖରେ ଲୁଗା ଦେଇ ହସି ନିନ୍ଦା କରିବେ —ରାଧାଙ୍କର କେଡ଼େ ଅରସିକତା ନାହିଁ ବୋଲିବେ । ପ୍ରବୀଣା ଲକ୍ଷଣା—ତୋ ଚତୁର ଲକ୍ଷଣା—ହୀନପଣ ନିନ୍ଦା ସିନା ମୋତେ ବାଧିବ । ଦିବ୍ୟ ଅବଧାନେ—ଭଲ ବୁଦ୍ଧିରେ; ସେନାଯାଉ— ବିଗୁର ଦେଉ ।

Digitized by srujanika@gmail.com

ସ୍ନେହସୁଧାଗୋଳା ଜଳାପଦ୍ମମାଳା ପାଖେ ବନ୍ଧୁ ସଞ୍ଚିଥିଲୁ ।
ବିଲୋକନବେଳେ କି ବରଣ ଛଳେ ମୋ ହୃଦେ ଲମ୍ବାଇଦେଲୁ ।
ଶୁଭେ ଦେଖିଲି ଯେ । ଅଦ୍ଭୁତ ତହିଁରେ ମୁହିଁ ।
ମୁଖକଞ୍ଜେ ନେହ ଖେଳାଇ ଖଞ୍ଜନ ଲେଉଟି ବସିଲେ କେହି । ୩୩ ।
ବାଞ୍ଛାନିଧି ଲାଭ ସିଦ୍ଧି ପରାପତ ହେବ ବୋଲି ପ୍ରତେ କଲି ।
କୁଚ ଛତ୍ର ଜାନୁ ସିଂହାସନ କେଶ ଚାମର ବିଧି ଦେଖିଲି ।
ଭଲ ଜାଣିଲି ଯେ । ଭୋଗ ହେବ ଅଙ୍ଗଦେଶ ।
ଗୋଳ କୁନ୍ତଳ କେରଳ କାଞ୍ଚି ମାଳବରେ ଲୋଭ ପରକାଶ । ୩୪ ।

୩୨-୪—ଦାନକର-ଛ, ଝ, ବାଂଗୀତ ସମସ୍ତ ପୋଥିରେ ୩୦-୫—ଳଞ୍ଜ-କ, ଖ,

---

୩୩ । ସ୍ନେହସୁଧାଗୋଳା—ପ୍ରୀତିରୂପ ଅମୃତମିଶା, ଜଳାପଦ୍ମମାଳା—ନୀଳୋତ୍ପଳମାଳାକୁ, ହେ ବନ୍ଧୁ—ହେ ପ୍ରିୟ; ପାଖେ—କ ବଗୁର, ସଞ୍ଚିଥିଲୁ—ରଖିଥିଲୁ । ବିଲୋକନବେଳେ—ମୁଁ ତୋତେ ଚାହିଁଲାବେଳେ । ବରଣଛଳେ—ବରଣ ରୂପରେ, ମୋ ଗ୍ରୀବରେ କି ପକାଇଦେଲୁ । ଶୁଭେ ଦେଖିଲି—ପୁଣି ମଙ୍ଗଳ ଦେଖିଲି, ମୁଖକଞ୍ଜେ—ମୁଖରୂପ ପଦ୍ମରେ ନେହ ରୂପ ଖଞ୍ଜନ—ଖଞ୍ଜରୀଟପକ୍ଷୀ ଖେଳାଇ—ଇତସ୍ତତଃ ଚଳାଇ—ଲେଉଟି କେହି କେଉଁଠାରେ ବା କପଟ ବସିଲା । ମୁଁ ତୋତେ ଚାହିଁଲାବେଳେ ସ୍ନେହରେ ଅମୃତ ମିଶାଇ ବରଣ ଛଳରେ ଆଖି ଡୋଳା ତାଳବାରୂପ ଇନ୍ଦୀବରମାଳାକୁ ମୋ ଗ୍ରୀବରେ ଲମ୍ବାଇ ଦେଇଥିଲୁ କି ? ମୋଠାରେ ଯେବେ ସ୍ନେହ ନ ଥିଲା ଅନୁରାଗରେ ବନ୍ଧେଇ କାହିଁକି ଅଣାଇଥିଲୁ ? ସେ ସମୟରେ ଅଦ୍ଭୁତ ମଙ୍ଗଳ ଦେଖିଛି, ମୁଖପଦ୍ମରେ କଜ୍ଜଳପାଖ ପକ୍ଷୀ ଖେଳୁଥିଲା । ସେହି ମୁଖପଦ୍ମ ଖଞ୍ଜନ ଲେଉଟି କେଉଁଠାରେ ବସିଲା ମୁଁ ଜାଣି ପାରୁନାହିଁ । ଏବେ ନେହରେ କାହିଁକି ଚାହୁଁ ନାହୁଁ—ପଦ୍ମରେ କଜଳପାଖ ବସିବାର ଦେଖିଲେ ରାଜା ହୁଅନ୍ତି; ସେ ଶୁଭ କାହିଁକି ଅଶୁଭ ହେଉଛି ?

୩୪ । ବାଞ୍ଛାନିଧି—ବାଞ୍ଛାରୂପ ନିଧି, ମନୋରଥରୂପ ଧନ । ଲାଭ—ପାଇବା ସିଦ୍ଧି । ସଫଳତା ପରାପତ ହେବ—ଘଟିବ ବୋଲି ପ୍ରତେ କଲି—ବିଶ୍ୱାସ କଲି । କୁଚ—ରାଧାଙ୍କ ସ୍ତନ ଛତ୍ର—ରାଜଛତ୍ର । ଜାନୁ—ଜଙ୍ଘାଦ୍ୱୟ ରାଜସିଂହାସନ, କେଶ—ରାଧାଙ୍କ ବାଳକୁ ଚାମର ବିଧିକର—ନ୍ୟାୟରେ ଦେଖିଲି । ରାଜାଙ୍କର ଧନ, ଛତ୍ର, ସିଂହାସନ, ଚାମର ପ୍ରସିଦ୍ଧ ଥିବାରୁ—ସେ ସବୁ ରାଧାଙ୍କଠାରେ ଦେଖି ବିଚାର କରି ଜାଣିଲି—ଅଙ୍ଗଦେଶ ରାଧାଙ୍କ ଶରୀର ରୂପ ରାଜ୍ୟ ଭୋଗ ହେବ । ଗୋଳ—କାଞ୍ଚୁଲି; କୁନ୍ତଳ—ମନୋହର କେଶ । କେରଳ—କେରଳ ଦେଶ ଲୁଗା । କାଞ୍ଚୀ—କ୍ଷୁଦ୍ର ଘଣ୍ଟିଯୁକ୍ତ କଟିମେଖଳା । ମାଳାବର—ଉତ୍କୃଷ୍ଟ ରତ୍ନହାର, ଲୋଭ ପରକାଶ—ପ୍ରକଟିତ ହୋଇଛି । ଅଙ୍ଗଦେଶର ରାଜା

Digitized by srujanika@gmail.com

ଉରଜେ କରଗତ ହେଲେ ପୂରବ ତନୁଦାନ ଭୋଗ ଅଶା ।
କମଳାକ୍ଷୀ କୃପା ହେଲେ ସବୁ ହେବ ଯିବ ଏ ଦୀନଦୁର୍ଦ୍ଦଶା ।
ବାନା ଉଡ଼ିବ ଯେ । ଧ୍ରୁବଲୋକ ପରଯନ୍ତେ ।
ଦାସ ଯଶକାଶୀ ହରନାମ ସାର୍ଥ କରବୁ ଯେବେ ଜଗତେ । ୩୫ ।
ଦୟା ଧର୍ମ ଧନ ଦେଇ ପରଜନ ଏ ଦୀନକୁ କର ବନ୍ଧୁ ।
ବଳାଇ ବଳାଇ ଅବାବ କହୁଛ୍ନି ନାମ ଶୁଣି କୃପାସିନ୍ଧୁ ।
ବୋଲି ଏତକ ଯେ । 'ମୋର' ହୃଦେ କର ମାର ।
ମାରଣା ମାର କର ବୀରଦେଶରୁ ଏହୁକ୍ଷଣି ଯିବ ଫେର । ୩୬ ।
୩୫-୫—ଦାସବସକାଶୀ ଘ, ୫, ଠ.

---

ଦେବାରୁ ଗୌଡ଼, କୁନ୍ତଳ, କେରଳ, କାଞ୍ଚୀ, ମାଳବ ପ୍ରଭୃତି ଦେଶକୁ ଲୋଭ ହେଲା ।

୩୫ । ଉରଜେ—ସ୍ତନଦ୍ୱୟ । କରଗତ ହେଲେ—ହାତରେ ଧରିଲେ । ତନୁ ଦାନ—ଶରୀର ଦାନ, ଅଳ୍ପଦାନ ଭୋଗ ଆଶା—ଅଳ୍ପ ଦାନ ପୁଣ୍ୟ ଆଶା ପୂରିବ । କମଳାକ୍ଷୀ—କମଳାକ୍ଷୀ ରାଧାର କୃପା ହେଲେ ସବୁ ହେବ—ସବୁ କାର୍ଯ୍ୟ ହେବ । ଏ ଦୀନ ଦୁର୍ଦ୍ଦଶା—ଏ ଦୁଃଖିର ଦୁଃଖ ଦୂରହେବ । ( କମଳାକ୍ଷୀ କମଳା ଦେବୀ—ମହାମାୟା—ରାଧାକୃଷ୍ଣଙ୍କ ଲୀଳାକାରିଣୀ; ତାଙ୍କ ଦୟା ହେଲେ ସବୁ ହେବ) ହେ ଦାସ ଯଶକାଶୀ—ହେ ଭୃତ୍ୟର କୀର୍ତ୍ତିକୁ ଜଗତରେ ପ୍ରକାଶକାରିଣୀ । ଯେବେ ମୋର ହରିନାମ—କୃଷ୍ଣନାମ ଜଗତରେ, ସାର୍ଥ—ଅର୍ଥଯୁକ୍ତ ଯଥାର୍ଥରୂପେ ଦେଖାଇବୁ—ହରଣ କରେ ବୋଲି ହରି ପାପ ହରଣ କରନ୍ତି ବୋଲି ହରି ଯେ ଦାସର ଭୃତ୍ୟର ଯଶକାଶୀ (ଯଶ—ଅନୁଚ୍ଛଦ) ଅନୁଚ୍ଛେଦକାରିଣୀ— ଯେବେ ହରିନାମ ସାର୍ଥ କରିବୁ—ହରି ( ଯେ ଦୁଃଖ ହରଣ କରେ) ଏଠାରେ ନାୟିକା ରାଧା ଦୁଃଖ ହରଣକାରିଣୀ, ଏହି ନାମକୁ ସାର୍ଥ—ଅର୍ଥଯୁକ୍ତ କରିବୁ, ଯଥାର୍ଥରୂପେ ଦେଖାଇବୁ ତେବେ ଧ୍ରୁବଲୋକ ପର୍ଯ୍ୟନ୍ତ ଅର୍ଥାତ୍ ବିଶ୍ୱମଣ୍ଡଳରେ ତୋର ବାନା ଉଡ଼ିବ—ଯଶ ବ୍ୟାପିବ—ବା ଯେବେ ତୁ ଦୟା କରିବୁ ମୋର ହରି ନାମକୁ ସାର୍ଥ କରିବୁ । ତେବେ ସବୁଅଡ଼େ ମୋର ନାମ ବାଜିବ ( ରାଧାଙ୍କୁ ସ୍ତ୍ରୀରୂପେ କୃଷ୍ଣ ପାଇଲେ ) ଅନ୍ୟ ଅର୍ଥରେ କମଳା—ମହାମାୟା —ରାଧାକୃଷ୍ଣ ପ୍ରେମଲୀଳା ସଙ୍ଘଟନକାରିଣୀଙ୍କ ଦୟା ହେଲେ ଏ ଦୁଃଖ ଯିବ, ତୁସ ମଧ୍ୟ ଦାସ ଯଶକାଶୀ ହୋଇ ଯେବେ ରାଧାଙ୍କୁ ହରଣ କରିବା ହେତୁ ହରି ନାମକୁ ସାର୍ଥ କରିବେ, ତେବେ ସବୁଦି ଯଶ ବାଜିବ ।

୩୬ । ହେ ବନ୍ଧୁ—ହେ ପ୍ରାଣ ମିତଣି ଦୟା, ଧର୍ମ ଓ ଧନ ପ୍ରଦାନପୂର୍ବକ ଲୋକେ, ଦୀନ—ଦରିଦ୍ର, ଅସହାୟଙ୍କୁ ପରଜନ—ଭୃତ୍ୟ କରନ୍ତି । ସେହିପରି

Digitized by srujanika@gmail.com

ମୃଗଶାବକାକ୍ଷୀ ଯାବକଲେଖନ-ଆଶାମାତ୍ର ଅଛି ରଖି ।
କେତେ ପ୍ରଭୁପଣ କରନ୍ତୁ ମୋଠାରେ ଦେଖାଯିବ ଚନ୍ଦ୍ରମୁଖି ।
ଇଚ୍ଛା କରନ୍ତି ଯେ । ଗୁଣ ଅନୁସରଣକୁ ।
ଖଗପତସ୍ୱତ ବନ୍ଧ ଗୃହଁଥିବ ତୋ ଆଜ୍ଞା ବିତରଣକୁ । ୩୭ ।
ବେଶଶେଷ-ମୁଖଦେଖା ଦରପଣ-ପଣ ମାଗିବାକୁ ମନ ।
ଫୁଲଗୁନ୍ଥା ମାଳୀ ବେଶକଳ୍ପ ଅଳୀଗଣ ସଙ୍ଗେ ଗଣ ଧନ ।
ଶାଢ଼ୀ ସେବାକୁ ଯେ । ଲୋଭକରେ ଅପଘନ ।
ଜାନୁସିଂହାସନ ହୃଦସ୍ଥଶୟନ ଏ ତ ବଡ଼ ଚୋଠଧନ । ୩୮ ।

---

ତୁମ୍ଭେ ମୋତେ କର, (ବା ଦୟାରେ ଧର୍ମରୂପ—ଲୌକିକ ଧର୍ମରୂପ ଧନକୁ ଜଳାଞ୍ଜଳି ଦେଇ) ମୋତେ ନଜର ଚାକର କର । ତୋର ନାମ କୃପାସିନ୍ଧୁ—ଦୟାର ସାଗର ବୋଲି ଲୋକମୁଖରୁ ଶୁଣି । ବଳାଇ ବଳାଇ—ମନକୁ ପ୍ରବର୍ତ୍ତାଇ, ଆହାବ—ଉତ୍ସପିକର, କହୁଛି । ହୃଦେ କର ମାର—ଛାତିରେ ହାତ ଦେଇ 'ତୁ ମୋର' ଏତିକ କହ, ତେବେ ମାରଣା ମାର—ଖଣ୍ଡା କାମର, କର—ହାତ, ବୀରକେଶରୁ—ନଖରୁ ଫେରିଯିବ—କନ୍ଦର୍ପ ହସ୍ତରୁ ହାତ କାଢ଼ିଦେବ—ସେ ହପତ ହୋଇଯିବ, ଆଉ ତାର କରଣି କାଟିବ ନାହିଁ ।

୩୭ । ହେ ମୃଗଶାବକାକ୍ଷି—ଛୁଆ ହରିଣର ଆଖିପରି ଆଖି ଯାହାର ଅର୍ଥାତ୍ ଚଞ୍ଚଳନୟନେ ରାଧେ; ଯାବକ ଲେଖନ—ପାଦରେ ଅଳତା ଦେବା ଅର୍ଥାତ୍ ଭୃତ୍ୟ ହେବା ଆଶା ରଖିଛି । ପ୍ରଭୁପଣ—ହାକିମଗିରି । ଗୁଣ ଅନୁସରଣକୁ—ତୋର ଦେହ ଶୁଶ୍ରୂଷା ସେବାକୁ । ଖଗପଞ୍ଚଶତ—ଗରୁଡ଼ର ଭାବ । ତୋର ଆଦେଶ ଦାନକୁ ବିଷ୍ଣୁଙ୍କ ଆଗରେ ଗରୁଡ଼ ହାତ ଯୋଡ଼ି ବସିଲାପରି ଗୃହିଁଥିବ । ସବୁ ମେଳରେ ସେବକ ହୋଇ ତୋର ସେବା କରିବ ଓ ହୁକୁମ ତାମିଲ କରିବ ।

୩୮ । ବେଶ ଶେଷ ମୁଖ ଦରପଣ ଦେଖା ପଣ—ତୋର ବେଶ ଶେଷ ପର୍ଯ୍ୟନ୍ତ ମୁଖ ପାଖରେ, ଦର୍ପଣ—ଆରସି ଦେଖାଇବା ପୁରସ୍କାର ବା ମୂଲ ମାଗିବାକୁ ମୋ ମନ ଅର୍ଥାତ୍ ଦର୍ପଣ ଦେଖା ଚାକର କରିବା ମୋ ଇଚ୍ଛା । ଫୁଲ ଗୁନ୍ଥିଲା ମାଳୀ ସଙ୍ଗରେ ଓ ବେଶ କଲା ଆଳୀଗଣ—ସଖୀମାନଙ୍କ ସଙ୍ଗରେ, ମୋତେ ଗଣ—ଗଣନା କରି ଏଥି ମୁଁ ଇ ଚାକର ଦେ । ଅପଘନ—ମୋର ଦେହ ତୋର ଶାଢ଼ୀ ସେବାକୁ ଲୋଭ କରେ । ତୋ ପାଲଙ୍କୀ ଲୁଗାକୁ କାନ୍ଧରେ ପକାଇବାକୁ ବା ଯୋଡ଼ି ହେବାକୁ ଲୋଭ କରେ । ମୋର ଜାନୁ ଜଙ୍ଘାଦ୍ୱୟ ତୋର ବସିବାକୁ ସିଂହାସନ ପୀଠ, ମୋର ହୃଦୟ—ଛାତି ଶୟନ-ଶଯ୍ୟା ବିଷୟରେ ଚୋଠଧନ—ପୂର୍ଣ୍ଣ ଅଧିକାରର ପଦାର୍ଥ ।

Digitized by srujanika@gmail.com

ପାଣି ପଦ୍ମେ ପୂଜ କୁଚସ୍ୱୟମ୍ଭୁକୁ ମନାଇବୁ ଏ ଘୃଣରେ ।
ଦର୍ପକର ଦର୍ପହର ଚନ୍ଦ୍ରଶିର ବରଦ କାମିତୋଷରେ ।
ହେବ ନାହିଁ କି ଯେ । ହରିତ ବାସବିଳାସୀ ।
ଶ୍ରୀକର ଭାବନା ତେଜି ବସିଅଛି ଗଉରୀ କୋଳରେ ପଶି । ୩୯ ।
ହୃଦସ୍ଥିତ ସେ ହେବାପାଇଁ ଗଉରୀପଦ ଧର ମନାଇବୁ ।
ମାର କି କରିବ କଙ୍କିଣୀକ୍ୱଣିରେ ସେହୁକାଳେ କଣାଇବୁ ।
ତାର ମୋହୋର ଯେ । ମିଳନ ହେବ ପ୍ରକାଶ ।
ରତି ଅଣ କଳ୍ପ ଦୋଷ କି ଯେଣିକେ ଅଭେଦ ହେବ ମାନସ ।୪୦।
୩୯-୫—ବନ୍ଧ ଅଚ୍ଛୁ ଛ, ଝ, ବ୍ୟଗତ ସବୁ ପୋଥିରେ ।

---

୩୯ । ତୋ କୁଚ ସ୍ୱୟମ୍ଭୂକୁ—ତୋ ସ୍ତନରୂପ ଶିବଙ୍କୁ, ପାଣି ପଦ୍ମେ—ମୋର ହସ୍ତରୂପ ପଦ୍ମରେ ପୂଜା କର—ଶିବଙ୍କ ଠାରେ ପଦ୍ମ ଦେଇ—ତୋ ସ୍ତନରେ ହାତ ଦେଇ ମନାଇବ ସନ୍ତୁଷ୍ଟ କରାଇବ । ହେ ଦର୍ପକର ଦର୍ପହର—ହେ କନ୍ଦର୍ପର ଗର୍ବନାଶକ, ହେ ଚନ୍ଦ୍ରଶେଖର, କାମିତୋଷରେ—କାମୁକ ପୁରୁଷର ସନ୍ତୋଷରେ, ବର ଦେବନାହିଁ କି ? ହେ ହରିତ ବିଳାସୀ—ହେ ଦିଗମ୍ବର ପକ୍ଷେ ହେ ରାଧାସ୍ତନ ରୂପ ଶିବ ! ହେ କନ୍ଦର୍ପ ଗର୍ବଭଞ୍ଜନ, ହେ ନଖଚନ୍ଦ୍ର ଭୂଷିତ, କାମିତୋଷରେ—କାମୀ କୃଷ୍ଣଙ୍କ ତୋଷରେ ବରଦ ଫଳ ଦେବନାହିଁ କି ? ଶିବ ପକ୍ଷରେ—ହେ ହରିତ ବାସ ବିଳାସୀ—ଦିଗ ରୂପ ବସ୍ତ୍ରରେ ବିଳାସୀ ଅର୍ଥାତ୍ ଦିଗମ୍ବର । ଶ୍ରୀକର—ଲକ୍ଷ୍ମୀ କରେ ଅର୍ଥାତ୍ ଐଶ୍ୱର୍ଯ୍ୟର ଭାବନା ଛାଡ଼ିଦେଇ ଗୌରୀ—ପାର୍ବତୀ କୋଳରେ, ରାଧାସ୍ତନ ପକ୍ଷେ - ହେ ହରିତ ବାସବିଳାସୀ—ଶାଗୁଆ ( ବା ନେଳିଆ ) ଲୁଗାରେ ଶୋଭା ପାଉଥିବା ସ୍ତନ, ଶ୍ରୀକର—ଶୋଭାଯୁକ୍ତ ଶ୍ରୀକୃଷ୍ଣଙ୍କ କର—ଭାବନା ତ୍ୟାଗ କରି—ସଂଯୋଗ ଆଶା ଛାଡ଼ି, ଗୌରୀ ରାଧାଙ୍କ କୋଳରେ—ବକ୍ଷ ଦେଶରେ ସର୍ବଦା ରହିଅଛି ।

୪୦ । ସେ ଶିବ ହୃଦସ୍ଥିତ ହେବାପାଇଁ—ମନ ଭିତରେ ରହିବାପାଇଁ, ପାର୍ବତୀଙ୍କ ପାଦ ଧରି—ପାଦତଳେ ପଡ଼ି, ମନାଇବ – ସନ୍ତୋଷ କରିବ । ସ୍ତନ ପକ୍ଷେ —ଗ୍ରୀବା ଉପରେ ରହିବାପାଇଁ, ଗୌରୀ—ରାଧାର ପାଦ ଧରି ମନାଇବ । ସେହୁକାଳେ—ସେହି ସମୟରେ, କଙ୍କିଣୀ କଣିରେ କଙ୍କିଣୀର—କଣି କଣି ଶବ୍ଦରେ ମାର କଣ କରିବ ? କଣାଇବ—ରାଧାଙ୍କ ଦ୍ୱାରା କନ୍ଦର୍ପକୁ କଣିନେବ । ମୋହର ଯେ କନ୍ଦର୍ପର ମୋହର, ମିଳନଭାବ ପ୍ରକାଶ ହେବ । ରତିଅଣ କଳ୍ପ ଦୋଷ—ରାଧାର ରମଣ ଅଣ କଳ୍ପ ଦୋଷ, କାମର ସ୍ତ୍ରୀକୁ ଅଣ କଳ୍ପ ଦୋଷ, ମାନସ—କନ୍ଦର୍ପ ଚିତ୍ତ ଓ ମୋ ଚିତ୍ତ ଅଭେଦ ହେବ—ଏକ ହେବ ବା ମିଶିଯିବ । ମାନସ ବୃତ୍ତି ଏକ ହେଲେ ଦୋଷ ହୁଏନାହିଁ ।

Digitized by srujanika@gmail.com

ତୁ ତ ସୁରତରୁ ସୁର ତରୁଁ ସୁର-ତରୁଣୀମଉଳିଭୂଷା ।
ଏଣୁ ହେଲା ରସଦାନ ପୂର୍ଣ୍ଣ ହେବ ମୋହର ସବୁ ଏ ଆଶା ।
ଅବ୍ଜ-ମୁଖକୁ ଯେ । ନେତ୍ରାଳି ମନ ଚକୋର ।
ଆଶ ରହିବ କି ଦରପଣ ଅଙ୍ଗୀକାର କଲେ ରାମାବର । ୪୧ ।
ହର ଗରଳ ପାନ କଲେ ଶୁଣିଛୁ ପର ଉପକାର କରି ।
କି ଯତନ କରି ପ୍ରେମ କୃଷି କରିଥିଲୁ ଯାଉଅଛୁ ସରି ।
ଥରେ କହିଲୁ ଯେ । ପଛେ ନ କାଢ଼ିବୁ ଦୋଷ ।
ଅମ୍ବରଚ୍ଛନ୍ନ ପୟୋଧର ବରଷା କରୁନାହିଁ ଘନରସ । ୪୨ ।
ମହାଭୂତଜ୍ଞାନୀ ବୋଲି ପଢ଼ୁଅଛୁ କେବେ ହୋଇବ ମିଥୁନ ।
ମନ୍ଦାର-ଅଧର-ଚଳନ ସୂଚକ ଯୋଗ ହୋଇଅଛି ଲେଖନ ।
ଆଶା ଦେଉଛି ଯେ । ଶୂଷ୍କହଂସ ପରି ହୋଇ ।
ଭାଷା ପଦରେ ମନ୍ଦସ୍ମିତପ୍ରଦେଶ ବଢ଼ାଇ ହୋଇବ ସ୍ଥାୟୀ । ୪୩ ।

---

୪୧ । ସୁରତରୁ—ରତିଦାନ ଦେଉଛୁ, ସୁ ସୁରତରୁ—କଳ୍ପଲତା । ସୁରତରୁଣୀ ମଉଳିଭୂଷା—ଦେବସ୍ତ୍ରୀମାନଙ୍କ ମୁକୁଟମଣି ତ । ହେ ରସଦାନ—ରାଧେ । ଏସବୁ ଆଶା ମୋର ପୂର୍ଣ୍ଣ ହେବ । ଅବ୍ଜମୁଖକୁ—ପଦ୍ମମୁଖକୁ ଓ ଚନ୍ଦ୍ରମୁଖକୁ—ନେତ୍ରାଳି—ମୋ ଚକ୍ଷୁ ଭ୍ରମର ଓ ମନ ଚକୋର ଅଟେ । ଭ୍ରମର ପ୍ରୀତି ପଦ୍ମଠାରେ, ଚକୋର ପ୍ରୀତି ଚନ୍ଦ୍ରଠାରେ—ସେହିପରି ଚକ୍ଷୁ ଓ ମନ ତୋର ମୁଖଠାରେ ପ୍ରୀତିଯୁକ୍ତ । ହେ ରାମାବର—ରମଣୀରତ୍ନ । ଆଶ—ଇଚ୍ଛା । ଅଙ୍ଗୀକାର—ସ୍ୱୀକାର, କଲେ ଦର ପଣ ରହିବ କି—ଭୟ ରହିବ କି—ଛାଡ଼ିଯିବ । (ବା ଅଙ୍ଗୀକାର କଲେ ଦରପଣ ଆଶ—ଭୟର ଆଶା ରହିବ କି ?)

୪୨ । ପର ଉପକାର କରି—(ବିଷ ରହିଲେ ସଂସାରରେ ବହୁତ ଅନିଷ୍ଟ କରିବ) ତହୁଁ ତାହା ଶିବ ଗଳାଧଃ କଲେ । କି ଯତନ କରି—କେଉଁ ଯତ୍ନରେ । ପ୍ରେମକୃଷି କରିଥିଲୁ—ସ୍ନେହର ଖେତ କରିଥିଲୁ । ତା ସରିଯାଉଛି—ତା ନଷ୍ଟ ହେଉଛି । ପଛେ ଦୋଷ ଧରିବୁ ନାହିଁ । ଅମ୍ବରଚ୍ଛନ୍ନ ପୟୋଧର—ଆକାଶ ଘୋଡ଼ିଥିବା ମେଘ ବା ଲୁଗା ଘୋଡ଼ାଇ ଥିବା ସ୍ତନ । ଘନରସ—ବର୍ଷାପାଣି । ଶୃଙ୍ଗାର ରସ ବୃଷ୍ଟି କରୁନାହିଁ—ତୁ ନିଜ କାମ କଥା କହୁ ନାହୁଁ ।

୪୩ । ହେ ରାଧେ ମହାଭୂତଜ୍ଞାନୀ—ପଞ୍ଚମହାଭୂତ—କ୍ଷିତ୍ୟପ୍‌ତେଜ ମରୁଦ୍‌ବ୍ୟୋମ ବିଷୟକ, ତତ୍ତ୍ୱ—ବିଷୟକ ଶାସ୍ତ୍ର (ଜ୍ୟୋତିଷଶାସ୍ତ୍ର) ଜ୍ଞାନୀ

Digitized by srujanika@gmail.com

ଧନ ଘେନିବୁ ବା କେ ତୁମ୍ଭେ ତାହାଙ୍କୁ ଚାହିଁ ତ ଏହା ଲେଖିଛ ।
ମନ ଗୁଣ ପୂର୍ଣି କି ତବ ଜାଣିଲ ଏପଦ ଭବ ବୋଲୁଛ ।
ଯଷ୍ଟି ଅଷ୍ଟିକି ଯେ । ଦେଖି ନ ଥିଲେ କି ହେଲ ।
ଅନ୍ତରଗତର ପୀରତି ତାଙ୍କର ଅଭେଦତା ବନ୍ଧୁ ଭଲ । ୪୪ ।
ବୋଲିବାର ଅବା ହେବ ତୃଷାବନ୍ତ ପାଶକୁ ଯାଏ କି ଜଳ ?
ଦେଖ ନଦୀ କେତେ ଦୂରରୁ ଆସଇ ସିନ୍ଧୁ-ସ୍ନେହେ ଲଂଘି କୂଳ ।
ଅଭିସାରିକା ଯେ । ବୋଲନ୍ତି ସିନା ପ୍ରୀତିସୁ ।
ଶଶୀ ଚୋଷିବାକୁ ଜଳଧି ରଷି ଅଟେ ଏମାନ ନୁହଇ ନୂଆ । ୪୫ ।

---

ବୋଲି ପଗ୍ରୁଛୁ । ମିଥୁନ—ଆଷାଢ଼ମାସ କେବେ ହେବ । ମହାଭୂତ ଜ୍ଞାନ—କାମଶାସ୍ତ୍ର ମର୍ମଜ୍ଞାନୀ ବୋଲି ପଗ୍ରୁଛୁ । ମିଥୁନ—ଆମ ଦୁହିଁଙ୍କ ସୁଯୋଗ କେବେ ହେବ । ମନ୍ଦାର ଅଧର ଚଳନ—ଶନି ମଙ୍ଗଳଙ୍କ ଜାତରେ ସଗ୍ରହସୂଚକଯୋଗ ଲେଖନ ଦର୍ଶନ ହୋଇଛି—ମନ୍ଦାର ଫୁଲ ସଦୃଶ ଓଠର କମ୍ପନସୂଚକ ଯୋଗ ଦେଖିଛୁ । ମନ୍ଦାର—ମନ୍ଦାର ସଦୃଶ ଲାଲ ଅଧର ଚନ୍ଦନ—ନମ୍ର ଶୃଙ୍ଗବାନ ସୂଚକ ଯୋଗ—ମର୍ମସ୍ଥାନ ଚଳନ ସୂଚକ ଯୋଗ ହୋଇଛି । ଅଶାତୃଷ୍ଣା ଦେଖିଛୁ । ଶୁଷ୍କ ଦଂସ ପଗ ହୋଇ—ଶୁଷ୍କିଲ ସ୍ଥାନରେ ଦଂଶ ଆଶା କଲୁପରି; ହେ ସୁନ୍ଦରି ପୁରନ୍ଦରୀ—ହେ ଅତି ସୁନ୍ଦରୀ;ଷଷ୍ଠୀ ପଦରେ—ଛଠି ପଦକରେ ବା କଥା ପଦକରେ, ବଢ଼ାଇ—ତୁମ୍ଭ ବଡ଼ପଣ, ସ୍ଥାୟୀ—ସ୍ଥିରହେବ ।

୪୪ । ହେ ଧନ—ସଖି । ମନେ ଘେନରୁ—ବଗୃହିରୁ । ମୋର ମନ ଓ ଗୁଣ—ସୌନ୍ଦର୍ଯ୍ୟ ସୌଶୀଲ୍ୟାଦ କାହିଁକି ଜାଣିଲ, ଯେ ଏପରି କହୁଛ । ତାଙ୍କର—ଉଭୟଙ୍କର (କୃଷ୍ଣ ଓ ରାଧାଙ୍କର) ଅନ୍ତରଗତର ପୀରତି—ହୃଦ୍‌ଗତ ସ୍ନେହ ଅଭେଦ ତା କଲି—ତୋତେ ମୋତେ ଏକ କଲ: ମିଶାମିଶି କଲ । "ବ୍ୟତିଷଜତି ପଦାର୍ଥାନାନ୍ତର କୋଽପି ହେତୁଃ ନଖଲୁ ବହିରୁପାଧୀନ୍ ପ୍ରୀତୟଃ ସଂଶ୍ରୟନ୍ତେ" ଉତ୍ତର ରାମଚରିତମ୍ ।

୪୫ । ତୃଷାବନ୍ତ ପାଶକୁ—ତୃଷାତୁର ପାଖକୁ ଜଳଯାଏ କି, ଏହା ଭୁ କହିବୁ । କିନ୍ତୁ ପ୍ରକୃତରେ ଏହା ହୋଇଥାଏ । ସମୁଦ୍ର ଠାରେ ପ୍ରୀତି ହେତୁ ନଦୀ ଦୂରରୁ ତା ନିକଟ ଯାଏ । ଅଭିସାରିକା ସ୍ତ୍ରୀ—କାନ୍ତନିକଟକୁ ଯେଉଁ କାମିନୀ ଯାଏ ତାକୁ ପ୍ରେମବତୀ କହନ୍ତି । ଚନ୍ଦ୍ରର ତୋଷଣନିମିତ୍ତ ନଦୀ—ସମୁଦ୍ର ନିକଟକୁ ଯାଏ । ହେ ରାଧେ ! ତୁ ପିତୃକୁଳ ଓ ପତିକୁଳ ଲଜ୍ଜା ମୋ ନିକଟ ଅଭିସାର କରି ଛାଡ଼ ତେବେ ଅଧିକ ପ୍ରୀତିବତୀ ବୋଲି ଜାଣିବା ।

Digitized by srujanika@gmail.com

ଯାହା ବିନା ଯାର ପ୍ରକାର ନାହିଁ ତା ବିନା ତାର କି ସୁଖ ।
ନିଧି ବିନା ଫଣୀ. ବନ ବିନା ମୀନ ଯେମନ୍ତ ତୁଅଇ ଦେଖ ।
ନାସ୍ତି ମରଣ ଯେ । ପ୍ରତ୍ୟକ୍ଷ ଲୋକଙ୍କୁ ସିନା ।
ପ୍ରେମବର୍ଣ୍ଣାବଳୀ ଅନ୍ଧ ମୁହିଁ ହେଲି ପ୍ରତିଚକ୍ଷୁ ତୁ ନବୀନା । ୪୬ ।
ମାରଣର ଲୋହ ଫଳ ଲଗିଅଛି ହୃଦରେ ବିଶେଷ ମୋର ।
ଚୁମ୍ବ ଚୁମ୍ବକରେ ହର ଓଷ୍ଠସୁଧା ମଞ୍ଜିଷ୍ଠ ଦାନ କର ।
ସ୍ମର ଜ୍ୱରରେ ଯେ । ରୁଚି ନାହିଁ ଅନ କିଛି ।
ସ୍ତନ ମାତୁଳାଙ୍ଗ ବିନା ମନ ଆଜ ସବୁ କରୁଅଛି ଛି ଛି । ୪୭ ।
ଉତ୍କଳ ନଦୀ ବଢ଼ିବିରେ ଧୀର ଧୈର୍ଯ୍ୟତଟ ଦେଉଛି ବୁଡ଼ାଇ ।
ଅତୁଲ ସ୍ରୋତରେ ବିଭ୍ରମ ଭଉଁରୀ ଭିତରେ ପଡ଼ି ଅଛଇ ।
କୋଳଦାନରେ ଯେ । ପାରି ହେବି ଅନାୟାସେ ।
ଚଟତରୁ ଘଟନାରେ ଘଟ ଅଛି ଉପାୟ ଅନ୍ୟ ନ ଦିଶେ । ୪୮ ।

---

୪୬ । ବନ ବିନା—ଜଳ ବିନା । ସ୍ତ୍ରୀ ପରଶ—ସ୍ପର୍ଶମଣି । ପୁରୁଷ ଦେହ ଲୁହା—ସ୍ପର୍ଶମଣି ଲାଗିଲେ ଲୁହା ସୁନା ହୁଏ—ତୋ ଦେହ ପରଶ ଲାଗିଲେ ମୁଁ ସୁନା ହେବି । ଯେପରି ଦେଖାଯାଉ ନ ଥିବା ଲୋକଙ୍କୁ ପରଚକ୍ଷୁ ଦେଖାଇଦିଏ । ପ୍ରେମବର୍ଣ୍ଣାବଳୀ ଅନ୍ଧ—ପ୍ରେମ ଅକ୍ଷରରେ ମୁଁ ଅନ୍ଧ, ତୁ ମୋର ସ୍ୱଚ୍ଛପ୍ରତିଚକ୍ଷୁ । ମୁଁ ସ୍ନେହାନ୍ଧ, ପ୍ରୀତିବର୍ଣ୍ଣାବଳୀ ଦେଖାଇବାରେ ତୁ ପ୍ରତିଚକ୍ଷୁ ।

୪୭ । ମାରଣର—କନ୍ଦର୍ପ ଶରର, ଲୋହଫଳ—ଶରର ମୁନ—ଅଗ୍ରଭାଗ ମୋର ଛାତିରେ ଗାଢ଼ଭାବରେ ଲାଗିଅଛି । ହେ ସଖେ ଚୁମ୍ବନରୂପ ଚୁମ୍ବକରେ ତାକୁ ହର—ଛାତିରେ ବନ୍ଧ ହୋଇଥିବା ଶରର ମୁନକୁ କାଢ଼ି, ଓଷ୍ଠ ସୁଧା—ତୋର ଓଷ୍ଠାମୃତ ରୂପ ମଞ୍ଜିଷ୍ଠ—ଉତ୍କୃଷ୍ଟ ଔଷଧ ଲେପିଦିଅ ସ୍ମରଜ୍ୱର—କାମଜ୍ୱର ହୋଇଛି ଅନ୍ନ କିଛି ରୁଚୁ ନାହିଁ, ତୋର ସ୍ତନରୂପ ମାତୁଳାଙ୍ଗ-ଲେମ୍ବୁ ଛଡ଼ା ଆଉ ସବୁ ପଦାର୍ଥକୁ ଛିଛି କରୁଛି । ତୋ ସ୍ତନକୁ ପ୍ରଦାନ କର ।

୪୮ । ଉତ୍କଳ—ଉତ୍କଣ୍ଠାରୂପ ନଦୀ ବଢ଼ିରେ, ଧୀର—ବୁଦ୍ଧିର ଧୈର୍ଯ୍ୟରୂପ; ତଟକୁ—କୂଳକୁ ବୁଡ଼ାଇ ଦେଉଛି । ଅତୁଳ—ଅତୁଳତା; ଆକୁଳରୂପ ସୁଅରେ

Digitized by srujanika@gmail.com

ମଦାଳସୀ ଅଙ୍ଗେ ମିଶିବାକୁ ରଙ୍ଗେ ଅତୁର ହୋଇଛି ଦେହ ।
ମନ ପରି ହୋଇଥିଲେ କି ଦୁଅନ୍ୟା କେହୁ ସମ୍ଭବ କହ ।
ବାତ ସଞ୍ଜାତ ଯେ । ହୋଇଥିଲେ ଥିବ ଗତି ।
ମନ ଅନାୟତ୍ତ ମଣାଇ ମଣଇ ପରସ୍ପରେ ସୁରସବତୀ । ୪୯ ।
ଦୁଖ ନିଗ୍ରହଲ ଜଣାଣ ମଣାଣ କରିବା ଅସ୍ୱତ୍ୱ ମୋର ।
ଭଗତୀ ଘେନିବା ବରଦାନୀ ହେବା ଅସ୍ୱତ୍ୱ ମହାଦେବୀର ।
ସବୁ କହିଲି ଯେ । ଯାହା ଇଚ୍ଛା ତାହା କର ।
ଦେଖ ଅଣ କର ନାଶ ହେବ ଦୋଷ ବହୁଅଛି କଳାକର । ୫୦ ।
ମୁରୁଛି ବସିଛି ପ୍ରାଣଅଣା କର ମୁଁ ଅଛି ବୋଲିଲେ ଅଛି ।
ଅଙ୍ଗୀକାରଲେଖ ଲେଖ ନ ଲେଖିଲେ ନ ଲେଖ ମୋ ନା କରୁଛି ।
ବର୍ଣ୍ଣାବଳିକି ଯେ । ଲିହୁ ପୋଛି ଦେଲି ପର ।
ନାହିଁ କଲେ ନାହିଁ ଏହୁ ସନମତ ବୁଢ଼ କର ଅଛୁ ଧର । ୫୧ ।

---

୪୯ । ମଦାଳସୀ—କାମମଦରେ ଶରୀର ଆଳସ୍ୟଯୁକ୍ତ ଏପରି ଯେ ସ୍ତ୍ରୀ, ତା ଅଙ୍ଗରେ ରଙ୍ଗେ— ରତିକ୍ରୀଡ଼ାରେ ମିଶିବାକୁ ଦେହ ଆତୁର ହେଉଛି । ମନ ଯେପରି ସର୍ବଦା ସ୍ଫୁରୁଛି ସେହିପରି ଦେହ ହୋଇଥିଲେ କିପରି ଦୁଃଅନ୍ୟା । କିପରି ସମ୍ଭବ— କିପରି ହେବ ମୋତେ କହ । ମନ ବାତସଞ୍ଜାତ—ମନ ଯେ ପବନ ହୋଇଥିଲେ, ଗତି— ଉପାୟ ଥିଲେ । ମନ ଅନାୟତ୍ତ—ଅଧୀନ ନୋହିବାରୁ, ମଣୁଷରେ ମଣି ପରି ମନ ଭୂମି ପାଖରେ ବୁଲୁଅଛି ।

୫୦ । ଦୁଃଖ ନିଗ୍ରହଳ— ଦୁଃଖହେତୁ ବଳନା କର, ଜଣାଣ—ଜଣାଇବା । ମଣାଣ—ମନାଇବା । ଅସ୍ୱତ୍ୱ—ଅଧୀନ । ବରଦାନୀ ହେବା— ଉତ୍କୃଷ୍ଟ ବର ଦାନ କରିବା । ମହାଦେବୀର—ସ୍ତ୍ରୀର । ଅଣ କରି ଠେକୁଅ କଳାକର—ଚନ୍ଦ୍ର ଦୋଷ ବହୁଛି । ଠେକୁଅ ଯେପରି ଚନ୍ଦ୍ରଙ୍କ କିରଣ ପାନ ନ କରିପାରି ମରି ତାଙ୍କ ଦେହରେ କଳଙ୍କ ହୋଇ ରହିଲା ସେହିପରି ତୋତେ ଅଣା କରୁଛି; ତୋ ରତି ନ ପାଇଲେ ମୁଁ ମରିବି, ତୁ ପୁରୁଷହତ୍ୟା ପାପ ଧରି ପାତକୀ ହୋଇ ଜଗତରେ ରହିବୁ ।

୫୧ । ମୁରୁଛି—ମୂର୍ଚ୍ଛା । ତୁ—ମୁଁ ଅଛି ବୋଇଲେ ଅଛି—ମୁଁ ଜୀଇଁ ଅଛି । ଅଙ୍ଗୀକାର ଲେଖ ଲେଖ—ସ୍ୱୀକାର କରିବା ଚିଠି ଲେଖ । ନ ଲେଖିଲେ ମୋ

Digitized by srujanika@gmail.com

ଧୈର୍ଯ୍ୟ ଅଚଳ କାମ ପ୍ରେମାନଳ ଲଗାଇ କରେ ଦହନ ।
ବିଗ୍ରହ ହରଣ ପଳାଇଣ ଶରୀର କଲେ ତବ ଶୋଭାବନ ।
କର ଥରର ଯେ । ବାନ୍ଧି କଣ୍ଠ ନୋହେ ବର୍ଣ୍ଣ ।
ଦୋଷ ଦେଖାଯିବ ନାହିଁ ଗୁଣଗ୍ରାହିଠାରେ ମୁଁ ଅଛି ପରଖି । ୫୨ ।
ସବୁ ସଖୀଙ୍କି ଏ ଲେଖାରେ ସଙ୍ଖୋଳାବଳ, କହୁଛି ଏଥିକ ।
ଦୀନାବଧାନ ଅବକାଶେ ଜଣାଇ ମଣାଇ କହ ଧନୀକ ।
ମୋତେ ଗଣିବ କମ । କ୍ରୟ ମାଗେ ଜଣେ କର ।
ସେବା ଦେଖି ପଛେ ବରକନ ଦେଇ ଦେବେ ଭାବେ ଜୀବେଶ୍ବରୀ । ୫୩ ।
ଜଗବନ୍ଦନୀ ପୀଇ ଭବବେଧିନୀ ପଜନୀ କାହିଁକି ହେବ ।
ଯୋଗେ ହେଲେ ସ୍ନେହାଧୀନା ଗୁଣେ ମୋ ହେଳାକି କର ଧରିଯିବ ।
ପ୍ରଭୁପଣକୁ ଯେ । ମୃଦବ ଦେଖିବ ଯିନା ।
ଖରପାଦ ଧରି ହର କଢ଼ାଇଲେ ସେବକବଶ୍ୟଳବାନା । ୫୪ ।

---

୫୨ । ମୋର ଧୈର୍ଯ୍ୟରୂପ ଅଚଳକୁ—ପର୍ବତକୁ, କାମ—କନ୍ଦର୍ପ, ପ୍ରେମାନଳ—ତୋ ପ୍ରତି ସ୍ନେହଅଗ୍ନିକି, ଲଗାଇ ଦହନ କରେ—ପୋଡ଼ୁଛି । ବିଗ୍ରହ ହରଣ—ମୋ ବିଗ୍ରହ ରୂପ ହରଣ ପଳାଇବ । ଶରୀରର ଶୋଭାରୂପ ବନକୁ ଆଶ୍ରୟ କର ବହନ୍ତ । ବାନ୍ଧି କଣ୍ଠ—କଣ୍ଠ ବଳ ବଳ ଗୁଣ ବର୍ଣ୍ଣନ କର । କର ଥରର— ଯାବି କମ୍ପରୁ ଥରୁଛ । ଗୁଣଗ୍ରାହିଠାରେ—ତୋଠାରେ, ମୋର ଦୋଷ ଧରା ହେବ ନାହିଁ, ମୁଁ ଏହା ପରୀକ୍ଷା କରିଛି ।

୫୩ । ସଙ୍ଖୋଳା କର—କୁଶଳ ପ୍ରଶ୍ନ ପଚାର, ବଳ—ବଳେଇ, ବହଳ ପଢ଼, ଏଥିକ—ଏ ବିଷୟପାଇଁ କହୁଛି । ଦୀନାବଧାନ ଅବକାଶେ—ଅବସର ସମୟରେ ଦୀନଜନକୁ, ଅବଧାନ—ଅନୁଗ୍ରହ କର । ଭାବେ—ହୃଦୟରେ । ବେତ ବରକନ— ବେତରୂପ ମୂଲ ଦେବେ ।

୫୪ । ଜଗବନ୍ଦନୀ—ସଂସାର ପୂଜ୍ୟା, ପଜନୀ—ବାଧା । ପୀଇ ଭବବେଧିନୀ—ସ୍ନେହବନୀ । ଯୋଗେ—ଯୋଗ ପଡ଼ିଥିଲେ; ଗୁଣେ—ଗୁଣିଥିବା ହେତୁ; ସ୍ନେହାଧୀନା—ସ୍ନେହବତୀ ସ୍ୱଧୀନ, ଧରିଯିବ—ଧରିବ । ପ୍ରଭୁପଣକୁ—ବଡ଼ଲୋକ ବ୍ୟବହାରକୁ, ସୁନ୍ଦର ଦେଖିବ ଯିନା—ତେବେ ସୁନ୍ଦର ଦର୍ଶନ । ହର—ବିଷ୍ଣୁ । ଖରପାଦ—ଗଧପାଦ । ସେବକବଶ୍ୟଳବାନା—ଭୃତ୍ୟ ସ୍ନେହର ପତାକା ଉଡ଼ାଇଲେ । ଜରାସନ୍ଧକୁ ମାରିବାବେଳେ (ବନ୍ଦୀଭୂତ ରାଜାମାନଙ୍କୁ ମୁକ୍ତ କରିବାପାଇଁ) ଗଧପାଦ ଧରିଥିଲେ ।

Digitized by srujanika@gmail.com

ଏହା ପଢ଼ୁ ପଢ଼ୁ ଗରଗର ପ୍ରେମେ ହୃଦ ଜରଜର ରସେ ।
ଥରଥର ତନୁ ଝରଝର ଲୁହ ବହିଲା ସ୍ନେହ-ଆବେଶେ ।
ଅର୍ଥ ଦେଖିଲ ଯେ । ପିଇଲା ରସରସନା ।
ଜଣାଇଲା କର୍ଣ୍ଣ ଜାଣି ଆସ୍ୱାଦନ ମନ ନ ଛାଡ଼େ ଭାବନା । ୫୫ ।

ସ୍ନେହ-ସନ୍ଦର୍ଭ-ଗର୍ଭ ପଦ ବିନ୍ୟାସ ଏ ପଦୁଁ ସେ ପଦ ସୁଖ ।
ପୀତ କାକତରେ ରଙ୍ଗ ବର୍ଣ୍ଣାବଳୀ ଏ କେତେ ସେନେହ ଦେଖ ।
ତୃପ୍ତି ନୁହଇ ଯେ । ଶତେତେବେଳ ପଠନରେ ।
ସନ୍ନିପାତୀମନ୍ତ୍ର ମନ ନ ପୂରଇ ଯେମନ୍ତ ଜଳପାନରେ । ୫୬ ।

ସୁକୃତ-କଳ୍ପଲତାରେ ଶୁଭଫଳ ଫଳିଲା କି ଅଜ ଭାଳି ।
ଶରଜାତ ଜାତ ନାରତା ରତନ ନାନକା ସେଷଣି ମିଳି ।
ତେତେବେଳର ଯେ । ଆନନ୍ଦ ନୋହିଲା ଭଳି ।
ଅର୍ଣ୍ଣୀ ସଙ୍ଗେ ଭାଳି ମାଳତି ଲେଖକୁ ଲେଖିଦେଲ ପ୍ରେମସ୍ଥଳୀ । ୫୭ ।

---

୫୫ । ଗରଗର—ଗଦଗଦ—କଥା ମୁହଁ ବାହାରିଲା ନାହିଁ । ରସେ—ଶୃଙ୍ଗାର ରସରେ; ହୃଦ ଜର ଜର—ହୃଦୟ ଓଦା ହୋଇଗଲା । ତନୁ ଥରଥର—ସାତ୍ତ୍ୱିକ କମ୍ପ କଲା । ସ୍ନେହ ଆବେଶେ—ସ୍ନେହର ପୂର୍ଣ୍ଣ ଅଧିଷ୍ଠାନରେ ବା ପ୍ରବେଶ ହେତୁ, ଚକ୍ଷୁ ଲୁହ ଦେଖିଲା । ରସନା—ଜିହ୍ୱା ଅର୍ଥ ରସ ଶୁଣିଲା । ଆସ୍ୱାଦନ ଜାଣି—ଚାଖିବା ଜାଣି, କାନ ଜଣାଇଲା । ଚିଠି ପଢ଼ି କୃଷ୍ଣ ଭାବନା ନ ଛାଡ଼େ—ସର୍ବଦା ଭାବିଲେ ।

୫୬ । ସ୍ନେହ ସନ୍ଦର୍ଭ ଗର୍ଭ ପଦ ବିନ୍ୟାସ—ସ୍ନେହର ପ୍ରବନ୍ଧ ଧାଡ଼ିରେ ଯାହାର ଏପରି ପଦଯୋଜନା—ବାକ୍ୟର ଏ ପଦରୁ ସେ ପଦ ଆନନ୍ଦପ୍ରଦ । ପୀତ କାକତରେ—ହଳଦିଆ କାଗଜରେ, ରଙ୍ଗବର୍ଣ୍ଣାବଳି—ନାଲି ବର୍ଣ୍ଣର ଅକ୍ଷର ଲେଖା ହୋଇଛି । ଏ କେତେଦୂର ସ୍ନେହ ଜାତ କରୁଛି ଦେଖ । ସନ୍ନିପାତ ରୋଗିର ଜଳପାନରେ ମନ ତୃପ୍ତ ନ ହେଲା ପରି—ପୁଣି ପୁଣି ପିଇବାକୁ ଇଚ୍ଛାକଲେ, ସେହିପରି ଚିଠି ପୁଣି ପୁଣି ପଢ଼ିବାକୁ ଇଚ୍ଛା କଲେ ।

୫୭ । ରାଧା ଭାଳିଲେ—ମୋର ସୁକୃତ ପୁଣ୍ୟ ରୂପ କଳ୍ପଲତାରେ, ଆଜ ଶୁଭଫଳ—ମଙ୍ଗଳ ରୂପ ଫଳ ଫଳିଲା କି ? ଅର୍ଥାତ୍ ମୋର ସୁକୃତ ଫଳ ଆଜି ଦେଲା । ଶରଜାତ ଜାତ—କନ୍ଦର୍ପ ଯାହାଙ୍କଠାରୁ ଜାତ, ଏପରି ଯେ ଶ୍ରୀକୃଷ୍ଣ—ତାଙ୍କ ବାରତା—ଚିଠି, ସେଷଣି—ହଠାତ୍, ରଙ୍କିକ—ଆମ୍ଭମାନଙ୍କୁ ମିଳିଗଲା କି ? ପକ୍ଷେ ଶରଜାତ—କନ୍ଦର୍ପର ଜାତ—ଜନ୍ମ, ବାଉଁ ରଙ୍କିକ—ରତିଦେବୀଙ୍କୁ ମିଳିଗଲା କି

ହସ୍ତୀ ଲେଖି ପାରି ବେଗେ ଶରା ହୋଇ କୃଷ୍ଣ ପାଶକୁ ଚଳିଲ ।
ରାଧା ମନାଇଲି ବିଶ୍ବଜୟୀ ବୋଲି ଏ ଗୁମାନ ମନେ ହେଲ ।
ସେନ ସାଧନ ହେ । ବର୍ଣ୍ଣେ ମନୋହର ଛାନ୍ଦ ।
ଦୀନ ଅଭିମନ୍ୟୁ ଶ୍ରୀରାଧାଗୋବିନ୍ଦ ପଦପଙ୍କଜ ମିଳିନ୍ଦ । ୫୮ ।

---

## ପଞ୍ଚାବନ ଛାନ୍ଦ

### ଶ୍ରୀକୃଷ୍ଣ ଛାମୁକୁ କିଶୋରୀଜୀଙ୍କ ଚିଟାଉ

ରାଗ—ବରାଡ଼ି । ( ଅଷାଢ଼-ଶୁକ୍ଳବାଣୀରେ )

ଧୀରେ ଧୀରେ ଭଜି ସେନ ଏ ଛାନ୍ଦ । ରସିକ ଚିତ୍ତ-ଚକୋରକୁ ଚନ୍ଦ ।
ମୁମୁକ୍ଷୁ ହୃଦ-କମଳ ତପନ । ଗ୍ରାହକ ବଣିକ ଅମୂଲ୍ୟ ରତ୍ନ ।
ଚତୁର ଜୀବିକା । ଶୁଣି ଜାହା ମନ ନୋହିବ ଶଙ୍କା । ୧ ।

---

ଅର୍ଥାତ୍ ଶିବଙ୍କ ନୟନାଗ୍ନିରେ ଭସ୍ମୀଭୂତ ହୋଇଥିବା କନ୍ଦର୍ପ ଜନ୍ମ ସମ୍ବାଦ ତାର ସ୍ତ୍ରୀ ରତି ପାଇ ଆନନ୍ଦିତ ହେଲାପରି ରାଧା ଆନନ୍ଦ ହେଲେ । ଅଳି ସଙ୍ଗେ ସ୍ୱଳି —ସହଚରୀମାନଙ୍କ ସଙ୍ଗେ ବିଚାର କରି, ପାଲଟ ଲେଖକୁ—ଲେଉଟ ଚିଠିକୁ, ପ୍ରେମସ୍ଥଳୀ—ସ୍ନେହର ପାତ୍ରୀ ରାଧା ଲେଖିଦେଲେ ।

୫୮ । ଗୁମାନ—ଅଭିମାନ, ଗର୍ବ । ପଦପଙ୍କଜ—ପାଦପଦ୍ମରେ, ମିଳିନ୍ଦ—ଭ୍ରମର ପାଦ ସେବକ ।

---

୧ । ହେ ଧୀରେ—ପଣ୍ଡିତମାନେ, ଧୀରେ—ବୁଦ୍ଧିରେ, ଭଜି—ବିଚାରି, ଏ ଛାନ୍ଦ ସେନ—ଗ୍ରହଣ କର । ରସିକମାନଙ୍କ ଚିତ୍ତ—ମନରୂପ ଚକୋରକୁ, ଚନ୍ଦ—ଚନ୍ଦ୍ରମାପରି—ଚକୋର ଯେପରି ଆନନ୍ଦରେ ଚନ୍ଦ୍ର କିରଣ ପାନ କରେ ସେହିପରି ରସିକମାନଙ୍କ ଚିତ୍ତ ଆନନ୍ଦରେ ଏ ଗ୍ରନ୍ଥ ରସ ଗ୍ରହଣ କରିବ । ମୁମୁକ୍ଷୁ—ମୁକ୍ତିକାମୀ ଲୋକଙ୍କର ହୃଦ ରୂପ ପଦ୍ମକୁ ଏ ଗ୍ରନ୍ଥ, ତପନ—ସୂର୍ଯ୍ୟ । ସୂର୍ଯ୍ୟ ଯେପରି ପଦ୍ମକୁ ବିକଶିତ କରେ, ସେପରି ମୁମୁକ୍ଷୁ ଲୋକଙ୍କ ହୃଦ ପରମାନନ୍ଦରେ ଉଲ୍ଲସିତ ହୁଏ । ଗ୍ରାହକ – କୃଷ୍ଣରସ ବା ଲୀଳା ଗ୍ରହଣକାରୀ ରୂପ ବଣିକ—ବଣିଆଙ୍କୁ ଏ ଗ୍ରନ୍ଥ ଅମୂଲ୍ୟ ରତ୍ନ । ଚତୁରମାନଙ୍କର—ବୁଦ୍ଧିଆ ବା ପଣ୍ଡିତମାନଙ୍କର, ଏ ଜୀବିକା—ଜୀବନ ରକ୍ଷିବାର ବା ଜୀବନର ଉପାୟ—ବୃତ୍ତି । (ଏହା ପାଠ କରି ବା ଶୁଣାଇ ଅର୍ଥ ଉପାର୍ଜନ କରନ୍ତି) ।

Digitized by srujanika@gmail.com

ହୃଷ୍ଟାଙ୍କ ଦୃଷ୍ଟାସ୍ପା ବସ୍ତୁବ ହବ । ନେତ୍ରଚକୋର ଅଣ୍ଟୁ ଅଶା ଚନ୍ଦ୍ର ।
ହୁର ଦ୍ୱର୍ନ୍ଦ୍ର ଦୁନ୍ଦୁଭି ହୂଟତ । ଦୁପୂର୍ବ ଭ୍ରଷା ହୃଷ୍ଟା ପରତୀତ ।
ଦୁସ୍ତର ସେ କାଳ । ଦୁର୍ବହ ଦୁର୍ଭର କ୍ଷୁମ୍ପମାନ । ୨ ।
ଏକାଳେ ପ୍ରବେଶ ହେବେ ସଙ୍ଗାସ୍ତ୍ରୀ । ତା ମୁଖ ପ୍ରସନ୍ନ ଶଶି-ମାଧୁରୀ ।
ଦେଖି ଲକ୍ଷିଲେ ଚିର୍ଣ୍ଣ ସିଦ୍ଧି ହେଲା । ଅନନ୍ଦସାଗର ବଢ଼ି ଅଇଲା ।
ପାଣେ ମିଳି ହୃଷ୍ଟା । ହସିଲା ଯାହା ବରଷିଲା ଭୂତ । ୩ ।
ତା କଥନ-ମୁଖେ ନେତ୍ର ରହିଲା । ପ୍ରାଣ ଶ୍ରବଣ ଅନୁଗତ ହେଲା ।
ମାନସ ଅତୁର ନୋହିଲା କଳା । ପ୍ରଖର ଶ୍ୱାସ ସୀମା ଗଲା ବଳା ।
ଶୁଣିଲେ ବଚନ । ଜୀବ ନ ଯିବ ତର୍କିଲେ ଏସନ । ୪ ।
ଦୂତୀ ଭାଷିଲା ଭାଗ୍ୟ ଉଦ୍ଭିନ୍ନ । ସୁଧା ବରଷିଲା ସବାସ୍ୱେ ଘେନ ।
ତାପ ଲୋପ ହେଲା ଦେହ ଦେହୀର । ଉପହାର ଭଲେ ରତ୍ନଭଣ୍ଡାର ।
ଅନୁଗ୍ରହ ପାଇ । ହୃଷ୍ଟା ମନିକା ଦେଣ୍ଡି ମୋଦ ହୋଇ । ୫ ।

---

୨ । ହରି—କୃଷ୍ଣ । ଦୃଷ୍ଟାସ୍ୱା—ଦୃଷ୍ଟସ୍ୱ ଗୃହ । ନେତ୍ରରୂପ ଚକୋର । ଚକୋର ଚନ୍ଦ୍ରଙ୍କୁ ଅଶା କଲାପରି କୃଷ୍ଣଙ୍କ ଅକ୍ଷି ଦୂତୀଙ୍କୁ ଅଶା କରୁ ଅଛି । ଦୁର, ଦୁର୍ଦ୍ଧର, ଦୁନ୍ଦୁଭି, ଦୂରତ—ଏହିପରି ଦୁ ଅକ୍ଷର ପୂର୍ବରେ ଥିବା ଭାଷା ଦୂତୀ, ପରତୀତ—ପ୍ରତୀତ ଜଣାଯାଏ । ସେକାଳ ଦୁଃସହ—ଅସହ୍ୟ । ଦୁର୍ବହ—ବୋହିବା ବଡ଼ କଠିନ ଓ ଦୁର୍ଭର—ଅତି ଭୀଷଣ ଭାର ବୋଧହେଲା ପଲମାନ ।

୩ । ସଙ୍ଗାସ୍ତ୍ରୀ—ଦୂତୀ । ମୁଖପ୍ରସନ୍ନ—ମୁଖର ହର୍ଷରେ ପ୍ରଫୁଲ୍ଲତା । ଶଶିମାଧୁରୀ—ଚନ୍ଦ୍ରର ବିମଳ ସୌନ୍ଦର୍ଯ୍ୟ । କୃଷ୍ଣ ଦୂତୀର ପ୍ରସନ୍ନ ମୁଖ ଦେଖି, ଲକ୍ଷିଲେ—ଅନୁମାନ କଲେ ବା ଜାଣିଲେ । ଆନନ୍ଦରୂପ ସମୁଦ୍ର ବଢ଼ିଲା, ଯାହା ହସିଲା—ଭୂତ—ଷଡ଼ୈଶ୍ୱର୍ଯ୍ୟ ବିଭୂତି । ବରଷିଲା—ଅଜାଡ଼ିଦେଲା ।

୪ । କଥନ ମୁଖ—କହିବା ମୁହଁରେ କୃଷ୍ଣଙ୍କ ନେତ୍ର ରହିଲା । ପ୍ରାଣ—ଜୀବନ । ଶ୍ରବଣ—କର୍ଣ୍ଣ । ଅନୁଗତ—ଅଧୀନ । ଆତୁର—ଆତୁରତା, ବ୍ୟାକୁଳତା, କଳା ନୋହିଲା—କଳନା ନ ଗଲା, ମାପି ହେଲା ନାହିଁ । ପ୍ରଖର ଶ୍ୱାସ—ଅତି ଖରଦଶ୍ୱାସ । ସୀମା ଗଲା ବଳି—ଅସୀମ ହେଲା । ବଚନ ନ ଶୁଣିଲେ ଜୀବ—କୃଷ୍ଣଙ୍କ ଜୀବନ ଯିବ—ବାହାରିଯିବ ବା ବଚନ ଶୁଣିଲେ ଜୀବ ନ ଯିବ—ଯିବ ନାହିଁ । ଏସନ ତର୍କିତ—ଏପରି ତର୍କଣା ହେଲା । ଶ୍ରୀକୃଷ୍ଣ ଅତ୍ୟନ୍ତ ଉତ୍କଣ୍ଠିତ ।

୫ । କୃଷ୍ଣ ଅମୃତ ବର୍ଷିଲା ପରି ଘେନିଲେ ବା ଭାବିଲେ । ଦେହ ଓ ଦେହୀର—ଶରୀର ଓ ଜୀବାତ୍ମାର, ତାପ—ପୀଡ଼ା । ଲୋପହେଲା—ନାଶହେଲା ।



Digitized by srujanika@gmail.com

ଭର ପ୍ରସାରନ୍ତ ପାଏଡ଼ା ହୋଇଲା । ନେତ୍ର ତାଙ୍କର ନାଉଗୁଳା ଭଲା ।
ଦୀନ କରଗତ କି ବାଞ୍ଛାନିଧି । ଗୋବିନ୍ଦ ମୁଦ ଅଗାଧ ଜଳଧି ।
ଛୁଟି ଦେଇ ସ୍ପନ୍ଦେ । ତାପ ଶାନ୍ତି କଲେ ଲଗାଇ ହୃଦେ । ୬ ।
ଚଟାଳ ପିଟାଳି ଝିଟାଇଁ ଛନ୍ଦେ । ହାଲ ହୋଲ ହେଲେ ଇନ୍ଦ୍ରିୟମାନେ ।
ବାଦ ପଡ଼ିଗଲେ ଅନୁମାନରେ । ଆଗ ମୁଁ ଦେଖିବି ନେତ୍ର ବଇୁବେ ।
ମୁଖ ସୁଖ ଯଶେ । ଶ୍ରବଣ ଶବଣ ପାଇଁ ମନାସେ । ୭ ।
ମନର ମେଳଅପଣ ଦଶିଲା । ସବୁର ସଙ୍ଗରେ ଯାଇ ମିଶିଲା ।
ପ୍ରାଣ ଭଲ୍ଲେ ତ୍ରାଣ ପାଇବ ମୁହିଁ । ଏମନ୍ତ ଗୋଳ ଉପୁଜିଲା ତହିଁ ।
ଭଲ କେତେ ପୁଣ୍ୟ । ମୋକ୍ଷପଦ ପାଇ ଶ୍ରୀହସ୍ତ ଧନ୍ୟ । ୮ ।

---

ଶରୀର ଓ ମନର ପୀଡ଼ା ଦୂରହେଲା ବା ହେଲା—ଶରୀରର କୃଷ୍ଣଚନ୍ଦ୍ରଙ୍କ ଦେହତାପ ଲୋପହେଲା । ଦୂଟିକେ ଚନ୍ଦ୍ରମାଳା ସ୍ପର୍ଶ୍ୱାର ହେଲେ । ଦୁହେଁ କୃଷ୍ଣଙ୍କଠାରୁ ଅନୁଗ୍ରହ ଲଭି ମୋଦହୋଇ—ଆନନ୍ଦିତ ହୋଇ, ପବିତ୍ର ହେଇଁ-- ହେବାରେ ।

୬ । କୃଷ୍ଣଙ୍କ ପ୍ରସାରିତ କର—ବଢ଼ାଇ ଦେବା ହାତ । ପାଏଡ଼ା—(ମାନ୍ୟଙ୍କ ବଜସ୍ତ ନମିତ୍ତ ବିଛା ହୋଇଥିବା ବସ୍ତ୍ର ) ଶ୍ରୀଖାଳ ପାଏଡ଼ା ଲୁଗା ହେଲା । ନଉଗ୍ଳକ – ବଦାପନା କଲା, ଆଲିଙ୍ଗ କଲା । ଦୀନ – ଦରିଦ୍ର, ରଙ୍କୁଣା । କରଗତ – ହସ୍ତଗତ । ବାଞ୍ଛାନିଧି – ଚିନ୍ତାମଣି । ଚିନ୍ତାମଣି – ଇଚ୍ଛା ଅନୁସାରେ ଯେ ଧନ ପ୍ରଦାନ କରେ । ମୁଦ – ଆନନ୍ଦ । ଅଗାଧ ଜଳଧି – ଅତି ଗଭୀର ସମୁଦ୍ର, କଳା ହେଲାନାହିଁ । ସ୍ପନ୍ଦ – ପନ୍ଦରେ । ତାପ – ପୀଡ଼ା ।

୭ । ଛନ୍ଦେ—ଅନ୍ତଚାରେ । ଇନ୍ଦ୍ରିୟମାନେ—ଇନ୍ଦ୍ରିୟସବୁ ( ଚକ୍ଷୁ, କର୍ଣ୍ଣାଦି ) ଝାଉଝାଉ—ଚଞ୍ଚଳ ବା ଉତ୍କଳା ହେଲେ । ଅନୁମାନରେ ଚରଣର ମଧ୍ୟରେ । ବାଦ ପଡ଼ିଗଲେ –ବିବାଦ ଜାତହେଲା । ମୁଖ ସୁଖ ଆଶେ—ଆଶା କରେ ( ଭୁଣ୍ଡ ପଡ଼ିଲେ ମୁଖଲାଭ କରିବ ) ଶ୍ରବଣ – କାନ ଶୁଣିବା ପାଇଁ, ମନାସେ— କାମନା କରେ । ମନସବୁ ଇନ୍ଦ୍ରିୟ ସଙ୍ଗେ ମିଶିଗଲା—( ମନ ଦଶ ଇନ୍ଦ୍ରିୟର ରଜା ହେଉ –କାରଣ ସବୁ ଇନ୍ଦ୍ରିୟମାନେ ସ୍ୱ ସ୍ୱ ଗ୍ରାହ୍ୟ ବସ୍ତୁକୁ ମନ ଆଗରେ ନେଇ ଥୁଅନ୍ତି ) ।

୮ । ତ୍ରାଣ ପାଇବ—ରକ୍ଷା ପାଇବ ( ମୁକ୍ତପାଇବ--ମୁଁ ସାର୍ଥକ ହେବ ) । ଏତେ ତହିଁ,–ତଥିରେ ଏତେଗୋଳ--ଦ୍ୱନ୍ଦ୍ୱ ଜାତହେଲା । ମୋକ୍ଷପଦ—ଚଟାଳ ମୋଚନ ବା ଖୋଲିବା କାର୍ଯ୍ୟ ପାଇ (ପକ୍ଷେ ମୋକ୍ଷ ପଦ—ମୋକ୍ଷ ସ୍ଥାନ ଲାଭକରି) ଶ୍ରୀହସ୍ତ—ଶ୍ରୀ କୃଷ୍ଣଙ୍କ ସୁନ୍ଦରହସ୍ତ । ଧନ୍ୟ—କୃତକୃତ୍ୟ ହେଲା ।

Digitized by srujanika@gmail.com

ମହା କାମୁକ ନବବଧୂ ନୀବୀ । ବିଗତ ପାଇଁ ଯଥାରୂଢେ ଭାବ ।
ପ୍ରାତକମଳରେ ଯେମନ୍ତ ଭୃଙ୍ଗ । ମୁଦ୍ର ଭେଦକରେ ବଦ୍ଧେ ସବେଗ ।
ସେହିପରି ହରି । ମୁଦ ବିଭଙ୍ଗ ରସଜ୍ଞେ କରି । ୯ ।

ପୀତକାକତରେ ଲେଖନ କାଳୀ । ବେନି ବର୍ଣ୍ଣଛଳେ ଲେଖିଛି ଭଲି ।
ସୁବର୍ଣ୍ଣ ସୁବର୍ଣ୍ଣ ବିକୀର୍ଣ୍ଣ ପରି । ତରତର ନେତ୍ର ଚତୁର ଚୋରି ।
ପୀତକଞ୍ଜେ ସ୍ଥିତ । ଶିଶୁ ଅଳିଅଳିପନ୍ତ ଯେମନ୍ତ । ୧୦ ।

ସମ ସମଶିର ଘନ ବିରଳ । ମାତ୍ରା ବିଭଙ୍ଗ ନାହିଁ ଏକ ତିଳ ।
ଟିପ ଦେବ ଅବା କର୍ଜ୍ଜି ବିବେକ । ଏହି ଗୁଣକୁ କେ ହେବ ଗ୍ରାହକ ।
ତାହିଁ ଥିଲା ପୁଣ୍ୟ । ଭାଷିଲେ ହରି ଅଜ ହେଲି ଧନ୍ୟ । ୧୧ ।

---

୯ । ମହାକାମୁକ—ଅତ୍ୟନ୍ତ କାମଶୀଳ ଲୋକ । ନବବଧୂନୀବୀ—ନୂଆ ବୋହୂ ଖୋସଣି । ବିଗତ ପାଇଁ—ଖୋଲିବା, ଫିଟାଇବା ପାଇଁ । ଯଥାରୂଢେ—ଉଚ୍ଛନ୍ନ, ଉତଲାରେ । ପ୍ରାତଃ କମଳରେ—ପାହାନ୍ତିଆ ପଦ୍ମରେ; ଭୃଙ୍ଗ – ଭ୍ରମର; ସବେଗ ବଦ୍ଧେ—ଅତି ସ୍ନେହରେ, ମୁଦ—ବୁଜି ହୋଇଥିବା ଭାବକୁ ଭେଦକରେ—ଫିଟାଇ ଦିଏ, ସେହିପରି ହରି—କୃଷ୍ଣ । ମୁଦ—ଛଠାଉ । ରସ—ଶୃଙ୍ଗାରରସଯୋଗ୍ୟ ଲୋକରେ ।

୧୦ । ପୀତକାକତରେ—ହଳଦିଆ କାଗଜରେ, କାଳିରେ ଲେଖା; ବେନି ବର୍ଣ୍ଣଛଳେ—କଳାବର୍ଣ୍ଣ; କୃଷ୍ଣ ହଳଦିଆ ଲୁଗା ପିନ୍ଧନ୍ତି ସେହି ଛଳରେ, ଭଳି — ବିଶ୍ୱର ଶୋଭା ଲେଖିଛି । ସୁବର୍ଣ୍ଣ—ଉତ୍ତମ ଅକ୍ଷରମାନ, ସୁବର୍ଣ୍ଣ—ସୁନାପତ୍ର, ବିକୀର୍ଣ୍ଣ—ବିକ୍ଷିପ୍ତ ହୋଇଛି—ପତ୍ରରେ ନ୍ୟାସ ହୋଇଛି । ଚତୁର ଚୋରି—ଶ୍ୱେତ ଚଙ୍ଗା ରଙ୍ଗ ହେଲା ସଦୃଶ କୃଷ୍ଣଙ୍କ ଚକ୍ଷୁ, ତରତର—ଚଞ୍ଚଳ ହେଲା । ଶ୍ୱେତ ଯେପରି ସୁନା ଶ୍ୱେତ କରିବାକୁ ତରତର ହୁଏ ସେପରି କୃଷ୍ଣଙ୍କ ଆଖି ଚିଠିର ଅକ୍ଷର ଦେଖିବାକୁ ଚଞ୍ଚଳ ହେଲା । ପୀତକଞ୍ଜେ ସ୍ଥିତ—ହଳଦିଆ ପଦ୍ମରେ ଥିବା, ଶିଶୁ ଅଳିପନ୍ତ ଯେମନ୍ତ—ଶ୍ରେଷ୍ଠ ଶ୍ରେଷ୍ଠ ଭ୍ରମର ସଦୃଶ, ଅକ୍ଷରଗୁଡ଼ିକ ଦେଖାଗଲା ।

୧୧ । ସମ—ଅକ୍ଷରଗୁଡ଼ିକ ସମାନ । ସମଶିର—ଅକ୍ଷର ମୁଣ୍ଡ ଏକ ଧାଡ଼ିରେ । ଘନ—ଲାଗିଲାଗି, ସାନ୍ଦ୍ର । ବିରଳ—କାହାକୁ କେହି ଲାଗିନାହାନ୍ତି । ମାତ୍ରା—ଇକାର ଉକାରାଦି, ତିଳମାତ୍ର—ସର୍ଷପମାତ୍ର । ବିଭଙ୍ଗ ନାହିଁ – ଭାଙ୍ଗିନାହିଁ ବା ଭୁଲ ନାହିଁ । ବିବେକ—ପଣ୍ଡିତ । ଗୁଣକୁ—ଲେଖା ଗୁଣକୁ । ଗ୍ରାହକ—ଗୁଣଗ୍ରାହୀ ।

Digitized by srujanika@gmail.com

ପ୍ରିୟାନୁରାଗୀ ଅଙ୍ଗେ ଅର୍ଦ୍ଧାଙ୍ଗୀକାନ୍ତ । ମଙ୍ଗଳ ନାମ ଅତନୁଦଳନ୍ତ ।
ଶ୍ରୀସଦାଶିବ ଚରଣେ ଶରଣ । ଆଦ୍ୟେ ହୋଇଛି ମଙ୍ଗଳାଚରଣ ।
ଏ ଭକ୍ତିରୁ ବାଧି । ପଞ୍ଚ ଶ୍ରୀ ରଚନା ହୋଇଛି ସିଦ୍ଧି । ୧୨ ।

ବିଭୋ ! ଶ୍ରୀ ପୀତଚନ୍ଦ୍ର ପୁରନ୍ଦର । ରସିକମୁକୁଟମଣି ପ୍ରବର ।
ନାଗର-ସାଗର-ଲୀଳା-ଲହରୀ । ଗୁଣରତନ-ନିଧି ସୁରଗିରି ।
କାମୀ କଳ୍ପତରୁ । କାମଶାସ୍ତ୍ର-ଦୀକ୍ଷାଦାତୃକ ଗୁରୁ । ୧୩ ।

ବିଭୋ ନାରୀ-ନେତ୍ର-ନୃତ୍ୟ ମଦନ । ବିରହୀ ସନ୍ତାପିନୀ ହୃଦଚନ୍ଦନ ।
ବିଭୋ ମାର ପଞ୍ଚଶରମର୍ଦ୍ଦିତ । ବିଭୋ ନାଗରବରଚକ୍ରବର୍ତ୍ତୀ ।
ବିଭୋ ପ୍ରେମଦାତା । ବିଭୋ କାମଦେବାର୍ଚ୍ଚନ ଦେବତା । ୧୪ ।

ବିଚକ୍ଷଣତା ଗୁଣ ଶୁଣୁଛୁ ଯେତେ । ସତ କର ତାହା ନ ସେନ୍ତୁ ଚିତ୍ତେ ।
ଅକାଶ ସିନ୍ଧୁ ଜେ କଳିପାରିବ । ଶେଷେ ଅଶେଷରେ ବର୍ଣ୍ଣି ନୋହିବ ।
ଅମ୍ଭର ଯେ ଲୋଡ଼ା । ସେହୁ ତ ଯୁବତୀ-ସଂସାରବୁଡ଼ା । ୧୫ ।

---

୧୨ । ପ୍ରିୟାନୁରାଗୀ—ଭାର୍ଯ୍ୟାସ୍ନେହୀ (ପାର୍ବତୀଙ୍କୁ ସ୍ନେହ କରନ୍ତି), ଅଙ୍ଗେ—ନିଜ ଦେହରେ । ଅର୍ଦ୍ଧାଙ୍ଗୀକାନ୍ତ—ସ୍ତ୍ରୀକାରକନ୍ତ, ନିଜର ଅଧେ ଦେହ ସ୍ତ୍ରୀ କରିଛନ୍ତି । ଅତନୁଦଳନ୍ତ—କନ୍ଦର୍ପଶତ୍ରୁ । ତୁମ୍ଭର ନାମ ମଙ୍ଗଳ—ଶୁଭକର । (୫୪ ଛାନ୍ଦର ୭ ପଦ ଦେଖ)

୧୩ । ହେ ବିଭୋ—ହେ ସର୍ବଶକ୍ତିମନ୍ତ ବା ସର୍ବବ୍ୟାପକ । ଶ୍ରୀପୀତଚନ୍ଦ୍ର ପୁରନ୍ଦର—ହେ ଲକ୍ଷ୍ମୀରମଣ ବା ଶ୍ରୀଯୁତ ପୀତଚନ୍ଦ୍ରଙ୍କ ଶ୍ରେଷ୍ଠ । ରସିକମୁକୁଟମଣି ପ୍ରବର—ସର୍ବଶ୍ରେଷ୍ଠ ରସିକ । ନାଗରସାଗର ଲୀଳାଲହରୀ—ହେ ନାଗରରୂପ ସମୁଦ୍ରର ଲୀଳା ତରଙ୍ଗ—(ଲୀଳାକୁଶଳ ନାଗର) । ହେ ଗୁଣରୂପ ରତ୍ନର ନିଧିରୂପ ସୁରଗିରି—ସୁମେରୁପର୍ବତ । କାମୀକଳ୍ପତରୁ—ବାଞ୍ଛାକାତର, ବାଞ୍ଛାପ୍ରଦ—କାମନା ଫଳଦ । ହେ କାମଶାସ୍ତ୍ର ଦୀକ୍ଷାଗୁରୁ—କାମଶାସ୍ତ୍ରର ଅଧ୍ୟାପକ, କାମଶାସ୍ତ୍ର ପଣ୍ଡିତ ।

୧୪ । ହେ ବିଭୋ—ନିଗ୍ରହ ଓ ଅନୁଗ୍ରହରେ ସମର୍ଥ ( ସ୍ତ୍ରୀ ଚକ୍ଷୁପ୍ରତି ନୂତନ କାମ ) । ହେ ବିରହିଣୀ ହୃଦର ଶୀତଳକାରକ । କନ୍ଦର୍ପର ପଞ୍ଚଶରରେ ମର୍ଦ୍ଦିତ ଶରୀର । ଅତ୍ୟୁତ୍କୃଷ୍ଟ ନାଗରରାଜା । ସ୍ନେହଦାତା । ହେ କନ୍ଦର୍ପ ପୂଜାର ଠାକୁର ।

୧୫ । ବିଚକ୍ଷଣତାଗୁଣ—ଆଶ୍ଚର୍ଯ୍ୟଗୁଣ । କଳି—ମାପି । ଶେଷ—ଶେଷଦେବ (ଅନନ୍ତ), ଅଶେଷରେ—ସମସ୍ତରେ, ପୂର୍ଣ୍ଣରୂପରେ । ଯେ ଲୋଡ଼ା—ଯାହାକୁ ଇଚ୍ଛାକରୁ । ଯୁବତୀ ସଂସାରବୁଡ଼ା—ସବୁ ଯୁବତୀଙ୍କ ପ୍ରାଣନାଶକ ।

Digitized by srujanika@gmail.com

ଶୋଭା ବିଶ୍ୱସୃଜ ଅତି-ଭଣ୍ଡାର । ଏ ବିଶ୍ୱମୋହନ କେତେ ମନ୍ତର ।
ନାମ ମିଳିତ ମାଧବେ ମାଧବ । ଜଗତଙ୍କୁ କରୁଅଛନ୍ତି ଦ୍ରବ ।
  ବର୍ଣ୍ଣାଭାସ ସେହୁ ହେ । କାମୋନ୍ମାଦଦାୟୀ କୋକିଳଧ୍ୱନି । ୧୬ ।
ସୁଧା-ଲାବଣ୍ୟ-ଶୋଭା-କାନ୍ତି-ସାର । ନୀଳେନ୍ଦ୍ରମଣି କଳାବାରପୁର ।
ଆନନ୍ଦ ଅହ୍ଲାଦ ରସ ପ୍ରୀତି । ଭଙ୍ଗୀ ବିଭୂଷା ହାବ ଭାବ ପନ୍ତି ।
  ବଦ୍ଧିତ ପ୍ରକାଶ ହେ । ମୋହନମନ୍ତ୍ରେ ହୋଇ ଜୀବନ୍ୟାସ । ୧୭ ।
ଗୁଣଗଣ ଯତ୍ନ ରତ୍ନଭୂଷଣ । ପ୍ରୀତିଙ୍କପାରେ ଚକ୍ରବର୍ତ୍ତୀଗଣ ।
ଭକ୍ତ ପ୍ରୀତ ସେବାକାଙ୍କ୍ଷ ଶଙ୍କସ୍ୱ । ବିଧିବିଧାନେ ବୋଲିବା କି କଥା ।
  ନାହିଁ ତ ଦ୍ୱିତୀୟ ହେ । ଯେଣୁ ଯେନୁ ସ୍ୱତନ୍ତ୍ରତା କଦାପି । ୧୮ ।

---

୧୬ । ବିଶ୍ୱସୃଜ—ବ୍ରହ୍ମାଙ୍କର ଶୋଭା—ସୌନ୍ଦର୍ଯ୍ୟର ଅତିଭଣ୍ଡାର—ରକ୍ଷିବାଘର । ଏ ବିଶ୍ୱମୋହନ - ଏହି ସଂସାରକୁ ମୋହିବା, କେତେମାନ—କେତେ କଥା, ଅତ୍ୟନ୍ତ । ନାମ ମିଳିତ ମାଧବେ ମାଧବ—ଆପଣଙ୍କ ନାମ ମାଧବ—ବସନ୍ତ ନାମ ମାଧବ, ତୁମ୍ଭ ନାମ ମିଳିବାରୁ, ଜଗତଙ୍କୁ - ଜଗତକୁ । ଦ୍ରବ କରାଉଛନ୍ତି—ତରଳେଇ ଦେଉଛି । ତୁମ୍ଭଦ୍ୱାରା ଜଗତ ତରଳାଇବାଟା କି ଆଶ୍ଚର୍ଯ୍ୟ ! ବର୍ଣ୍ଣାଭାସ ସେହୁ—ବର୍ଣ୍ଣର ଆଭାସ (ସାଦୃଶ୍ୟ) ହେତୁ ତୁମ୍ଭ କଳାବର୍ଣ୍ଣପଣ କୋକିଳ କଳା ହେବାରୁ, କୋକିଳ ଧ୍ୱନି - କୋଇଲିର 'କୁହୁ' ଶବ୍ଦ କାମୋନ୍ମାଦଦାୟୀ — କନ୍ଦର୍ପରେ ଲୋକଙ୍କୁ ମାତାଇ ଦେଉଛନ୍ତି (ଆପଣଙ୍କଠାରେ ତ ଆଶ୍ଚର୍ଯ୍ୟ ବା କଣ ? )

୧୭ । ସୁଧା—ଅମୃତ, "ଲାବଣ୍ୟ—ମୁକ୍ତାଫଳେଷୁ ଛାୟାସ୍ତରଳତ୍ୱମିବାନ୍ତରା ପ୍ରତିଭାତି ଯଦଙ୍ଗେଷୁ ତତ୍ ଲାବଣ୍ୟ ମିହୋଚ୍ୟତେ," କାନ୍ତିର ତରଳତା । ଶୋଭା—ସୌନ୍ଦର୍ଯ୍ୟ "ସା ଶୋଭା ରୂପଭୋଗାଦ୍ୟୈର୍ଯତ୍ ସ୍ୟାଦଙ୍ଗବିଭୂଷଣମ୍" । କାନ୍ତି—ଉଜ୍ଜ୍ୱଳଶୋଭା, "ଶୋଭୈବ କାନ୍ତିରାଖ୍ୟାତା ମନ୍ମଥାପ୍ୟାୟନୋଜ୍ଜ୍ୱଳା" ଏ ସମସ୍ତଙ୍କ ସାର—ଶ୍ରେଷ୍ଠାଂଶ, ନିର୍ଯ୍ୟାସ ବା ସାର—ଶ୍ରେଷ୍ଠ ସୁଧା ଇତ୍ୟାଦି । ନୀଳେନ୍ଦ୍ରମଣି— ଇନ୍ଦ୍ରନୀଳମଣି ଓ କଳାବାଦି - ଅତସୀ କୁସୁମ ପ୍ରଭୃତି. କଳାସମୂହର ପୁର—ଗୃହ, ଆଧାର । ଆନନ୍ଦ—ସୁଖ । ଅହ୍ଲାଦ—ସପୁଲକ ଆନନ୍ଦ, ହର୍ଷଯୁକ୍ତ ଆନନ୍ଦ ବା ଶୀତଳତା, ରସ—ମଧୁରରସ, ପ୍ରୀତି—ସ୍ନେହ । ଭଙ୍ଗୀ—ନେତ୍ରାଦି ଶୋଭା । ବିଭୂଷା—ଚରୁବନା ଭାବ ହାବ—ଭାବ-କାମ ବିକାର ନ ଜନ୍ମିଥିବା ହୃଦୟରେ ପ୍ରଥମରେ କାମ ବିକାର ଜନ୍ମାଇଦେବା, ହାବ—ନେତ୍ରାଦି ବିକାରପଙ୍କ୍ତିସମୂହ—ଏମାନଙ୍କ ସମୂହରେ ଶରୀର ପ୍ରକାଶ ହେଉଛି ଓ ମୋହନ ମନ୍ତ୍ରେ—ସମସ୍ତଙ୍କୁ ମୁଗ୍ଧ କରିବା ମନ୍ତ୍ରରେ, ଜୀବନ୍ୟାସ—ପ୍ରାଣପ୍ରଦାନ ହୋଇ...... ଶରୀର ପ୍ରକାଶ ।

୧୮ । ଗୁଣଗଣ ଯତ୍ନରତ୍ନ ଭୂଷଣ— ଆପଣ ସମସ୍ତ ଗୁଣମାନଙ୍କର ଅତି ଉତ୍କୃଷ୍ଟ ରତ୍ନାଳଙ୍କାର । ଉତ୍କୃଷ୍ଟ ରତ୍ନାଳଙ୍କାରରେ ଲୋକ ଶୋଭାପାଏ, ଗୁଣମାନଙ୍କରେ

Digitized by srujanika@gmail.com

ଉପମା ଅପମାନ ପାଇ ଗଲେ । ବନଗହନରେ ଯାଇ ପଶିଲେ ।
ଚିନ୍ତାରେ ଚିନ୍ତନ ହେବାରୁ ବଳେ । ଭବ ତୁଳନାରେ ମୋକ୍ଷ ପାଇଲେ ।
ସେହୁ ସେଣିକର ହେ । ଅବୟବେ ବ୍ୟକ୍ତ ତାଙ୍କ ମାଧୁରୀ । ୧୯ ।
ଏମନ୍ତ ମହିମାବନ୍ତଙ୍କ ଗୁଣ । ବର୍ଣ୍ଣିବାକୁ କେହୁ ହେବ ନିପୁଣ ।
ଅଲେଳା ଛଇଳା କିଶୋରୀ ସଙ୍ଗୀ । କେହୁ ଜାଣି ମୁଁ ପ୍ରୀତିସ୍ଥିତ ଭଙ୍ଗୀ ।
ଥିଲା କେଉଁ ଭାଗ୍ୟ ହେ । ଜଣାଣ କରିବାକୁ ହୋଇଲି ଯୋଗ୍ୟ । ୨୦ ।

---

ଲୋକର ମର୍ଯ୍ୟାଦା ବଢ଼େ, ଏଠାରେ କୃଷ୍ଣଙ୍କର ଶୋଭା ବା ମର୍ଯ୍ୟାଦା ଗୁଣମାନଙ୍କ-ଦ୍ୱାରା ନୁହେଁ—ଗୁଣ ମାନଙ୍କର ଶୋଭା କୃଷ୍ଣଙ୍କଦ୍ୱାରା । ପ୍ରୀତି ସଂସାରେ ଚକ୍ରବର୍ତ୍ତୀପଣ—ପ୍ରୀତିରୂପରାଜ୍ୟରେସମ୍ରାଟର ଭାବ ଅର୍ଥାତ୍ ପ୍ରୀତିସବୁର ପାଳକ । ରତି ପ୍ରୀତି ନୁହେଁ ଅପଣଙ୍କର ସେବାକାରୀ କିଙ୍କରୀ—ଦାସୀ ରତି ଓ ପ୍ରୀତିର ଅପଣ ପ୍ରଭୁ "ଶ୍ରୁତିରୁ ପ୍ରୀତିର ଜନ୍ମ ପ୍ରୀତିରୁ ରତିର ଜନ୍ମ, ଶ୍ରୁତି ତ ଭଗବାନଙ୍କ ଠାରୁ ଜାତ" ତେଣୁ କୃଷ୍ଣଚନ୍ଦ୍ର ରତି, ପ୍ରୀତିର ଅଧୀନ ନୁହନ୍ତି—ସେ ଦୁହେଁ ତାଙ୍କର ଅଧୀନ । ବିଧିବିଧାନ କର ବୋଲିବା—କଣ ବୋଲି କହିବା ଦ୍ୱିତୀୟ ତ ନାହିଁ—ତୁମ୍ଭ ପର ଚତୁର୍ଦ୍ଦଶ—ବିଧାତାଙ୍କର ରଚନା । ଏ ଲୋକରେ ଅନ୍ୟ ଜଣେ କେହି ନାହିଁ । ଯେଣୁ ଯେହ—ଯେହେତୁ ଯେତ୍ନ ବା ଜାଣିପାରୁ, ସ୍ୱତନ୍ତ୍ରତା ଉଦୟ—ନିଜର ସ୍ୱାଧୀନତା ପ୍ରକାଶ, ନିଜେ କାହାର ଅଧୀନ ନୁହେ ବା ଭାବ ପ୍ରକାଶ (ଭଗବାନ ସ୍ୱତନ୍ତ୍ର ଆଉ ସମସ୍ତେ ତାଙ୍କର ଅଧୀନ ।)

୧୯ । ଉପମା ଉପମାନ—ପଦ୍ମ, କୁମୁଦ, ଶଳ, ଦର୍ପଣ, କୋକିଳ, ସିଂହ ପ୍ରଭୃତି । ବନ ଗହନରେ—ଜଳରେ ଓ ଅଗମ୍ୟ ବନରେ ଲୁଚିଲେ । ବଳେ—ଆପେ ଆପେ ନିଜେ ନିଜେ । ଚିନ୍ତାରେ—ଭାବନାରେ ଆପଣ ଚିନ୍ତନ ହେବାରୁ—ଭବ ତୁଳନାରେ ସେମାନେ ମୋକ୍ଷ ପାଇଲେ—ମୁକ୍ତ ଲଭିଲେ—ସାଯୁଜ୍ୟ ମୁକ୍ତି ଲଭିଲେ । ସେହୁ ସେନିକର—ଭବର ତୁଳନାହେତୁ, ତାଙ୍କ ମାଧୁରୀ— ଉପମାମାନଙ୍କ ମଧୁରତା, ସୌନ୍ଦର୍ଯ୍ୟ ଅବୟବେ—ଆପଣଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ, ବ୍ୟକ୍ତ—ପ୍ରକାଶିତ ଅର୍ଥାତ୍ ସମସ୍ତ ଉପମାନମାନେ ଶୋଭାରେ ସମାନ ନ ହେବାରୁ ଅପମାନ ପାଇ ଜଳରେ ବନରେ ପଶି ଆପଣଙ୍କୁ ଚିନ୍ତନ—ଧ୍ୟାନ ବା ସ୍ମରଣ କରିବାରୁ ମୁକ୍ତି ପାଇ ଭବଙ୍କ ତୁଳନା ହେତୁ ଆପଣଙ୍କ ଦେହରେ ମାଧୁରୀ ଦେଖାଉଅଛନ୍ତି । ସେମାନେ ଜଳରେ ଓ ବନରେ ପଶି ଘୋର ତପସ୍ୟା ଫଳରେ ସୌନ୍ଦର୍ଯ୍ୟ ଲାଭ କଲେ ।

୨୦ । କେହୁ—କିପରି । ନିପୁଣ—ଦକ୍ଷ । ଅଲେଳା—ସରଳସ୍ୱଭାବ ଓ ଗେହ୍ଲା କଥା କହିବାରେ ଲାଜତା । ଛଇଳା ଶୋଭାରେ ସେହ୍ନା, ସୌଖିନ, କିଶୋରୀ—ନବଯୌବନା ସଙ୍ଗମ—ସଙ୍ଗଯୁକ୍ତା—ଏହିସବୁ ଭାବ ଏକାଠି ଥିବା ହେତୁ ବା ଅମ୍ଭେ-ମାନେ ଅଲେଳୀ ଛଇଳା ଓ କିଶୋରୀ ହୋଇ ଖେଳୁଥିଲୁ । ପ୍ରୀତିସ୍ଥିତ—ପ୍ରୀତି ବ୍ୟବହାର । ଭଙ୍ଗୀ—ଲୀଳାଭଙ୍ଗୀ, ଆଖି ଠାରିବା ପ୍ରଭୃତି କେହୁ କିପରି ଜାଣିବୁ ।

Digitized by srujanika@gmail.com

ତବ ଅନ୍ତର ଜାଣି ଅନ୍ତରେ । ନିଜ ଗୁରୁତା ନ କଲି ବିଚାର ।
କୁସୁମପଟ୍ଟ ନ୍ୟାୟ ଦର୍ଶିଗଲି । ଲେଖିବା ଦୋଷ କ୍ଷମ ଗ୍ରହି ଦେଲି ।
ଏହି କଥା ସେନ ହେ । ଦେଲି ପ୍ରଣୟ ପତ୍ରିକା ଦର୍ପିଣୀ ।୨୧।
ଶ୍ରୀ ହସ୍ତ ଧର ଅଜ୍ଞାପତ୍ର ଦାନେ । ବଶ ହୋଇବେ କେତେ ନିତ୍ୟ ଜନେ ।
ରମା ଉମା ବଳେ ହେବେ ସେବକୀ । ଅନ୍ୟ କେ ନ ଯିବ ବାଇ ହୋଇ କି ।
ଏ ହେଲେହେଁ ଯତ ହେ । ଅମୁ ଧନୀର ଦୃଢ଼ ପତିବ୍ରତ ।୨୨।
ପ୍ରଭୁ ଅଖିଳ ରସାମୃତ ମୂର୍ତ୍ତି । ଅହ୍ଲାଦପ୍ରଦ-କର କୀରତି ।
ଉଜ୍ଜ୍ୱଳ ନିପୁଣ ଲକ୍ଷଣବନ୍ତ । ହରତାମ୍ବର ମଣ୍ଡନେ ଶୋଭନ୍ତ ।
ସକଳମଣ୍ଡନ ହେ । କଳାନିଧି ଦୀନତାପଖଣ୍ଡନ ।୨୩।

---

୨୧ । ତବ ଅନ୍ତର ଜାଣି ଅନ୍ତରେ—ତୁମ୍ଭ ବ୍ୟାକୁଳତା ଅତ୍ୟଧିକ ଜାଣି । ନିଜର ଗୁରୁତା—ଗୌରବ, ମର୍ଯ୍ୟାଦା, ଆଗ୍ରହ, ଲଜ୍ଜା ବିଚାର ନ କରି ଲେଖିଲି । କୁସୁମପଟ୍ଟ ନ୍ୟାୟ ଦର୍ଶିଗଲି । ଆପଣ ପୁଷ୍ପ, ଆମ୍ଭେମାନେ ପଟ୍ଟ—ପଟ୍ଟକା, 'କୁସୁମ ପରଶେ ପଟ୍ଟ ନିସ୍ତରେ' ଏହି ନ୍ୟାୟରେ ଆମ୍ଭେ ନିସ୍ତରିବୁ । ଏହି କଥା ସେନ—ଏହି ବିଷୟ ଭାବ । ପ୍ରଣୟ ପତ୍ରିକା ଦର୍ପିଣୀ ଦେଲି—ପ୍ରୀତିର ପତ୍ରରେ ଆମ୍ଭର ଦୀନତା ଜଣାଇଲୁଁ ।

୨୨ । ରମା—ଲକ୍ଷ୍ମୀ; ଉମା—ପାର୍ବତୀ । ବଳେ—ସ୍ୱତଃ, ଅପେ ଆପେ । ସେବକୀ—ଦାସୀ । ନ ଯିବ ବାଇ କି—ବାତୁଳତା ନ ଲଭିବ, ପାଗଳ ନ ହେବ କି ? ଏପରି ହେଲେ, ଯତ—ନିଶ୍ଚୟ । ଅମୁ ଧନୀର—ରାଧାର । ପତିବ୍ରତ ଦୃଢ଼—ଆପଣ ପତି ଏହି ବ୍ରତ, ଦୃଢ଼—ନିଶ୍ଚୟ ।

୨୩ । ପ୍ରଭୁ ! ଏ ସମସ୍ତଙ୍କ ମାଲିକ, ଅଖିଳ ରସାମୃତ ମୂର୍ତ୍ତି—ସମସ୍ତ ଶୃଙ୍ଗାର (ମଧୁର) ରସରୂପ ଅମୃତର ଶରୀର । ଅହ୍ଲାଦପ୍ରଦକର କୀର୍ତ୍ତି—ଆପଣଙ୍କ ହସ୍ତର ଯଶ (କାର୍ଯ୍ୟ) ସମସ୍ତଙ୍କର ଆନନ୍ଦଦାୟକ ବା ଅହ୍ଲାଦପ୍ରଦକର ଚନ୍ଦ୍ର ସେ ଆପଣଙ୍କ କୀର୍ତ୍ତିରୂପେ ବିରାଜମାନ (ଆପଣଙ୍କ କୀର୍ତ୍ତି ମୂର୍ତ୍ତିମାନ ହୋଇ ଚନ୍ଦ୍ରରୂପେ ବିରାଜମାନ) । ଉଜ୍ଜ୍ୱଳ ନିପୁଣ—ଆପଣ ଉଜ୍ଜ୍ୱଳ ରସରେ ବା ଶୃଙ୍ଗାର ରସରେ ଦକ୍ଷ, ଲକ୍ଷଣବନ୍ତ—ଦ୍ୱାତ୍ରିଂଶ ଲକ୍ଷଣ ସମ୍ପନ୍ନ । ହରତାମ୍ବର ମଣ୍ଡନେ ମଣ୍ଡିତ—ପୀତବସ୍ତ୍ର ଭୂଷଣରେ ଭୂଷିତ ବା ପୀତବସ୍ତ୍ର ଅଳଙ୍କାରରେ ମଣ୍ଡିତ । ସକଳ ମଣ୍ଡନ—ସମସ୍ତଙ୍କର ଶିରୋଧାର୍ଯ୍ୟ । କଳାନିଧି—ଚଉଷଠି କଳାର ପାତ୍ର, ସର୍ବକଳାକୁଶଳ । ଦୀନତାପ ଖଣ୍ଡନ—ଦୁଃଖିର ତ୍ରିତାପ (ଦୁଃଖ) ନାଶକ । ଚନ୍ଦ୍ରପକ୍ଷେ—ପ୍ରଭୁ—ଚନ୍ଦ୍ର ଆକାଶ ମଣ୍ଡଳରେ ପ୍ରଭୁତ୍ୱ ବିସ୍ତାର କରନ୍ତି । ଅଖିଳ ରସାମୃତ ମୂର୍ତ୍ତି—ସମସ୍ତ ଅମୃତ ରସରେ ନିର୍ମିତ ଶରୀର । କର କୀରତି—କିରଣର, ମହତ୍ତ୍ୱ—ମହିମା ହେଉଛି ଅହ୍ଲାଦପ୍ରଦ । ବା ରଞ୍ଜକ—ଶୃଙ୍ଗାରକୁ; କର—କିରଣ ଆନନ୍ଦପ୍ରଦ । ଉଜ୍ଜ୍ୱଳ ନିପୁଣ—ଜଗତକୁ

Digitized by srujanika@gmail.com

ଶୁଚିପଦବୀଦାୟକ ହୋଇଛ । ରାଧାନାମେ କି ସ୍ନେହ ବଳାଇଛ ।
ତୁମ୍ଭେ ତ ବିଧୁ ଧନୀ କମଳିନୀ । ମିତ୍ର ହେଲେ ବା ହେବ ସୁଖଦାୟିନୀ ।
ଉଭୟ ସନ୍ଦେହ ହେ । କେହ୍ମେ ସମ୍ଭବ ନ ଧୀରେ କହ । ୨୪ ।
ବୋଲିବ ଅବା ଆମ୍ଭେ ପୁଷ୍ପବନ୍ତ । ହରିତାମ୍ବର ବିଳାସ ବିଦିତ ।
ଶୁଚି କଳେବର ହର ବୋଲନ୍ତି । ସଦା ଅନନ୍ତ ଗତିବନ୍ତ ହେନ୍ତି ।
ଘଟିଲେ ଏମନ୍ତ ହେ । ନିର୍ବନ୍ଧ ଜାତ ହେ । ବିକଳ୍ପିତ ।୨୫।

---

ଉଜ୍ଜ୍ୱଳ କରିବାରେ ସମର୍ଥ । ହରିତାମ୍ବର ମଣ୍ଡନେ ମଣ୍ଡିତ—ଦିଗମ୍ବର ବା ମହାଦେବଙ୍କ ଶିରୋଭୂଷଣ ହେତୁ ପୂଜିତ ବା ସୁନ୍ଦର ବା ହରିତ—ଦିଗ, ଅମ୍ବର ଆକାଶମଣ୍ଡଳ କରିବାରେ ସୁନ୍ଦର । କଳାନିଧି—ଷୋଳକଳାର ଆଧାର, ଷୋଳକଳାପୂର୍ଣ୍ଣ । ଦିନତାପ ଖଣ୍ଡନ—ଦିବସର ସନ୍ତାପ (ତାପ) ନାଶକ । ହେ ଚନ୍ଦ୍ର, ହେ କୃଷ୍ଣଚନ୍ଦ୍ର ଆମ୍ଭ ଦୁଃଖ ନାଶ କର ।

୨୪ । ଶୁଚି ପଦବୀଦାୟକ ହୋଇଛ—ନିର୍ମଳପଦ (ଶୁଦ୍ଧପଦ, ବୈକୁଣ୍ଠପଦ) ଦାତା ; ଶୁଚିପଦବୀଦାୟକ—ଶୃଙ୍ଗାରରସର ଦାତା । ରାଧାନାମେ କି ସ୍ନେହ ବଳାଇଛ—କୃଷ୍ଣପକ୍ଷରେ :— ଶୁଚିପଦବୀଦାୟକ—ଶୃଙ୍ଗାରରସକୁ ମନରେ ଜାତକାରକ । ରାଧାନାମେ—ଅନୁରାଧା ନକ୍ଷତ୍ର, ଚନ୍ଦ୍ରପକ୍ଷରେ—ଶୁଚିପଦବୀଦାୟକ—ଗ୍ରୀଷ୍ମତାପପ୍ରଦ । ରାଧାନାମେ—ବୈଶାଖ ମାସର ପୂର୍ଣ୍ଣିମା ଦିବସରେ । ସୂର୍ଯ୍ୟ-ପକ୍ଷେ—ତୁମ୍ଭେ ତ ବିଧୁ—ବିଷ୍ଣୁ । ପକ୍ଷେ ଚନ୍ଦ୍ର । କମଳିନୀ—ପଦ୍ମିନୀ ( ରାଧା ପଦ୍ମିନୀ କନ୍ୟା ) । ପଦ୍ମଲତା—ପକ୍ଷେ ଚନ୍ଦ୍ର ଓ ପଦ୍ମ ମଧ୍ୟରେ ପ୍ରୀତି ନ ଥିବାହେତୁ ଚନ୍ଦ୍ରଙ୍କ ସଙ୍ଗେ ମିତ୍ର ହେଲେ—( ଚନ୍ଦ୍ର ଓ କୃଷ୍ଣଚନ୍ଦ୍ର ) ସୁଖଦାତା ହୋଇପାର । କମଳିନୀ—ପଦ୍ମିନୀ କନ୍ୟା ଓ ପଦ୍ମଲତା ଏଠାରେ କାମରେ ମିତ୍ରତା । ଅପର ଅର୍ଥରେ ଚନ୍ଦ୍ର ପଦ୍ମିନୀର ସୁଖଦାତା ନୁହେଁ । ମିତ୍ର ହେଲେ—ସୂର୍ଯ୍ୟ ହେଲେ ପଦ୍ମିନୀର ସୁଖଦାତା ହେବ । ଯେ ଶୁଚିପଦଦାୟକ—ସୂର୍ଯ୍ୟ ସେ ରାଧା (ଅନୁରାଧା ନକ୍ଷତ୍ରରେ) ଠାରେ ସ୍ନେହ କରିପାରେ ନାହିଁ । ଯେ ବିଧୁ—ଚନ୍ଦ୍ର ସେ ପଦ୍ମିନୀ ( ପଦ୍ମଲତା ) ଠାରେ ସ୍ନେହ କରିପାରେ ନାହିଁ । ତେବେ ତୁମ୍ଭେ ସୂର୍ଯ୍ୟ ହେଲେ ଓ ଚନ୍ଦ୍ର ହେଲେ କେହ୍ମେ—କପଟ ପ୍ରୀତି ସମ୍ଭବପର ହେବ କହ । ତେଣୁ ଉଭୟ ବିଷୟରେ ସନ୍ଦେହ ଜନ୍ମିଲା ।

୨୫ । ତୁମ୍ଭେ କହିପାର ମୁଁ ପୁଷ୍ପବନ୍ତ—ଚନ୍ଦ୍ର ଓ ସୂର୍ଯ୍ୟ ଉଭୟ । ହରିତାମ୍ବର—ଦିଗ ଓ ଆକାଶରେ, ବିଳାସ—କ୍ରୀଡ଼ା ବା ଭ୍ରମଣ; କୃଷ୍ଣପକ୍ଷରେ—ହରିତାମ୍ବର—ପୀତବସ୍ତ୍ରରେ ; ବିଳାସ—ପ୍ରୀତି । ବିଦିତ—ଜଣା । ଶୁଚି କଳେବର—ଶୁକ୍ଳ (ଚନ୍ଦ୍ର), ଅଗ୍ନିମୟ ( ସୂର୍ଯ୍ୟ ) ଦେହ; ଶୁଦ୍ଧ ବା ଶୃଙ୍ଗାର ରସମୟ ( କୃଷ୍ଣପକ୍ଷରେ ) ହର—ଚନ୍ଦ୍ର, ହର—ସୂର୍ଯ୍ୟ ; ହର—କୃଷ୍ଣ । ଅନନ୍ତ ଗତିବନ୍ତ—ସର୍ବଦା

Digitized by srujanika@gmail.com

ପୁଣି ତ ନୂତନା ଅମୃତ ସହୀ । କାମଦୀକ୍ଷାଗୁରୁ କରି ତ ନାହିଁ ।
ହୋଇନାହିଁ ଧନେ ପ୍ରେମପଥିକା । କି କରି ବୋଧ କରିବୁଁ ମତିକା ।
ଏ କଥା ଦୁର୍ଲ୍ଲଭ ହେ । ଭାଗ୍ୟ ନ ଥିଲେ କି ହେବ ସୁଲଭ । ୨୬ ।
ଦୁଷ୍ପ୍ରାପ୍ୟଙ୍କୁ ପ୍ରତିକାର ସାହସ । ଉପାୟେ ରାହୁ ଖାଇଲା ପୀୟୂଷ ।
ଅଘଟ ଘଟନା କରାଏ ବିଧି । ଭାଗ୍ୟ କେ କାହାର ଜାଣିବ ବେଧି ।
ଥିଲେକୁ କରମେ ହେ । ଶାନ୍ତନୁ ଗଙ୍ଗା ବରିଲେ ଭ୍ରମେ । ୨୭ ।
ଶଶୀ ଅନୁଗତ ଶିବଙ୍କୁ ହେଲେ । ସେ କି ତାହାଙ୍କୁ ପକାଇଦେଲେ ।
ବନରେ ସୁମନ ହୋଏ ବିକାଶ । ସାରଙ୍ଗ ଆଶ ସେ କି କରେ ନାଶ ।
ତୃଷାବନ୍ତ ଜନେ ହେ । ବାର ବାରିଲ କି ପୁଣି ପିବନେ । ୨୮ ।

---

ଆକାଶଗଙ୍ଗା । ଅନନ୍ତ ଗନ୍ଧବନ୍ତ—ଅସୀମ ବା ଅଶେଷ ଭାବରେ ମୁକ୍ତିଦାତା ହେଉ ବା ଅଭୀଷ୍ଟ ଫଳପ୍ରଦ ହେଉ । ଏମନ୍ତ ଘଟିଲେ—ଘଟଣା ହେଲେ ଏହାପରି ବିବିଧ ଅର୍ଥ ହେଲା; ( ବିକଳିତ—ଚନ୍ଦ୍ର ବା ସୂର୍ଯ୍ୟ ବା କୃଷ୍ଣ—ଏପରି ଭାବ । )

୨୬ । ଅମୃତ ସହୀ—ସୁଧା ; ନୂତନା—ନୂଆ ଯୁବତୀ; ମୁଗ୍ଧା, କାମଦୀକ୍ଷା ଗୁରୁ—କାମମନ୍ତ୍ର ଶିକ୍ଷାରେ ଗୁରୁରୂପେ କାହାରିକୁ ଗ୍ରହଣ କରିନାହିଁ । ପ୍ରେମପଥିକା—ପ୍ରୀତି ପଥରେ ଚାଲିନାହିଁ, ପ୍ରୀତି ବିଷୟରେ କିଛି ଜାଣିନାହିଁ । କି କରି ମତିକା ବୋଧ କରିବୁଁ—କିପରି ତା ମନକୁ ବୁଝାଇବୁ । ଦୁର୍ଲଭ—ଦୁଷ୍ପ୍ରାପ୍ୟ; ସୁଧାର ଯେବେ ସୁଦଶା ଥିବ ତେବେ ହେବ ।

୨୭ । ଦୁଷ୍ପ୍ରାପ୍ୟଙ୍କୁ—ଦୁର୍ଲ୍ଲଭ ବସ୍ତୁକୁ, ସାହସ ପ୍ରତିକାର—ସାହସ ନ ଥିଲେ ଦୁର୍ଲ୍ଲଭ ବସ୍ତୁ ମିଳେନାହିଁ । ରାହୁ ଉପାୟେ—ଉପାୟ କରି ଅସୁରଙ୍କ ସଙ୍ଗରେ ଥାଇ ଦେବଙ୍କ ମଧ୍ୟରେ ପୀୟୂଷ—ଅମୃତ ଖାଇଲା । ଅଘଟ ଘଟଣା—ନ ହେବା କଥାକୁ ବିଧାତା ଦେଖାଇଦିଏ -ସବୁ କାର୍ଯ୍ୟ ସିଦ୍ଧ କରାଏ । ବେଧି—କିପରି । କରମେ ଥିଲେକୁ—କପାଳରେ ଥିବାରୁ, ଗଙ୍ଗା—ଶାନ୍ତନୁନଙ୍କୁ ( ଶାନ୍ତନୁଙ୍କୁ ) ଭୀଷ୍ମଙ୍କ ପିତାଙ୍କୁ, ଭ୍ରମେ—ଭୁଲକରି, ବରିଲେ—ପତି କଲେ ।

୨୮ । ଶଶୀ—ଚନ୍ଦ୍ର । ଶିବଙ୍କୁ ଅନୁଗତ ହେଲେ—ମହାଦେବଙ୍କୁ ଆଶ୍ରୟ କଲେ । ତାଙ୍କୁ କି—ତାଙ୍କୁ କଣ ପକାଇ ଦେଲେ—ଦେଲେ ନାହିଁ (ମସ୍ତକରେ ଧରିଲେ )। ସୁମନ—ପୁଷ୍ପ । ବିକାଶ ହୁଏ—ଫୁଟେ । ସାରଙ୍ଗ—ଭ୍ରମର । ନାଶ କରେ କି—ପୂର୍ଣ୍ଣ କରେ । ତୃଷାବନ୍ତ ଜନେ—ତୃଷିତ ଲୋକେ ; ପିବନେ—ପିଇବାରେ,—ପିଇବାପାଇଁ । ବାର—ଜଳ । ବାରିଲ କି—ନିଷେଧ କରେ କି, ଲୋକମାନେ କିଛି ବିଚାର କରନ୍ତିନାହିଁ—ସେହିପରି ସୁଧା ଭ୍ରମର ଆଶା ପୂର୍ଣ୍ଣ କରିବ ।



Digitized by srujanika@gmail.com

ରସ-ସୁଧା-ସିନ୍ଧୁ ନବ ନାଗରୀ । ସଂସାରସାର-ଶିରୀ-ଖ୍ୟାତକାରୀ ।
ଶୁଭପଦବୀ-ତରଣି ସଦନେ । ସୁରତରୁ ଜାତ କରନ୍ତି ସେ ଯେ ।
ଏ ସିଦ୍ଧିକି ବନ୍ଧୁ ହେ । ଅନୁଗତଜନେ ବାଧକ କେହୁ । ୨୯ ।
ଏ କଥା ଧ୍ୟେୟ ଅବଧାନେ ଘେନ । କଳ୍ପଲତା କି ନ ସେନଇ ଦୈନ୍ୟ ।
ଆଦରଶ ତର ସ୍ୱଚ୍ଛ ହୃଦୟ । ବାଞ୍ଛିତ ବସ୍ତୁ କି ନୋହେ ଉଦୟ ।
ନାଗରଶେଖର ହେ । ତବେ ଚେନାଯାଉ ଅନ୍ତ ବାହୁର । ୩୦ ।
ବାସନା ବିନା ସୁମନା ସ୍ୱୀକାର । କରବାର କେବେଁ ନାହିଁ ପ୍ରଭୁର ।
ଅଭିସାରକୁ ଶକ୍ତ ଅବା କାହିଁ । ଭୃଙ୍ଗ ଇଚ୍ଛିଲେ କି କରଇ ନାହିଁ ।
ନାଗରେନ୍ଦ୍ର ହୋଇ ହେ । ବସ୍ତୁର ତୁଚ୍ଛ କର କାହିଁ ପାଇଁ । ୩୧ ।

୨୭-୨—ନାମ ଗୁରୁଦୀକ୍ଷା କ, ଖ, ଗ, ଘ, ଚ, ଜ ;

---

୨୯ । ରସସୁଧାସିନ୍ଧୁ—ଶୃଙ୍ଗାର ରସରୂପକ ଅମୃତର ସମୁଦ୍ର ସ୍ୱରୂପା । ସଂସାରସାରଶିରୀ ଖ୍ୟାତକାରୀ—ଯେ ସମୁଦ୍ର ସଂସାରର ସାର କି ଶ୍ରେଷ୍ଠ ସ୍ୱରୂପା ଲକ୍ଷ୍ମୀଙ୍କୁ ପ୍ରକାଶ କରନ୍ତି । ଅନ୍ୟ ପକ୍ଷେ—ଜଗତରେ ଶ୍ରେଷ୍ଠ ଶୋଭାକୁ ପ୍ରକାଶ କରନ୍ତି । ଶୁଭ ପଦବୀ ତରଣି ସଦନେ—ସମୁଦ୍ର ସର୍ବ ତୀର୍ଥାଶ୍ରୟ ହେତୁ—ନିର୍ମଳ ମାର୍ଗ କି ମୁକ୍ତି ମାର୍ଗ ପ୍ରାପ୍ତିରେ ନୌକା ସେ, ସମୁଦ୍ର ଅଟେ ସଦନ ; ସେଥିରେ ସ୍ନାନ କଲେ ଲୋକ ମୁକ୍ତି ଲାଭ କରେ ( ବା ଶୁଦ୍ଧମାର୍ଗରେ ନୌକା ଯାହାର—ସମୁଦ୍ର ସଙ୍କଟ ନାହିଁ ଲୁଚେ ବା ଶୁଭପଦବୀ—ଅଗ୍ନିର ସ୍ଥାନକୃତ ଓ ତରଣି ନୌକାର ଯହିଁରେ ) ଅନ୍ୟପକ୍ଷେ—ଶୃଙ୍ଗାର ରସରେ ଅଭିଜ୍ଞାନଦାୟିନୀ ( ଶୃଙ୍ଗାର ରସରେ ପ୍ରବେଶ କରିବାକୁ ନୌକା ସଦୃଶା ) ସୁରତରୁ ଜାତ କରନ୍ତି ସେ ଯେ—ସିନ୍ଧୁ କଳ୍ପଦ୍ରୁମକୁ ଜାତ କରନ୍ତି । ସୁରତରୁ ଜାତ କରନ୍ତି ସେ ଯେ—ବସନ୍ତ । ବାଧାକୁ ସେ ଜନ୍ମଦେଇଅଛି । ( ସୁରତ—ରମଣ । ରୁଜା—ପୀଡ଼ା, ବାଧା ) । ବାଧକ—ଉପେକ୍ଷା କରବ ।

୩୦ । ଧ୍ୟେୟ ଅବଧାନେ—ସୁନ୍ଦର ମନରେ ବା ଧ୍ୟାନାନୁଷ୍ଠାନରେ । କଳ୍ପଲତା—ଇଚ୍ଛା ପୂର୍ଣ୍ଣ କଳ୍ପ ଲତା ; ଦୈନ୍ୟ—ଲୋକର ଅଭାବ, ଦୁଃଖିର ଦୁଃଖ । ଆଦରଶ—ଦର୍ପଣପରି ହୃଦୟ ନିର୍ମଳ । ବାଞ୍ଛିତବସ୍ତୁ—ମନୋରଥରୂପ ବସ୍ତୁ, ଉଦୟ ହେବ ନାହିଁକି ?

୩୧ । ସୁମନା—ଫୁଲ । ବାସନା—ସୁବାସ । ନାହିଁ ପ୍ରଭୁର—ଜଣାନାହିଁ । ଅଭିସାରକୁ—ପ୍ରିୟ ନିକଟ ଯିବାକୁ ; ଶକ୍ତ—ବଳ ; ଅବା କାହିଁ—ନାହିଁ । ଭୃଙ୍ଗ—ଭ୍ରମର । ସୁବାସପୁଷ୍ପକୁ ଭ୍ରମର ଆଦର କରେ—ପୁଷ୍ପ ଭୃଙ୍ଗ ନିକଟକୁ ଯାଏ ନାହିଁ—ଭ୍ରମର ଇଚ୍ଛାକଲେ ତାକୁ ବାରଣ କରେନାହିଁ—ସେହିପରି ସୁମନା ରାଧା—ବାସନା—ଇଚ୍ଛାବିନା—କୃଷ୍ଣେ ତାକୁ ଆଦର କରି ପାରିବେ ନାହିଁ—ରାଧାର କୃଷ୍ଣଠାରେ

Digitized by srujanika@gmail.com

ଅମ୍ଭ ସଜନୀ ପୁଣ୍ୟ କେତେମାନ । ହେବ କି ତବ ପୀରତିର ପାତ୍ର ।
ତବ ଅସୁରଠାରେ ସ୍ନେହ କଲେ । ତୁଳସୀ କରୁ ଗଳେ ଲମ୍ବାଇଲେ ।
ମହନ୍ତଙ୍କ ଗତି ହେ । ଶିବ ଗୋମୟବିଭୂତି ବହନ୍ତି । ୩୨ ।
ସତାଇଶ ଶୋଭକନ୍ୟା ଅଛଇ । କପିକି ଶଶୀକି ସ୍ନେହ କରଇ ।
ଦୋଷା ବ୍ୟାଘ୍ରଗୃହ ଭାଳିହେଲେହେଁ । ତା ବିନା ଉଜ୍ଜ୍ୱଳ ନପୁଣ ନୋହେ ।
ଏମନ୍ତ ଯେ ହେବେ ହେ । ପ୍ରୀତିପତାକା ସେହି ଉଡ଼ାଇବେ । ୩୩ ।
ଶଠ ଧୃଷ୍ଟ ଦକ୍ଷିଣତା ପ୍ରଭୃତି । ନାଗରମାନଙ୍କ ଗତି ଅପାର ।
ମଧୁପବ୍ରତ ଲମ୍ପଟ କପଟ । ତମ୍ଭେ ଭେକନ୍ତ ସୁମନା ନିକଟ ।
କହୁଥାନ୍ତି ଯାହା ହେ । ପ୍ରୀତିପାଳନ ଭାଳେ ନୋହେ ତାହା । ୩୪ ।

---

ଇଚ୍ଛା ଅଛି, ତାର ଅନୁସାର କରିବାକୁ ବଳ ନାହିଁ—( ବା ଲଜ୍ଜାବସ୍ଥରେ ତାର ଶକ୍ତି ଅଛି କି ? ) ତୁମ୍ଭେ ପୁରୁଷରୂପ ରଙ୍ଗ ଇଚ୍ଛାକଲେ ସେ ନାହିଁ କରିବ ନାହିଁ । ତୁମ୍ଭେ ନାଗରେନ୍ଦ୍ର ହୋଇ—ରସିକଶ୍ରେଷ୍ଠ ହୋଇ, ବସ୍ତ୍ର ହରି—ବସ୍ତ୍ରହରଣ କରି ଯାଉଛ କାହିଁକି ।

୩୨ । ଅମ୍ଭ ସଜନୀ ପୁଣ୍ୟ କେତେମାନ—ଅମ୍ଭ ସଜନୀ ରାଧାର ସୁକୃତ କେତେ ଯେ । ପାତ୍ର—ଭାଜନ, ଯୋଗ୍ୟ । ଅସୁରଠାରେ—ଜଳନ୍ଧର ସ୍ତ୍ରୀ ବୃନ୍ଦାବତୀଠାରେ । ମହନ୍ତଙ୍କ ଗତି—ବଡ଼ଲୋକଙ୍କ ଢଙ୍ଗ ; ଶିବ—ମହାଦେବ । ଗୋମୟ ବିଭୂତି—ଗୋବରର ପାଉଁଶକୁ ଦେହରେ ବୋଳି ହୁଅନ୍ତି ଓ ବିଷ୍ଣୁ ବୃନ୍ଦାବତୀକୁ ତୁଳସୀ କରି ଗଳାରେ ଲମ୍ବାନ୍ତି । ସେ ଯାହା ଇଚ୍ଛା ତାହା କରନ୍ତି ।

୩୩ । ସତାଇଶ ଶୋଭକନ୍ୟା—୨୭ଟି ନକ୍ଷତ୍ର ରୂପିଣୀ ସୁନ୍ଦରୀ କନ୍ୟା । କପିକି—ରବିକୁ, ଶଶୀକି ସ୍ନେହ କରଇ—ଚନ୍ଦ୍ର ଏବେ ପ୍ରୀତି କରନ୍ତି । ଦୋଷା—ରାତ୍ରି, ଦୋଷଯୁକ୍ତା ବ୍ୟାଘ୍ରଗୃହ—ବ୍ୟାଘ୍ରର କର୍ମକାଳ ଓ ଦୋଷଯୁକ୍ତା । ଭାଳି—ଭ୍ରଷ୍ଟବସ୍ତି, ଅସୁନ୍ଦରୀ । ତା ବିନା—ସେ ରାତ୍ରିବିନା । ଉଜ୍ଜ୍ୱଳ ନପୁଣ—ଉଜ୍ଜ୍ୱଳରସ—ଶୃଙ୍ଗାର ରସ, ନପୁଣ—ଭଲ ନୁହେଁ । ଅନ୍ୟ ପକ୍ଷରେ—ଉଜ୍ଜ୍ୱଳ ଆଲୋକରେ ଦକ୍ଷ ନୁହେଁ ବା ଦେଦୀପ୍ୟମାନ ନୁହେଁ । ଏମନ୍ତ ଯେ ହେବେ ହେ—ଏପରି ହେଲେ ସବି ଚନ୍ଦ୍ରପରି ଯେଉଁ ପୁରୁଷ ସ୍ତ୍ରୀ ହେବେ ସେ ହିଁ ପ୍ରୀତିପତାକା ଉଡ଼ାଇବେ । ଚନ୍ଦ୍ର ଯେପରି ସୁନ୍ଦରୀ ତାରକାମାନଙ୍କୁ ଛାଡ଼ି ଅସତୀ ରାତ୍ରି ଭାଳି ହେଲେ ସୁଦ୍ଧା ନ ଛାଡ଼ି ସ୍ନେହ କରନ୍ତି ତୁମ୍ଭେ ଅନ୍ୟ ସୁନ୍ଦରୀମାନଙ୍କୁ ଛାଡ଼ି ଯାଃପି ହେବେ ଯେଉଁ ରାଧା ଅସୁନ୍ଦରୀ ହେଲେ ସୁଦ୍ଧା ନ ଛାଡ଼ି ପ୍ରୀତି କରିବ ; ତେବେ ପ୍ରୀତିପତାକା ଉଡ଼ାଇବ ।

୩୪ । ନାଗରମାନଙ୍କ ଗତି—ବ୍ୟବହାର । ଅପାର—ବହୁପ୍ରକାର । ଶଠ—ଗୋଟିଏ ସ୍ତ୍ରୀକୁ ସ୍ନେହ କରି ଅନ୍ୟ ସ୍ତ୍ରୀକୁ ବାହାରେ ସ୍ନେହ ଦେଖାଇ ଅନ୍ୟ ସ୍ତ୍ରୀକୁ

Digitized by srujanika@gmail.com

ଗୁଡ଼-ଗଣ୍ଡୂଷ-କଳ-ତୁଣ୍ଡ ଭୂଷା । ମଧୁର ବୋଲି କି ହେବ ପ୍ରଶଂସା ।
ମନକୁ ମନ ଯେବେ ନ ମିଳିବ । ଘେନାଘେନ କି ପ୍ରୀତି ବୋଲାଇବ ।
ଏକଅଙ୍ଗୀ ପ୍ରୀତି ହେ । ସଂସାରେ କେତେ ପରି ନ ଅଛନ୍ତି । ୩୫ ।
ମିତ୍ରକୁ ପଦ୍ମ ଭଜୁଥାଇ ଯେତେ । ସେ ତାକୁ ଅନୁରାଗ କରେ କେତେ ।
ଚନ୍ଦ୍ର ବାହୁନେ କୁମୁଦ ବିମନା । ଚନ୍ଦ୍ରର କି ହାନି କୁମୁଦ ବିନା ।
ଘନେ କେକୀ ସୁଖୀ ହେ । ଘନ କି ଦୟା ଭାବେ ଦୁଃଖ ଦେଖି ॥
ମଧୁ ସଞ୍ଚିତ ସରଘାରେ ଜାତ । ମଧୁ ବିନା କି ମଧୁକର ଗତ ।
ଚନ୍ଦ୍ରକାନ୍ତ କାନ୍ତି ଗୁଣେ ଦ୍ରବଇ । କାନ୍ତିଗୁଣ ଆବୋରୁଁ କି ଦରଇ ।
ନାରୀଙ୍କ ମନରେ ହେ । ଜଳଧି ସୁଖଦାନୀ ପରସ୍ପରେ । ୩୭ ।

---

ସ୍ତ୍ରୀଠରେ ସ୍ନେହ କରିବାର ପୁରୁଷକୁ ଶଠ କହନ୍ତି । ଧୃଷ୍ଟ—ଅପରାଧ କରି ଲଜ୍ଜିତ ହୋଇ ଗାଳି ଖାଇଲେ ମଧ୍ୟ ଲାଜ ନ ଥାଇ ଦୋଷ ଦେଖାଗଲେ ତୁଣ୍ଡରେ ନ ମାନେ ଯେଉଁ ପୁରୁଷ ତାକୁ ଧୃଷ୍ଟ କହନ୍ତି । ଦକ୍ଷିଣ—ଅନେକ ସ୍ତ୍ରୀଙ୍କୁ ବହୁତର ସ୍ନେହ କରି ମାନରକ୍ଷା ନ କରାଏ ଯେଉଁ ପୁରୁଷ ତାକୁ ଦକ୍ଷିଣ କହନ୍ତି—ଏହିପରି, ମଧୁପବତ—ଭ୍ରମରପରି । ଲମ୍ପଟ ଓ କପଟ—ଅସଲ୍ଲ ଓ କପଟୀ । ସୁମନା—ଫୁଲ । ଫୁଲକୁ ଚୁମ୍ବି—ଫୁଲରୁ ରସ ଗ୍ରହଣ କରି ତାକୁ ଗ୍ରହନ୍ତି—ସେହିପରି ସାମାନ୍ୟ—ସ୍ତ୍ରୀଙ୍କ, ଚୁମ୍ବି—ସମ୍ଭୋଗକରି ପାଖରୁ ପଳାନ୍ତି । ଅନେକ କଥା ତୁଣ୍ଡରେ କହନ୍ତି କିନ୍ତୁ ତାହା କେବେ ପ୍ରତିପାଳନ କରନ୍ତି ନାହିଁ ।

୩୫ । ଗୁଡ଼ ଗଣ୍ଡୂଷ କଳ ତୁଣ୍ଡଭୂଷା—ଗୁଡ଼କୁ ତୁଣ୍ଡରେ ଜାକି ରଖିଲାପରି ପୁରୁଷମାନଙ୍କ ତୁଣ୍ଡଭୂଷା—ମୁହଁ କଥା ମଧୁର ବୋଲି—ମିଠା ବୋଲି ପ୍ରଶଂସା ହେବ କି ? ମନକୁ ମନ ଯେବେ ନ ମିଳିବ—ଏକ ନୋହିବ । ଘେନାଘେନ କି—ମୁହଁରେ ମିଠା କଥା କୁହାକୁହି, କି ପ୍ରୀତି ବୋଲାଇବ—ପ୍ରୀତି କୁହାଯାଏ ନାହିଁ । ଏକଅଙ୍ଗୀ ପ୍ରୀତି—ଏକର ପ୍ରୀତି । ଏକ ଅଙ୍ଗୀ ପ୍ରୀତି ସଂସାରରେ କେତେ ପରିତ ଅଛନ୍ତି—ଅନେକ ପ୍ରକାରରେ ଅଛି ।

୩୬ । ମିତ୍ରକୁ—ସୂର୍ଯ୍ୟଙ୍କୁ । ଯେତେ—ଯେତେ ପ୍ରକାରରେ ଭଜୁଥାଇ ସେ ତାକୁ ଅନୁରାଗ କରେ କେତେ—ସୂର୍ଯ୍ୟ ତାକୁ କେତେ ସ୍ନେହ କରେ—ସୂର୍ଯ୍ୟ ତାକୁ ପଦ୍ମକୁ ଛାଡ଼ି ଅସ୍ତ ହୋଇ ଚାଲିଯାଏ । ଚନ୍ଦ୍ର ବାହୁନେ କୁମୁଦ—କଇଁଫୁଲ ବିମନା—ମୁଦ୍ରିତା ହୁଏ । କୁମୁଦ ବିନା—କଇଁ ନ ଥିଲେ ଚନ୍ଦ୍ରଙ୍କ କି ହାନି ହୁଏ—ଚନ୍ଦ୍ରର କିଛି ଯାଏ ଆସେ ନାହିଁ । ଘନେ—ମେଘଠାରେ, ମେଘକୁ ଦେଖି, କେକୀ—ମୟୂର, ସୁଖୀ—ଆନନ୍ଦିତ ହୁଏ । ଘନ—ମେଘ ମୟୂର ଦୁଃଖ ଦେଖି ଦୟା କରେ କି ?

୩୭ । ସରଘାରେ—ମହୁମାଛିମାନଙ୍କଦ୍ୱାରା । ମଧୁ ସଞ୍ଚିତ—ମହୁ ଛଣା ହୁଏ । ମଧୁବିନା—ମହୁ ନ ଥିଲେ, ମହୁ ଛଡ଼ା, ମଧୁକର କି ଗତି—ଭ୍ରମରର କଣ ଅବସ୍ଥା

Digitized by srujanika@gmail.com

ତେମନ୍ତ ହେଲେହେଁ ସିଦ୍ଧରକାନ୍ତ । ଅନଳ ଜାତ ଗୁଣ ଯିବା ଖ୍ୟାତ ।
ବସନ୍ତକୁ ଆଶ କରେ ବ୍ରତତୀ । ସେ କି ନ କରେ ତାକୁ ଫଳବତୀ
ଏ ଲୁହଇ ନୂଆ ହେ । ନାନା ଜାତରେ ଅଛନ୍ତି ପ୍ରୀତିଅ । ୩୮ ।
ଏମାନ ଅମ୍ଭ ମନେ ହେଲା ନାହିଁ । ମନ୍ତିବା ଗୋଚର କରାଇ ନାହିଁ
ପୁଣି ନାଗରପଣ ଯେତେ ଅଛି । ନଗରେ ନାଗର ଜାଣ ପାରୁଛି ।
ନ ଶକ୍ତି ମାନସ ହେ । ଏମାନ କହିବା ଅତି ସାହସ । ୩୯ ।
ଲକ୍ଷ୍ମୀଆଦିଙ୍କ ପତିବ୍ରତା ଗୁଣେ । ସଖୀ ତିରସ୍କାର କରି ନ ଗଣେ ।
ସେମାନେ ମାନେ ଲଗିଛନ୍ତି ବାଦେ । ପଡ଼ିଛି ସଜନି ଏଣୁ ପ୍ରମାଦେ ।
ତାହାର କି ନାମ ହେ । ଶ୍ରୀଙ୍କ ତନୁ ହେଲେ ବିଭ୍ରମ । ୪୦ ।

---

—ଭ୍ରମର ମତ୍ତ ସତ୍ତେ ମଧୁ ଖାଏ ନାହିଁ କିନ୍ତୁ ମଧୁ ବିନା ଷଣ୍ଢେ ରହିପାରେ ନାହିଁ । ଚନ୍ଦ୍ରକାନ୍ତ—ଚନ୍ଦ୍ରକାନ୍ତ ମଣି; କାନ୍ତ ଗୃହିଁ, ପ୍ରିୟାକୁ—ନନ୍ଦନ୍ତ ଦେଖି, ଗନ୍ଧ, ଦୃଷ୍ଟିରେ । ଦ୍ରବଇ—ତରଳିଯାଏ । କାନ୍ତଗୁଣ ଆବର୍ତ୍ତିତ କଷଇ—ପ୍ରିୟ ଓ ଚନ୍ଦ୍ରର ଗୁଣକୁ ବା ମନୋହର ଗୁଣକୁ ଜାତ କରାଏ । ଉଭୟ ପ୍ରେମଦାର୍ଶୀ ମନଦେହର ଅନ୍ୟାନ୍ୟରେ ଚନ୍ଦ୍ର ଚନ୍ଦ୍ରକାନ୍ତ ଦୁହିଁଙ୍କର ଉଭୟ ସୁଖକୁ ଉଭୟେ ଦଅନ୍ତି ।

୩୮ । ତେମନ୍ତ ହେଲେହେଁ—ସେପରି ହେଲେ ସୁଦ୍ଧା; ସିଦ୍ଧରକାନ୍ତ—ସୂର୍ଯ୍ୟକାନ୍ତ ମଣି । କାନ୍ତକୁ—ସୂର୍ଯ୍ୟଙ୍କୁ ଦେଖି । ଅନଳ ଗୁଣ—ଅଗ୍ନିଗୁଣ ଜାତ ହିବା ଖ୍ୟାତ ହୁଏ, ଅର୍ଥାତ୍ ସୂର୍ଯ୍ୟକାନ୍ତ ମଣି ସୂର୍ଯ୍ୟ ରୂପ କାନ୍ତକୁ ଗୃହିଁଲେ ଅଗ୍ନି ଜାତ କରେ । ବ୍ରତତୀ—ଲତା । ବସନ୍ତ—ବସନ୍ତ ଋତୁରୂପ ପତିକୁ ଆଶାକରେ । ସେ କି —ବସନ୍ତ କଣ । ତାକୁ—ଲତାକୁ ଫଳବତୀ ନ କରେ କି ? ଏ ନୂଆ ଲୁହଇ—ଏ ପୂର୍ବରୁ ଅଛି । ନାନା ଜାତିରେ ପ୍ରୀତିଥିଅଛନ୍ତି ।

(୧) ଜଣେ ଅପରକୁ ଭଜୁଛି, ଅପର ତାକୁ ଭଜୁ ନାହିଁ; (୨) ପରସ୍ପରକୁ ଭଜୁଛନ୍ତି; (୩) ଜଣେ ଅପରକୁ ଭଜି ଫଳ ମାତ୍ର ପାଉଛି, କିନ୍ତୁ ଅପରର ତେତେ ଅନୁରାଗ ଜଣା ପଡ଼ୁ ନାହିଁ ।

୩୯ । ଏମାନ ଯେହେତୁ ଅମ୍ଭ ମନରେ ଜାତ ହେଲା ପନ୍ତିକାରେ ଜଣାଇଲୁ ନାହିଁ । ପୁଣି ଯେତେ ପ୍ରକାର ନାଗରପଣ ତାହା ସମସ୍ତଙ୍କୁ ଜଣା । ମନ ତ ଶକ୍ତି ଏସବୁ କହିବା ଧୃଷ୍ଟତା ମାତ୍ର ।

୪୦ । ଲକ୍ଷ୍ମୀ ଆଦିଙ୍କି - ଲକ୍ଷ୍ମୀ, ଉମା, ଶଚୀ ପ୍ରଭୃତିଙ୍କୁ । ପତିବ୍ରତାଗୁଣ—ସତୀ ପଣରେ, ସଖୀ—ସଜନୀ ରାଧା । ତିରସ୍କାର—ଭର୍ତ୍ସନା କରି—ସତୀ ବୋଲି ଗଣନା କରେ ନାହିଁ ଅର୍ଥାତ୍ ସତୀ ପଣରେ ସେମାନେ ତୁଚ୍ଛ । ସେମାନେ—ଲକ୍ଷ୍ମୀ ପ୍ରଭୃତି । ମାନେ—ଅପମାନ ପାଇ ବା ଅଭିମାନରେ, ବାଦେ ଲଗିଛନ୍ତି—ରାଧାଙ୍କ ଅନିଷ୍ଟ କରିବାରେ ଲାଗିପଡ଼ିଛନ୍ତି । ଏଣୁ—ଏହେତୁ, ପ୍ରମାଦେ—ଦୁଃଖରେ । ତାହାର କି

Digitized by srujanika@gmail.com

ଯେ ଜାଣି ସ୍ୱପନେ ଦେଖିଛୁ କି କି । ଜାତ ହା ହା ଚୁମ୍ବ ଚେଷ୍ଟା ଚକିତ ।
ଯେ କର୍ଣ୍ଣ ମୋହନ ବିଦ୍ୟା ପାଉଛୁ । ବଂଶୀନାଦରେ ଜ୍ଞାନ ଗୈରିଜଛୁ ।
ଶ୍ୟାମ ମୂର୍ତ୍ତି ପଟେ ହେ । ଡାକୁଁ ମାଇ ବାଇ ହେଲୁ ଲମ୍ପଟେ । ୪୧ ।
ବନେ ଘନେ ଦେଖିଛୁ ସେ ତାହାକୁ । ବସିଛୁ ସେ ଜୀବ ଘେନିଯିବାକୁ ।
ମନରେ ଆନ ନ ବସେ ସେ ବିନୁ । କେକିନାଟ ଦେଖି ମୂର୍ଚ୍ଛୀ ସୁତନୁ ।
କୃଷ୍ଣବର୍ଣ୍ଣ ଯେତେ ହେ । ଅନୁରାଗ ତହିଁ ବଢ଼ାଇ ଦେଉଛେ । ୪୨ ।
ଅତନୁ ବିକାରକୁ ଅନୁମାନେ । ଜାଣି ପଚାରିଲେ ସଙ୍ଗୀମାନେ ।
ଏ କି ରୀତି ହେଲା ପରାଣ ସଙ୍ଗ । ଶୁଣି ଚିନ୍ତାରେ ବୁଡ଼ିଗଲା ଧୀରା ।
ଭାଷିଲା ବିକଳେ ହେ । ପତିବ୍ରତାବ୍ରତ ସରିଲା ତାଳେ । ୪୩ ।
ପାଞ୍ଚଶର କି ପାଞ୍ଚଶର ମୂର୍ତ୍ତି । ପାଞ୍ଚ ପ୍ରକାରେ ଦହନ୍ତି ମୋ ଚିତ୍ତ ।
ସଞ୍ଚିବ ହେବ ପଞ୍ଚମ ମୋହନେ । ପାଞ୍ଚ ଏ ବାଧିବେ ବଢ଼ାଇଦେଲେ ।
ଏ କି ପ୍ରପଞ୍ଚ ହେ । ସାଙ୍ଗ ମୋ ପଞ୍ଚପ୍ରାଣ ଅଶା ମୁଞ୍ଚ । ୪୪ ।

---

ନାମ—କାହାର କାହାର ପତି, ନାମ ଶୁଣି—ଲକ୍ଷ୍ମୀପତି ନାମ, କୃଷ୍ଣ ଶୁଣିଲାଦିନୁ, ବିଭ୍ରମ ହେଲେ ବାତୁଳୀ ହେଲେ—ଭୟ ପାଇଲେ—'ଅର୍ଥାତ୍ ଲକ୍ଷ୍ମୀ ମୋତେ ଅସତୀ ବୋଲିବେ' ଏଣୁ ପ୍ରମାଦରେ ପଡ଼ିଲେ (ଯେପରି ରାଧା ଲକ୍ଷ୍ମୀଙ୍କୁ ପତିବ୍ରତାରେ ଗଣୁ ନ ଥିଲା; ଲକ୍ଷ୍ମୀପତି କୃଷ୍ଣନାମ ଶୁଣିଲା ଦିନୁ ଭାବିଲା—ଲକ୍ଷ୍ମୀ ମୋତେ ଅସତୀ କହିବେ କି. ଲକ୍ଷ୍ମୀ ପ୍ରକୃତି—ଅଭିମନ୍ୟୁ ଭାର୍ଯ୍ୟା ରାଧା ନାମ ଶୁଣିଲାଦିନୁ ଭୟ କଲେ ।

୪୧ । ସ୍ୱପନେ—ନିଦ୍ରାରେ, କଣ କଣ ଦେଖିଛୁ । ସର୍ବଦା ହା ହା ମୁହଁରୁ ବାହାରୁଛି—ଚୁମ୍ବନ ଦେବାକୁ ଚେଷ୍ଟା କରୁଛୁ । ମୋହନ ବିଦ୍ୟା—ମୁଗ୍ଧ କରିବା ଶାସ୍ତ୍ର । ଜ୍ଞାନ ଗୈରିଜଅଛୁ—ଜ୍ଞାନ ନଷ୍ଟ କରୁଛୁ । ଶ୍ୟାମମୂର୍ତ୍ତି ପଟେ—କୃଷ୍ଣଙ୍କ ମୂର୍ତ୍ତିର, କାଳିଆ ଛବିରେ । ଲମ୍ପଟେ—ଲୋଭରେ । ବାଇ—ବାତୁଳ ।

୪୨ । କେକିନାଟ—ମୟୂରନାଚ । ସୁତନୁ—ରାଧା । ଅନୁରାଗ—ପ୍ରୀତି, ସ୍ନେହ ।

୪୩ । ଅତନୁ ବିକାରକୁ—କାମ ବିକାରକୁ, କନ୍ଦର୍ପ ଦୁଃଖକୁ । ପରାଣ—ଜୀବନସ୍ୱରୂପା ସଖୀ । ଧୀରା—ରାଧା । ବିକଳେ—ଦୁଃଖରେ । ତାଳେ—ଅଳ୍ପକରେ, ଟିକକରେ ।

୪୪ । ପାଞ୍ଚଶର—କନ୍ଦର୍ପ (କନ୍ଦର୍ପର ୫ଗୋଟି ଶର ଅରବିନ୍ଦ, ଅଶୋକ, ଚୂତ, ନବମାଳିକା, ନୀଳୋତ୍ପଳ) ପାଞ୍ଚ ପ୍ରକାର କନ୍ଦର୍ପ ମୂର୍ତ୍ତି ହେଲେ କି ? ମୋ ଚିତ୍ତ ପାଞ୍ଚ ପ୍ରକାର କଷ୍ଟ ଦେଉଛନ୍ତି—ପୋଡ଼ୁଛନ୍ତି । 'ସମ୍ମୋହନ, ଉନ୍ମାଦନ ଇତ୍ୟାଦି' ପଞ୍ଚମ ମୋହନେ—ନୀଳୋତ୍ପଳ ମୋହନେ । ନୀଳୋତ୍ପଳ ବର୍ଣ୍ଣ କୃଷ୍ଣ ମୋହନେ

Digitized by srujanika@gmail.com

ପାଟଞ୍ଚ ଏକ ତନୁ ଧର ଜନ୍ମିବେ । ଜନ୍ମାନ୍ତେ ସେ ମୋତେ ଦାସୀ କରିବେ ।
ଅଣ ନାଶେ ଶଣ ପାଇଛି ଶଶୀ । କାଳନ୍ଦୀରେ ଝାସ ଦେବ ମନାସି ।
ଯେ ହେବାର ହେଉ ହେ । ଏ ଜନ୍ମ ପରବ୍ରତାପଣ ଥାଉ । ୪୫ ।
ଏତେ ମତରେ ଏନ୍ତ ନିଷ୍ଠା ଯାର । କେହୁ କହନ୍ତୁ ପରପ୍ରୀତି କର ।
ଅମ୍ଭେ ପରଗୃହୀ ସର୍ବ ଦିନା । ବନ୍ଧୁକ ବାଧୁଛି ତୁମ୍ଭ ବେଦନା ।
କହୁଛୁ ଜାଣୁଥ ହେ। ଅନୁସରବନ୍ତ ନହେଲେ ଅଟର । ୪୬ ।
ମିଳ ପୂଜା କର ଯିବେ କଣୋଶ୍ୱ । ଭାମ୍ୟବନରେ ଥିବ ଅନୁସର ।
ନେତ୍ର ସଫଳ ହେଲେହେଁ ତ ହେବ । ଚକୋର ଚନ୍ଦ୍ର ଦେଖିବା ଉତ୍ସବ ।
ରାଧାମୁଖଇନ୍ଦୁ ହେ । ଦେଖି ଉଛୁଳିବ ଆନନ୍ଦସିନ୍ଧୁ । ୪୭ ।

---

ପଞ୍ଚତ୍ୱ ହେବ—ମରଣ ହେବ । ଏ ବଧିରେ—ଏହି ବିଧାନରେ, ପାଞ୍ଚ—ପାଞ୍ଚମାନଙ୍କୁ, ବଢ଼ାଇ ଦେଲେ—ବୃଦ୍ଧି କଲେ । ଏ କି ପରପଞ୍ଚ—ଏ କି ବ୍ୟବହାର, ପାଥୁ—ବଗୃହ, ମୋ ପଞ୍ଚପ୍ରାଣ—ଜୀବନ ଅଣା. ମୃତ୍ୟୁ—ଲୁଚ ।

୪୫ । ରାଧା ପାଞ୍ଚେ—ମନରେ ଭାବେ । କାଳନ୍ଦୀରେ—ଯମୁନାରେ; ମନାସି—କାମନା କରି, ଝାସ ଦେବ—ଦେହ ତ୍ୟାଗିବ । ଏକ ତନୁ—ଏକ ଦେହ ଧରି, ଜନ୍ମିବେ—ଜାତ ହେବେ (ବୋଲି ପାଞ୍ଚେ) ସେ କୃଷ୍ଣ ଜନ୍ମାନ୍ତେ—ଅନ୍ୟ ଜନ୍ମରେ ମୋତେ ଦାସୀ କରିବେ । ଶଣ—ଠେକୁଆ ଚନ୍ଦ୍ରକୁ ଅଣ କରି, ନାଶେ—ମରି, ଶଶୀକୁ—ଚନ୍ଦ୍ରକୁ ପାଇଛି—କଳଙ୍କ ହୋଇ ଚନ୍ଦ୍ରରେ ରହିଛି, ସେହିପରି ହେବ—ଯେ ହେବାର ହେଉ ଏ ଜନ୍ମରେ ପରବ୍ରତାପଣ ସତୀତ୍ୱ—ଥାଉ ବା ଯାଉ—ଯାହା ହବ ହେଉ—ଏ ଜନ୍ମରେ ସତୀତ୍ୱ ମୋର ନୋହୁ ପଛେ ମୁଁ ନିଶ୍ଚୟ ଏ କଥା କରିବ ।

୪୬ । ଯାର—ଯେଉଁ ରାଧାର, ଏତେ ମତରେ—ଏ ଭଳି ପ୍ରକାରରେ, ଏତେ ନିଷ୍ଠା—ଏତେ ନିୟମ, ଅଟଳ ନିଶ୍ଚୟ । କେହୁ—କପଟ. ପର ପ୍ରୀତିକର—ପର ପୁରୁଷଠାରେ ବା ଉତ୍କଣ୍ଠ ପ୍ରୀତିକର—କହିବ ପରଗୃହୀ—ଦାସୀ । ତୁମ୍ଭ ବେଦନା—ତୁମ୍ଭ ଦୁଃଖ । ବାଧୁଛି—ବାଧା ଦେଉଛି । ଅନୁସରବନ୍ତ—ଧୈର୍ଯ୍ୟବନ୍ତ ଅଚରଣ କର ।

୪୭ । ମିଳ—ସୂର୍ଯ୍ୟ । କଣୋଶ୍ୱ—ରାଧା । ଅନୁସର—ଜଗି । ଯୋଗ ଥିଲେ ଚକ୍ଷୁ କୃତକୃତ୍ୟ ହେବ । ଚକୋର ଚନ୍ଦ୍ରକୁ ଦେଖିବା ଉତ୍ସବ—ହର୍ଷ, ଆନନ୍ଦ ପରି, ରାଧାମୁଖଇନ୍ଦୁ—ରାଧାଙ୍କ ମୁଖଚନ୍ଦ୍ରକୁ ଦେଖି ତୁମ୍ଭର ଆନନ୍ଦରୂପ ସମୁଦ୍ର ଉଛୁଳିବ—ବଢ଼ିବ ।

Digitized by srujanika@gmail.com

କଳ୍ପଲତା ବୃଷଭାନୁ ଦୁଲଣୀ । ତୁମ୍ଭେ ସହଜେ ପୁଣି ଚନ୍ତ୍ରାମଣି ।
ଦେଖିଲେ ଇଚ୍ଛା ପୂରବ ନାହିଁକ । ବିଧିନାଧାନ କେତେବେଳରେ କା ।
ସେ ହେବ ଜାଣି ଧ । ଆମ୍ଭର ଅମୃତ ନାହିଁ ତେଣିକା । ୪୮ ।
ଶ୍ରୀକୃଷ୍ଣଗ୍ରାହ୍ୟ ନାଗରମଣିକ । କାମଧିକ ଲେଖିବାର ଏଣିକ ।
ହେବ ତ ନାହିଁ ଦାସୀ ଦୋଷ ଯେନା । ଅବସ୍ତ ହେଲ୍ଣ ଏହ୍ୟେଘେନ ସିନା ।
ତେତେ ପ୍ରୀତିଯେନା ହେ । କେବଳ ଅମ୍ଭ ଅଜ୍ଞା ପରାଧୀନା । ୪୯ ।
ବାତରୋଗୀ ପର ଉନ୍ମାଦ ଅଛ କ ଗ୍ଲାନି ଗଲ କା ପୁଣି ଭାଳନ୍ତୁ ।
ଶତେବେଳ ପଢ଼ି ଥଣା ନ ପୂରେ । ସନ୍ନିପାତି ଜଳସ୍ନେହ୍ୟ ବଧିରେ ।
ପିଉକା ପରାଏ ହେ । ମନ ଚଞ୍ଚଳତା ଭାବକୁ ପାଏ । ୫୦ ।

---

୪୮ । ବୃଷଭାନୁ ଦୁଲଣୀ—ବୃଷଭାନୁ କନ୍ୟା ରାଧା । କଳ୍ପଲତା—ଇଚ୍ଛାପୂରଣକାରଣୀ ଲତା । ସହଜେ—ସ୍ୱଭାବତଃ, ତୁମ୍ଭେ ଚନ୍ତ୍ରାମଣି—ଅଭୀଷ୍ଟ ପଦପୂରଣକାରୀ ମଣି । ଦେଖିଲେ—ଦୁହେଁ ଦୁହିଁକ ଦେଖିଲେ । ଇଚ୍ଛା—ମନୋରଥ, ପୂରବ ନାହିଁକ—ନିଶ୍ଚେ ପୂର୍ଣ୍ଣ ହେବ । କଳ୍ପଲତା ଓ ଚନ୍ତ୍ରାମଣି ଉଭୟେ ମନୋରଥ ପୂରଣ କରନ୍ତି—ତେଣୁ ଉଭୟେ ଉଭୟଙ୍କ ମନୋରଥ ପୂରଣ କରିବ । ବିଧିବିଧାନ—ବିଧାତା କରିବା କଥା କେତେବେଳରେ କପର ତା ଜାଣିହେବ କ—ତାହା ଜାଣି ହେବ କ ? ତେଣିକ—ଦେଖାଦେଖି ହେଲା ଉତ୍ତାରୁ, ଆମ୍ଭର ଅସ୍ତ୍ର ନାହିଁ—ଆମର ବଳ ନାହିଁ ।

୪୯ । ଶ୍ରୀକୃଷ୍ଣ ଗ୍ରାହ୍ୟ ନାଗରଶ୍ରେଷ୍ଠଙ୍କୁ ଏଣିକ ଲେଖିବାର କମଧିକ—ଏହାଠାରୁ ବଳ ଲେଖିବାର ଅଧିକ କଣ ? ଦାସୀ ରାଧାର ଦୋଷ ଯେନା ହେବ ନାହିଁ ; ଏହ୍ୟେ ଯେନ—ଏହା ହେଉ । ଅବସ୍ତ ହେଲ୍ଣ – ରସ୍ୱଣନ୍ୟ ହେଲ୍ଣ । ହେ ବତେ ପ୍ରୀତି ଯେନା—ହେ ପ୍ରତେ ପ୍ରୀତି ଗ୍ରହଣକାରନ୍ତ । ଆମ୍ଭେ ଆପଣଙ୍କର କେବଳ ଆଜ୍ଞାଧୀନା ।

୫୦ । ବାତରୋଗୀପର—ବାତୁଆପର ବା ବାତୁଳପର । ଅଛ ଉନ୍ମାଦ—ଉତ୍ତର ବହନ । କୃଷ୍ଣ ଭାବନ୍ତ କଣ ଗ୍ଲାନି ଗଲ କ ? ଶତେଥର ପଢ଼ି ମନୋରଥ ପୂର୍ଣ୍ଣ ହେଉନାହିଁ ; ସନ୍ନିପାତ—ସନ୍ନିପାତ ମଳୁପରେ । ଜଳ ସ୍ନେହ୍ୟ ବଧିରେ—ପୁଣି ପୁଣି ପାଣି ପିଇଲେ ଯେପରି ତା ମନ ସନ୍ତୁଷ୍ଟ ହୁଏ ନାହିଁ ସେହିପରି ପୁନଃ ପୁନଃ ପଢ଼ିବାକୁ ଲାଗିଲେ । ପିଉକା ପରାଏ – ଚିନ୍ତାଯୁକ୍ତ ଲୋକପରି ମନ ଅତି ଚଞ୍ଚଳ ହୁଅଇ ।

Digitized by srujanika@gmail.com

ଛନଛନ ମନ ନୁହଇ ସ୍ଥିର । ତୃଷ୍ଣାକ ଉଣ୍ଠି ଦହନ୍ତ କଶୋର ।
ସତେ କି ତପନ ପୃଷ୍ଠରେ ଧନୀ । ଛନ୍ଦିଲା କାମ କାମ୍ୟବନଧାନୀ ।
ଜୀବେ ନାହିଁ ଆଶା ହେ । ଜଣାଅ ଯାଇ ଜାଣୁ ରସାଳସା । ୫୧ ।
କାମନାପୂର୍ଣ୍ଣ ଭାବନାରେ ମନ । ପୁନ ପୁନ ପଡ଼ି ଚରଣେ ଭାବନ୍ତ ।
ପଦ ପଦକ ପଦ୍ମ ହୃଦେ ଯେନ । ପୁଲକ ସ୍ଫୁରିତ ସୀତ୍କାର ସ୍ଥାନୀ ।
ନବଘନତନୁ ହେ । ଭାବନା କଲେ ଦୀନ ଅଭିମନ୍ୟୁ । ୫୨ ।

ପୋଥିମାନଙ୍କରେ ୫୧—୫୨ ପଦଦ୍ୱୟ ନାହିଁ । ଚ, ଛ ଉଭୟ ପୋଥିରେ ଗୋଟିଏ ଗୋଟିଏ ପଦ ଅଛି, ତାହା ଉପରୋକ୍ତ ପଦଦ୍ୱୟରୁ ପୃଥକ ।

ଚ—ଉତ୍କଣ୍ଠା ଶେଷ ହେଲା ଏ ବଧ୍ୱରେ । ଧୀରେ ଶୁଣ କୃଷ୍ଣ ପଢ଼ି ସଧୀରେ,
ଧୀରେ ଧରଯ୍ୟ ରଖି ନ ପାରିଲେ । ବାତୁଳ ପରାଏ ଅତୁଳ ହେଲେ
ସାମନ୍ତ ସିଂହାର । ଗୀତେ ବଦେଣ ଉତ୍କଳ କୁମାର ॥

ଛ—ଏବାଳ ପ୍ରେମରଙ୍ଗୀ ଶ୍ରୀକର । ଅଭିମନ୍ୟୁ ଜୀବ ଯାଉ ବାହାର ।
ଏ ସ୍ୱର୍ଗ ନିମାର ସତେ ଉପୁଜିବ । ବୃନ୍ଦାବନେ କୃଷ୍ଣସ୍ୱରେ ନାଚିବ ।
ଶ୍ରୀଗୁରୁ କୃପାକୁ । କର ଧ୍ୟାନରେ ଏ ପାଦାମ୍ବୁଜ ॥

---

---

୫୧ । ଛନଛନ—ଅସ୍ଥିର, ଆକୁଳ । କଶୋର—ଯୁବାକୃଷ୍ଣ । ତପନ—ସୂର୍ଯ୍ୟ । ଧନୀ—ଧନ୍ୟା, ରାଧା; କାମ—କନ୍ଦର୍ପ । କାମ୍ୟ ବନଧାନୀ—କାମ୍ୟ ବନରେ ମୋ ମନକୁ ନେଇ ରଖିଲାଣି । ରସାଳସା—ରସିକା ରାଧା ଜାଣୁ ।

୫୨ । ମନ—କୃଷ୍ଣଙ୍କ ମନ, କାମନା—ମନୋରଥ ପୂର୍ଣ୍ଣ ହେବାରେ; ଭାବନାରେ—ଚିନ୍ତାରେ, ରସିଲା । ପଦକୁ—ରାଧାଙ୍କ ପଦର ପଦ ଚରଣକୁ; ପଦକପଦ୍ମ - ହୃଦପଦ୍ମକୁପରି । ହୃଦେ—ମନରେ; ଯେନ— ଯେନକ୍ତ, ଗ୍ରହଣ କରନ୍ତି । ପୁଲକ ସ୍ଫୁରିତ ସୀତ୍କାରସ୍ଥାନୀ—ସାତ୍ତ୍ୱିକ ରୋମାଞ୍ଚ ସ୍ତମ୍ଭ, ଛିଃ ଛିଃ ଶବ୍ଦର ସ୍ଥାନ ବା ସ୍ଥଳ ଅଟେ । ନବଘନ ତନୁ—ନୂତନ ମେଘ ସଦୃଶ ଶରୀରକୁ ଦୀନ—ଦୁଃଖୀ ଅଭିମନ୍ୟୁ, ଭାବନା—ଧ୍ୟାନ କଲେ ।

---

Digitized by srujanika@gmail.com

# ଛପନ ଛାନ୍ଦ

## ଶ୍ରୀକୃଷ୍ଣ ସଙ୍କେତ ଆଗମନ

ଜ ଏକବର୍ଣ୍ଣାନୁପ୍ରାସ

( ରାଗ—କଳହଂସ କାମୋଦୀ )

ଜଗତବନ୍ଦନ ଶ୍ରୀନନ୍ଦନନ୍ଦନ ଚରିତ ଶୁଣ ସୁଜନେ ।
ଯୁବତୀରତନ ପୀରତି ନୂତନ ନୋହିବାରୁ ଦୁଃଖମନେ ।
ଯଦୁପତି ଭାବନ୍ତି । ଯା ଯା ଜୀବ ସେଣି ବଢ଼ି ପ୍ରୀତି ।
ଯଶ ଜଗତେ ହୋଇବ ଖ୍ୟାତି । ଜନ୍ମାନ୍ତରେ ନୋହିବ ଦୁର୍ଗତି ।୧।
ଜଳଜନୟନ ବାରି ଘନଘନ ବହି ମହୀ ସଜଳତା ।
ଜଳଜଆନନ ବିଭ୍ରମଜନକ ଊର୍ଦ୍ଧ୍ୱରେ ଦେଖି ସବିତା ।
ଜାଣିପାରିଲେ ନାହିଁ । ଯାମିନୀ କି ଅବା ଦିନ ଏହି ।
ଜାତ ନେତ୍ରୋତ୍ପଳ ଭ୍ରମ ତହିଁ । ଜ୍ୟୋତିଜ୍ୱାଳାରେ ବିବେକ ନାହିଁ । ୨ ।

---

୧ । ହେ ସୁଜନେ—ସାଧୁଲୋକମାନେ। ଜଗତବନ୍ଦନ—ଚତୁର୍ଦ୍ଦଶ ଭୁବନ ପୂଜ୍ୟ—ଶ୍ରୀ ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କ ଚରିତ—ଲୀଳା । ଯୁବତିରତନ—ତରୁଣୀଶ୍ରେଷ୍ଠ ରାଧାଙ୍କର ନୂତନ—ନୂଆ ପ୍ରୀତି ନୋହିବାରୁ, ଦୁଃଖ ମନେ—ଦୁଃଖିତ ହୋଇ, ଯଦୁପତି—କୃଷ୍ଣ ଭାବନ୍ତି । ବଢ଼ି ପ୍ରୀତି—ରାଧାଙ୍କ ପ୍ରୀତି । ଯା ଯା—ଯାହାର ଯା । ଜଗତେ—ସଂସାରରେ; ଯଶ—କୀର୍ତ୍ତି, ଖ୍ୟାତିହେବ—ପ୍ରଚାର ହେବ "ରାଧାଙ୍କ ପ୍ରୀତିରେ କୃଷ୍ଣ ପ୍ରାଣ ଛାଡ଼ିଲେ" । ଜନ୍ମାନ୍ତରେ—ଅନ୍ୟଜନ୍ମରେ । ଦୁର୍ଗତି—ଦୁଃଖ ।

୨ । ଜଳଜ ନୟନ ବାରି—ପଦ୍ମ ସଦୃଶ ଅକ୍ଷିରୁ ପାଣି ଅର୍ଥାତ୍ ଲୁହ; ଘନ ଘନ—ଅବିଚ୍ଛିନ୍ନ, ସ୍ୱବରେ—ପୁଣି ପୁଣି ବହି, ମହୀ—ପୃଥ୍ୱୀ, ଭୂତଳ, ସଜଳତା—ଓଦା, ପଙ୍କିଳା ହୋଇଗଲା । ଜଳଜ ଆନନ—ପଦ୍ମମୁଖ, ଶ୍ରୀକୃଷ୍ଣ । ବିଭ୍ରମ ଜନକ—ଚନ୍ଦ୍ର ବୋଲି ଭ୍ରମକାରକ—ଭ୍ରାନ୍ତି ଜାତହେଲା । ସବିତା—ସୂର୍ଯ୍ୟଙ୍କୁ । ଏ ଦିନ କି ରାତି ଏହା ଜାଣି ପାରିଲେ ନାହିଁ । ନେତ୍ରୋତ୍ପଳ ଭ୍ରମ—ଅକ୍ଷିରୂପ ନୀଳ ଉତ୍ପଳର ଭ୍ରମ ତହିଁରେ ଜନ୍ମିଲା । ଜ୍ୟୋତିଜ୍ୱାଳାରେ—ତେଜହେତୁକ ତାହାରେ କା କିରଣ ତେଜରେ, ବିବେକ ବିବେଚନା—ଜ୍ଞାନ ନାହିଁ । ଶ୍ରୀକୃଷ୍ଣ ଆକାଶରେ ସୂର୍ଯ୍ୟଙ୍କୁ ଦେଖି ମନରେ ଚନ୍ଦ୍ର ବୋଲି ଭ୍ରାନ୍ତି ଜାତହେଲା; ଦିନ କି ରାତି ବୋଲି ଜାଣିପାରିଲେ ନାହିଁ । ନିଜ ଚକ୍ଷୁରୂପ ନୀଳୋତ୍ପଳର ଭ୍ରାନ୍ତି ତହିଁରେ ଜନ୍ମିଲା, ସୂର୍ଯ୍ୟଙ୍କ କିରଣ ତେଜରେ ଜ୍ଞାନ ରହିଲା ନାହିଁ । ନୀଳୋତ୍ପଳ ଦିନରେ ମୁଦ୍ରିତ ଏବଂ ପଦ୍ମ ରାତ୍ରରେ ମୁଦ୍ରିତ ଓ ଦିନରେ ପ୍ରକାଶ ।

Digitized by srujanika@gmail.com

ଯାବତ ସୁମନବନ୍ତ ତରୁଲତା ଫୁଲଶର ଭ୍ରମ ହେଲ ।
ଜଗତ୍ ଜିତବାନା ପଲ୍ଲବ ଶୋଭନା ବିପିନ ବିମାନ କଲ ।
ଯୁବା ଯୁବତୀ ମାନୀ । ଜୟଦୀକ୍ଷା ଅପିଅଛୁ ଘେନି ।
ଯୁଦ୍ଧେ ଧୃତି ଦୁର୍ଗ ହେବ ମ୍ଳାନ । ପଶ ଉଦ୍ରିମ କୋକିଳଧ୍ୱନି । ୩ ।
ଜଳ୍ପିଲେ ହେ ମିତ କରିବି କେମନ୍ତ ବନ୍ଧୁ ସାହା ମୋର ନାହିଁ ।
ଯିବି ମୁଁ କେଣିକି କି ଗତି ଏଣିକି କହ କହ ଦୟା ବହି ।
ଯୁଝି ଅସୁଛି ମାର । ଯମଦାଢ଼ ଏ କେତକୀ ତାର ।
ଜଳଜାତ ନଅଳି ତଗର । ବାଣ ଘୁମୁରଙ୍ଘୁଅ ଭ୍ରମର । ୪ ।
ଯୋଗେ ତ ବସନ୍ତ ମିତ ସଙ୍ଗେ ସ୍ଥିତ ସୈନ୍ୟ ନାନା ଉଦ୍ଦୀପନ ।
ଜନ୍ତୁ ଜୀବ ହାନି ପାଇଁକି ସେନାନୀ ଦଶଦଶ ମନେ ସେନ ।
ଜଗିଅଛନ୍ତି ଦଣ୍ଡେ । ଯେତେ ଷାଡ଼ୁଦ୍ଦ୍ୟୁଳରଥୀ ସେ ।
ଯୂଥପତି ଗତି ଭାବ କି ସେ । ଯିବ କେଣିକି ବସନ୍ତ ଦ୍ୱେଷେ । ୫ ।

---

୩ । ଯାବତ—ସମସ୍ତ । ସୁମନବନ୍ତ ତରୁଲତା—ଫୁଲ ସହିତ ତରୁଲତା—ଫୁଲ ସହିତ ତରୁଲତା ଯରୁ କୃଷ୍ଣଙ୍କୁ ଫୁଲଶର —କନ୍ଦର୍ପ ଭ୍ରମ ହେଲା । ଫୁଟି-ଥିବାରୁ ତରୁଲତାକୁ କନ୍ଦର୍ପ ଜ୍ଞାନ କଲେ । ଜଗଜ୍ଜିତ ବାନା—ଜଗତଜୟସୂଚକ ପତାକା; ପଲ୍ଲବ—ନୂତନ କଅଁଳପତ୍ରରେ, ଶୋଭନା ହେଲା । ବିପିନ—ବନଟି, ବିମାନ—ରଥ ଜ୍ଞାନ ହେଲା । ଯୁବାଯୁବତୀ ମାନୀ—ଯୁବକ ଯୁବତୀ ମାନଙ୍କୁ, ଉଦ୍ଦୀ ହେବାରୁ । ଜୟ ଦୀକ୍ଷା ଅପିଅଛୁ ଘେନି—ଜୟରୂପ ଦୀକ୍ଷା ଦେବ, ଜୟ କରିବାକୁ ଉପଦେଶ ଦେବ । ଯୁଦ୍ଧେ—କନ୍ଦର୍ପ ଯୁଦ୍ଧରେ, ଧୃତି ଦୁର୍ଗ—ଧୈର୍ଯ୍ୟରୂପ ଗଡ଼, ମ୍ଳାନହେବ—ଭାଙ୍ଗିଯିବ । ପଶ ବାଣସ୍ୱରେ—ପଞ୍ଚ ବାଣ୍ଡାର କରିବାରେ । କୋକିଳଧ୍ୱନି—କୋକିଳର ପଞ୍ଚମ ସ୍ୱର, ଉଦ୍ରିମ ଘୋଷ ହୋଇଛୁ ।

୪ । ଜଳ୍ପିଲେ—କହିଲେ, ହେ ମିତ—ମଧୁମଙ୍ଗଳ, ମୋର ବନ୍ଧୁ—ସଖା, ସାହା—ସାହାଯ୍ୟ ନାହିଁ । କେମନ୍ତ କରିବ—କି ଉପାୟ କରିବ । ମୁଁ କେଣିକି ଯିବ—କେଉଁଆଡ଼େ ଯିବ, ଏଣିକି କି ଉପାୟ । ଯୁଝି ଅସୁଛି—ଯୁଦ୍ଧକରିବାକୁ ଅସୁଅଛି । ତାର—କନ୍ଦର୍ପର । ଯମଦାଢ଼—ଯମଦଂଷ୍ଟ୍ରା ଅସ୍ତ୍ରବିଶେଷ । ଜଳଜାତ—ପଦ୍ମ, ନଅଳି, ତଗର ଏ ପୁଷ୍ପମାନେ ମଧ୍ୟ ଶସ୍ତ୍ରବିଶେଷ । ଭ୍ରମର—ଭଅଁର । ଘୁମୁରଙ୍ଘୁଅ—ସ୍ୱମ୍ଭୁ ଘଣ୍ଟିତ ଶଙ୍ଖ ବାଦ୍ୟକାର ।

୫ । ଯୋଗେ ତ—ତାର ବଳ ଯୋଗରେ । ସଙ୍ଗରେ ମିତ୍ର ବସନ୍ତ ରହିଛି (ବସନ୍ତକାଳ) ନାନା ଉଦ୍ଦୀପନା—ଉଦ୍ଦୀପନ, ବିବିଧ—ଚନ୍ଦ୍ର, ଚନ୍ଦନ, କୋକିଳ, ଭ୍ରମରାଦି ତାର ସୈନ୍ୟ ହୋଇଅଛନ୍ତି । ଜନ୍ତୁ ଜୀବ ହାନି ପାଇଁ କି—ପ୍ରାଣୀ—

Digitized by srujanika@gmail.com

ଜଣାଇଲେ ମିତ ଦକ୍ଷିଣ ମରୁତ ମରୁ ତ ହେଉଛନ୍ତି ବାମ ।
ଯେ ମନ୍ଦ ସେ ଭଲ ହେବ କି ଅସୁରଉଦରୁ ଯିନା ଜନମ ।
ଯେଣୁ ହୋଇଲା ଭୂତ । ଯତ୍ନେ କଲା ସେ ରୀତ ବିଦିତ ।
ଜଡ଼ମତେ ଗଢେ ବଢ଼ଇ ତ । ଜାଣି ଦଣ୍ଡ ଦେଲ ମଘବା ତ ।୬ ।
ଯଶୋଦାନନ୍ଦନ ବଚନ ରଚନ ବାନରୀ-ବଶ ପାସୋର ।
ଯଶ ରୂପ ପରକାଶ ହେବ ଏହା ନ ଯେତେ ମନେ ବିଚାର ।
ଜାଳ ଦେଉଛନ୍ତି ତନୁ । ତେଣୁ ଅନଳ ଉଦାର ହତ ।
ଜ୍ୱଳନର ମିତ୍ର ପୁଣି ସତ । ଯାଉ ଖାଇ ଅହି ପୋଷ ମିତ ।୭ ।

---

ମାନଙ୍କର ପ୍ରାଣ ନେବାପାଇଁ କି । ଦଶଦଶା—ଦୁଃଖ, ମନସଙ୍ଗ, ସଙ୍କଳ୍ପ, ଜାଗର, କୃଶତା, ଅରତି, ହ୍ରୀ, ତ୍ୟାଗ, ଉନ୍ମାଦ, ମୂର୍ଚ୍ଛା, ଏହି ଅନଙ୍ଗ ଦଶଦଶା । ସେନାନୀ—ସେନାପତି, ମନେ ଯେନ—ଚିତ୍ତରେ ଭାବ । ଦଶେ—ଦଶାମାନଙ୍କରେ । ସାତ୍ତ୍ୱିକଭାବ ରଥୀ—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ—ଏହି ଅଷ୍ଟ ସାତ୍ତ୍ୱିକମାନେ ହେଲେ ରଥୀ । ଯୂଥପତି—ଦଳପତି (କନ୍ଦର୍ପ) ଭର୍ତ୍ତୃଭାବ—ପୂର୍ବ ଅନୁରାଗ ବା ଗମନଭାବ । ବସନ୍ତ—ବସନ୍ତକାଳ (ବା ମଧୁମଙ୍ଗଳ) କୈଶିକ ଯିବ, ଯାତେ—କଟେ ।

୭ । ଜଣାଇଲେ—କହିଲେ । ହେ ମିତ—ମଧୁମଙ୍ଗଳ । ଦକ୍ଷିଣ ମରୁତ—ଦକ୍ଷିଣବାୟୁ । ବାମ ହେଉଛନ୍ତି—ପ୍ରତିକୂଳ ବା ବକ୍ର ହେଉଛନ୍ତି; ସେ ମରୁ । ଅସୁର ଉଦରୁ ଯିନା ଜନମ – ସେ ଦୈତ୍ୟଙ୍କ ଗର୍ଭରୁ ଜାତ, ତେଣୁ ସେ କାହାର ଭଲ ହେବ । ଯେଣୁ—ଯେହେତୁ, ଯେ ଭୂତ—ଅଦ୍ଭୁତ । ଯତ୍ନେ—ଯତନରେ, ଧୂନର ଭାବରେ, ଯେ ରୀତ—ଯେ ଆଚରଣ, ବିଦିତ—ଖ୍ୟାତ କଲା । ଜଡ଼ମତେ—ମୂର୍ଖ ମତରେ, ମୂର୍ଖପଣରେ ବା ନୈୟାୟିକାଦ ମୂର୍ଖଙ୍କ ମତରେ, ଗଢେ—ଯୁଗେ, ବଢ଼ାଇ କରେ । ଜାଣି—ଏହାର ମନ୍ଦଗୁଣ ଜାଣି । ମଘବା—ଇନ୍ଦ୍ର । ଦଣ୍ଡ ଦେଲ—ଅସୁର ଜନ୍ମହେବା ଆଶଙ୍କାରେ ଇନ୍ଦ୍ର ଯୋଗବଳରେ ଦିତିଙ୍କ ଗର୍ଭରେ ପଶି ଜନ୍ମହେବା ପୂର୍ବରୁ ପବନକୁ ବଜ୍ରଦ୍ୱାରା ଅଣଚାଶ ଖଣ୍ଡ କରି ଦେଇଥିଲା ।

୭ । ଯଶୋଦାନନ୍ଦନ ବଚନରଚନ—ଶ୍ରୀକୃଷ୍ଣ କହିଲେ । ବାନରୀ ବଶ—ମର୍କଟୀ ଅଞ୍ଜନାଠାରେ ଆସକ୍ତ ହେବା; ତାକୁ ପାସୋର—ବିସ୍ମରଣ କରି, ତା ଯଶ ପ୍ରକାଶ କରିବ ଏହା ମନରେ ବିଚାରି ଯେତେ ନାହିଁକି—ଠିକ୍ କରୁନାହିଁ । ଅନଳ ଉଦାରହତ—ଅନଳ ଅର୍ଥାତ୍ ଅଗ୍ନି । ଜ୍ୱଳନର ମିତ୍ର—ଅଗ୍ନିର ସଖା । ଅହି—ସର୍ପ; ପୋଷ—ପାଳି, ସେ ପବନକୁ ଖାଇଯାଉ ।

Digitized by srujanika@gmail.com

ଯବନିକା ସ୍ମିତ ରାଧିକାମୂର୍ତ୍ତି ଦଣ୍ଡେଦଣ୍ଡେ ଦିଶେ ଆସି ।
ଜ୍ୟୋତିରିଙ୍ଗଣଗଣ ଗଣି ନିସୃତ ନେବେ କି ଯାଉଛୁ ଦଶି ?
କବେ ଶୁଭ ଏ କାମ । ଯମ ହେବ କିକ ରତିଈଶ ।
ଜରଜର୍ଜ୍ଜରକାର ପ୍ରକାଶ । ଜାଣି ଛାଡ଼ିଲି ଜୀବନ ଆଶ ।୮।
ଯଉବନୀ ବନିତାର ପଦଧୂଳି ବୋଳିଥାଅ ମଉଳିରେ ।
ଜୀବଧବ-ନ ବରକୁ ଯାବ ଯିବ ଯାତନା ନୋହୁ ସେଠାରେ ।
ଜପୁଅଛୁ ତା ନାମ । ଯୁବାଶିରୋମଣି କଳ୍ପଦ୍ରୁମ ।
ଜନ୍ମାନ୍ତରେ ହେବୁ ପୂର୍ଣ୍ଣକାମ । ଯୋଗଭଙ୍ଗି ମୋର ମୋକ୍ଷଧାମ ।୯।
ଯୋଗ ଯାଗ ଯଜ୍ଞ ସୁକୃତ କୃତ ଯେ ଉଦୟ ନୋହିଲା ମୋର ।
ଜନେ ବୋଲନ୍ତି ରାଧା ଦାସ ବିନାଶ ବହନ୍ତା ଏ କର୍ଣ୍ଣି ଶର ।
ଯୁବାବୃନ୍ଦରେ ସାର । ଯଶପତାକା ଉଡ଼ନ୍ତା ମୋର ।
ଯୋଷା ଭାଷନ୍ତେ ପ୍ରୀତିପ୍ରାବର । ଯୁଗାନ୍ତରକୁ ବହନ୍ତା ଗର ।୧୦।

---

୮ । ଯବନିକା—ପରଦା, ଛଳସ୍ଵାରିଣୀ ଅର୍ଥାତ୍ ଲୁଗା ବାଡ଼ ପରଦା ସଦୃଶ ବ୍ୟବହାର ପଟ ଏଥିକା ମୂର୍ତ୍ତି ଦଣ୍ଡେ ଦଣ୍ଡେ—ଅଳ୍ପ ସମୟରେ ଆସି ଦେଖାଯାଏ । ଜ୍ୟୋତିରିଙ୍ଗଣଗଣ—ଜୁଳୁଜୁଳିଆ ପୋକସବୁ, ନିସୃତ—ନିଃସୃତ, ଗଣି—ଗଣନା କରି, ନେବେ ଦଶିଯାଉଛୁ କି । କବେ—କେଉଁ ଦିନରେ କହ; ଏ କାମ—ଏ କଣ । ରତିଈଶ—କନ୍ଦର୍ପ ଯମ ହେବ କିକ ? ଯମ ଜ୍ଵର ନାକାର ବୁଢ଼ା କାଳରେ ଜର୍ଜ୍ଜରକାର ପ୍ରକାଶ ହେଲାପରି; ଜୀବନ ଆଶ—ପ୍ରାଣଆଶା ଜାଣି ଛାଡ଼ିଲିଣି ।

୯ । ଯଉବନୀ ବନିତାର—ତରୁଣୀ ରାଧାର, ମଉଳିରେ—ମୁଣ୍ଡରେ । ଜୀବଧବନବରକୁ—ଯମପୁରକୁ; ଯାତନା—ତୀବ୍ର କନ୍ଦର୍ପ ପୀଡ଼ା । ଯୁବାଶିରୋମଣି କଳ୍ପଦ୍ରୁମ—ଯୁବତୀଶ୍ରେଷ୍ଠା ରାଧା କଳ୍ପଲତା । ଜନ୍ମାନ୍ତରେ—ଅନ୍ୟ ଜନ୍ମରେ । ପୂର୍ଣ୍ଣକାମ—ପୂର୍ଣ୍ଣମନୋରଥ ହେବ । ଯୋଗଭଙ୍ଗୀ—ଯୋଗଭଙ୍ଗକାରିଣୀ ରାଧା ମୋର; ମୋକ୍ଷଧାମ—ମୁକ୍ତିସ୍ଥାନ ଅର୍ଥାତ୍ ପରଜନ୍ମରେ ତା ସଙ୍ଗରେ ମୁଁ ସାଯୁଜ୍ୟ ମୁକ୍ତିରୂପ ଯୋଗ ହେବ ।

୧୦ । ସୁକୃତ—ପୁଣ୍ୟ; କୃତ—କରାଯାଇଥିବା, କରିବାର ମୋର ଉଦୟ ନୋହିଲା—ଫଳ ମିଳୁ ଫଳିଲା ନାହିଁ । ରାଧାଦାସ ବିନାଶ—ରାଧାର ଭୃତ୍ୟ ମରିଗଲା । ଶର—ଶରକାଳ । ଯୁବାବୃନ୍ଦରେ ସାର—ଯୁବକମାନଙ୍କ ମଧ୍ୟରେ ଶ୍ରେଷ୍ଠ; ଯୋଷା—ସ୍ତ୍ରୀମାନେ । ପ୍ରୀତିପ୍ରାବର—ରସିକଶ୍ରେଷ୍ଠ । ଯୁଗାନ୍ତରୁ—ଅନ୍ୟ-ଯୁଗକୁ ।

ଜରଜର ପ୍ରେମେ ଥରଥର ତନୁ ଚରଚର କହୁଁ କହୁଁ ।
କମ୍ପି ହରହର ରସେ ଗରଗର ଧରଧର ମୁହୁର୍ମୁହୁ ।
ଜବେ ପଡ଼ିଲେ ତଳ । କଡ଼ିଗଲ ଅଙ୍ଗେ ଗଡ଼ୁଁ ଧୂଳି ।
ଯଥା ସିତ ପାରାବତ ବେଳି । ଜୀବଯନ୍ତ୍ରା-ମୃଗ ବନ୍ଦୀ ଭଳି । ୧୧ ।
ଜଗତକୃତରେ ବିକୃତ ରବରେ ମିତମାନେ ଦେଲେ ଗାଳି ।
ଯୋଗି ରଖିଥିଲ ଏହାଙ୍କୁ ଏ ଦଶା ଏ କାଳ ଏଥିକି ଭଳି ।
ଯାହା ନାମକୁ ଶୁଣି । ଜୀବେ ବାଇକ ପାଇ ବାରୁଣୀ ।
ଜପି ଧନ ନେବେ ହରଗୁଣୀ । ଯୋଗ ଲଳିବେ କାମତରୁଣୀ । ୧୨ ।
ଯହିଁ ବିଧିର ଅବିଧି ପରସିଦ୍ଧି ଶ୍ମଶାନବାସୀ ଶଙ୍କର ।
ଯୋଗ୍ୟାଯୋଗ୍ୟ ଦେଖି ଭୋଗ କରାଇଲ ବିଷ୍ଣୁଙ୍କୁ ଶଯ୍ୟା ଅହିର ।

---

୧୧ । ପ୍ରେମେ ଜର ଜର—ପ୍ରେମେ ପରିପୂର୍ଣ୍ଣ । ତନୁ ଦେହ ଥରଥର—ଥରଇଲ । କହୁଁ କହୁଁ ଚରଚର—ଅତି ଚଞ୍ଚଳ । ହର ହର—ଶିବ ଶିବ, ରସେ—ଶୃଙ୍ଗାର ରସରେ । ଗରଗର—ଆବିଷ୍ଟ, ମୁହୁର୍ମୁହୁ—ପୁଣି ପୁଣି । ଧର ଧର—ଧରିପକାଅ, ଧରିପକାଅ । ଜବେ—ଶୀଘ୍ର । କଡ଼ିଗଲ—ବୋଳହୋଇଗଲ । ସିତପାରାବତ—ଧଳା ପାରା; ବେଳି—ଖେଳିଲାଭଳି (ଯେପରି ସେ ଭୂମିରେ ଲେଉଟି ଲେଉଟି ଖେଳେ ସେହିପରି ଭୂମିରେ ଗଡ଼ିଲେ) । ଯନ୍ତ୍ରା—ଯନ୍ତ୍ରାରେ, ମୃଗ—ହରିଣ ବନ୍ଦୀହେଲାପରି, ଜୀବ—ପ୍ରାଣ ସେହିଭଳି ହେଲା ।

୧୨ । ମିତମାନେ—ମଧୁମଙ୍ଗଳ, ଦାମ, ସୁଦାମ, ସୁବଳ, ପ୍ରଭୃତି ସଖାମାନେ, ବିକୃତ ରବରେ—କ୍ରୋଧରେ, ଦୁଃଖିତମନରେ; ଜଗତକୃତରେ—ବିଧାତାଙ୍କୁ ଗାଳିଦେଲେ । ଏହାଙ୍କ—କୃଷ୍ଣଙ୍କପରି, ଏ ଦଶା—ଏ ମନ୍ଦ ଅବସ୍ଥା ଯୋଖି ରଖିଥିଲ—ଯୋଡ଼ି ରଖିଥିଲ । ଏ କାଳ—ଏ କୃଷ୍ଣ କଣ, ଏଥିକି ଭଳି—ଏ ଅବସ୍ଥାକୁ ପାଇ । ଯାହା ନାମକୁ ଶୁଣି—ଯାହାଙ୍କ ନାମ ଶୁଣି, ଜୀବେ—ପ୍ରାଣୀମାନେ, ବାରୁଣୀ—ମଦ୍ୟ ପାଇ - ପାନ କରି, ବାଇକ—ବାତୁଳ ହେବା—ଭଳହେବେ ବା ବରୁଣସ୍ତ୍ରୀ (ବା ଲକ୍ଷ୍ମୀ—ବରୁଣଙ୍କ କନ୍ୟା ଏହି ଅର୍ଥରେ) ଜୀବେ——ଜୀବିତାବସ୍ଥାରେ, ବାଇକ—ବାତୁଳକୁ ପାଇବେ -ବାଇଆ ହୋଇଯିବେ । ହରଗୁଣୀ—ପାର୍ବତୀ ଜପକରି ଧନସ କରାଇବେ । କାମତରୁଣୀ—ରତି ଯୋଗ ତପସ୍ୟା ଇଚ୍ଛାକରିବେ, କାରଣ କୃଷ୍ଣ, ବରୁଣ, ଶିବ ଓ କାମଦେବଙ୍କଠାରୁ ସୁନ୍ଦର ହେତୁ କୃଷ୍ଣଙ୍କୁ ପାଇବା ନିମନ୍ତେ ଉପରୋକ୍ତ ଦଶାମାନ ଭଜିବେ ।

୧୩ । ଯେଉଁ ବିଧିର—ବିଧାତାର । ଅବିଧି—ଅନ୍ୟାୟ । ପରସିଦ୍ଧି (ପ୍ରସିଦ୍ଧି)—ଖ୍ୟାତି ଲଭିଛି । ଶଙ୍କର—ଶିବ । ଶ୍ମଶାନବାସୀ—ମଶାଣିରେ ବାସ

ଜାଣିବାର କି ବଡ଼ । ଜଳାଇଲ୍ଲ କାମଦେବ ଦେହ ।
ଜଡ଼ବାତୁକ ଚନ୍ଦ୍ର ବିଗ୍ରହ । ଶକ୍ର ହେଲେ ବହୁନେତ୍ରବହ । ୧୩ ।
ଯେତେ ନିନ୍ଦା କଲେ ତାଙ୍କୁ କି ହୋଇବ ଏମନ୍ତ ସଖୀଏ ଗ୍ଲାନି ।
ଯାଇଁ କୋଳ କରି ତବେ ଅଜପାଇ ଝାଡ଼ିଦେଲେ ତନୁ ଧୂଳି ।
ଜଳ ସିଞ୍ଚି ବାଞ୍ଛିଲେ । ଜଳଜାତ-ପତ୍ରେ ଶଯ୍ୟା କଲେ ।
ଜଗି ନାନା ଉପଚାରୀ ହେଲେ । ଯେ ବାଧକ ତାହା ଲଙ୍ଘିଲେ । ୧୪ ।
ଜମ୍ବାଳ ଲେପନ ଜଡ଼ା ହ୍ରଦ ପତ୍ର ତାପ ଶାନ୍ତ ନ ଭଜିଲ ।
ଯୁଗଳ କି କର ଲଭଗତି ହର କରିବା ବିଗ୍ରହ ହେଲ ।
ଜଣେ ମିତ କହିଲ । ଯିବେ ମର୍ତ୍ତ୍ୟ ପ୍ରାଣ ସେ ବାଳା ।
ଜଗିଥିବା ସେ ପଥକୁ ଭଲ । ଯୋଗେ ଦୈବ ହେଲେ ଲାଭ ହେଲ । ୧୫ ।
ଯୋଗଭଙ୍ଗୀ ନାମ ତ୍ରିଭଙ୍ଗିଙ୍କ କର୍ଣ୍ଣେ ଉଚ୍ଚେ ଉଚ୍ଚାରିଲେ ମିତେ ।
ଯିବା-ଜୀବ ଫେରି ଶରୀରେ ମିଳିଲ ସୁଧା ପିଇଁଲେ ଯେମନ୍ତେ ।

---

କର ରହିଛନ୍ତି । ଯୋଗ୍ୟାଯୋଗ୍ୟ—ଉଚିତ ଅନୁଚିତ ବିଚାର ବିଜ୍ଞାନ ଦେଖ । ସେ ସେ ବିଷ୍ଣୁଙ୍କୁ ଅଦ୍ଭୁତ ଶଯ୍ୟା—ସର୍ପର ଶଯ୍ୟା; ବିଷ୍ଣୁଙ୍କ ଅନନ୍ତ ଶୟନ କେତେ କରାଇଲ । ଜାଣିବାର କି ବଡ଼—ଜ୍ଞାନୀ ବୋଲି କଣ ବଡ଼ । କାମଦେବ ଦେହ—କନ୍ଦର୍ପର ଦେହକୁ ମହାଦେବଙ୍କ ତୃତୀୟ ନେତ୍ରଜାତ ଅଗ୍ନି ଦ୍ୱାରା ପୋଡ଼ାଇ ପକାଇଲ । ଜଡ଼ବାତୁକ (କୈବାତୁକ)—ଚନ୍ଦ୍ର ଯେ ସେ ଚନ୍ଦ୍ରବିଗ୍ରହ—କଳଙ୍କ ଦେହ—(ଦେହରେ ଚିହ୍ନ)—କଳଙ୍କ ଅଛି । ଶକ୍ର—ଇନ୍ଦ୍ର । ବହୁନେତ୍ରବହ—ସହସ୍ରନେତ୍ର ହେଲେ । ଗୌତମଙ୍କ ପତ୍ନୀ ହରଣ କରିବାରୁ ସେ ଶାପ ଦେବାରୁ ଇନ୍ଦ୍ର ସହସ୍ରଯୋନ ହେଲେ ।

୧୪ । ତବେ—ଶୀଘ୍ରରେ । ତନୁଧୂଳି—ଦେହର ଧୂଳି । ଜଳଜପତ୍ରେ—ପଦ୍ମପତ୍ରମାନଙ୍କରେ । ଉପଚାରୀ—ଶୁଶ୍ରୂଷାକାରୀ, ବହୁବିଧ ପ୍ରୟୋଗ କଲେ । ଯେ ବାଧକ—ବାଧାଦାୟକ, ଅପଥ୍ୟ, ତାହା ଲଙ୍ଘିଲେ—ତାହା ଦେଲେ ନାହିଁ ।

୧୫ । ଜମ୍ବାଳ ଲେପନ—ପଙ୍କ ବୋଳା ହୋଇଥିବା ଜଡ଼ା, ହ୍ରଦ ପତ୍ର—ଦାଣ୍ଡିପତ୍ର ପୋଡ଼ା ହେଲାପତ୍ର । ତାପଶାନ୍ତ—ବିରହତାପ ଶାନ୍ତ, ନ ଭଜିଲ—ଭଲ ହେଲ ନାହିଁ । କି କର—କଣ କର । ଲଭଗତି ହର—ଗଜଗମନା ଶ୍ରୀରାଧା ଓ ଶ୍ରୀକୃଷ୍ଣ ଯୁଗଳ—ଦୁହିଙ୍କର ମିଳନ କରିବା ବିଗ୍ରହ ହେଲ । ଯୋଗେ—ଦୈବ-ଯୋଗରେ । ଲାଭ ହେଲ ଫଳ ହେଲ ।

୧୬ । ଯୋଗଭଙ୍ଗୀ ନାମ—ଯୋଗଭଙ୍ଗକାରିଣୀ ଶ୍ରୀରାଧାଙ୍କ ନାମ । ତ୍ରିଭଙ୍ଗୀଙ୍କ - ଶ୍ରୀକୃଷ୍ଣଙ୍କର । ଯିବା-ଜୀବ—ଯାଉଥିବା ପ୍ରାଣ । ସୁଧା—ଅମୃତ ।

Digitized by srujanika@gmail.com

କୃଷ୍ଣ ହେଉଁ ଚେତନା । କମ୍ପନଦାଙ୍ଗୀ ସ୍ତବ ସ୍ତବନା ।
ଯା ଯା ଜୀବ ନଗାଇଲ୍ଲ ଥିନା । ଯୋଗୀମାନେ ଜପିଲେ ରାଧା ନାଁ । ୧୬ ।
ଜଣାଇ ମଣାଇଁ କହିଲେ ମାଧବ ଅସ୍ତ ଦେଖାଇବ ଧନୀ ।
ଯୋଗସିଦ୍ଧ ପୁରୁଷର ପୁରୁଷାର୍ଥ ମିତ୍ରର ଉତ୍ତର ମାନ ।
ଜନମିଲ୍ଲ ହରଷ । ଯଥା ସ୍ତୋକ ଶୁଣେ ଘନଘୋଷ ।
ଯେସନ୍ତେ ଚକ୍ରମୂଦ ନିଶିଶେଷ । ଜୀବଞ୍ଜୀବକୁ ସନ୍ଧ୍ୟା ସଦୃଶ । ୧୭ ।
ଜାତବେଦ ଯାତନାରୁ ପ୍ରାଣ ତ୍ରାଣ ମିତ୍ର କହନ୍ତ ଦର ଭାଷି ।
ଜଳନ୍ତକଟନୁ ତୃଷ୍ଣ ପୂର୍ଣ୍ଣ ଜଗରେ ଯେମନ୍ତ ନୀର ବରଷି ।
ଯେତେବେ ଜନୁଛ ସଜ । କାଦ୍ରୁଗର ଗର ବାରଣି ତ ।
ଯୋଗି ମୃତ୍ୟୁସଞ୍ଜୀବନୀ ବ୍ରତ । ଜଳା-ଭସ୍ମାଙ୍ଗ ନତ ହେବ ଛ । ୧୮ ।

କୃଷ୍ଣ—ଶ୍ରୀକୃଷ୍ଣ । କମ୍ପନଦାଙ୍ଗୀ—ମୂର୍ଚ୍ଛାଗତା ଶ୍ରୀ ରାଧାଙ୍କ ସ୍ତବ-ସ୍ତବନା—ଶଲ୍ୟାକଷ୍ଟ ସେ. ଜୀବ—ପ୍ରାଣ ମା ଯା—ଯମ ପୁରକୁ ମଁ ଯା, ଥିନା—ଏହି କଥାଥିନା, ନଗାଇଲ୍ଲ—ଲାଗାଇଲ୍ଲ । ଯୋଗୀ ପଣ ଜପିଲେ—ରାଧା ରାଧା ସର୍ବଦା ଜପିବାକୁ ଲାଗିଲେ ।

୧୭ । ମାଧବ—ଜଣେ ମିତ୍ର, ଜଣାଇ ମଣାଇ—ବୁଝାଇ ଶୁଝାଇ କହିଲେ; ଅସ୍ତ ଧନୀ—ରାଧା ବା ଧନୀ କହିଲେ ଏହ ମାଧବ—କୃଷ୍ଣ; ଅସ୍ତ ଧନୀ ରାଧାକୁ ଦେଖାଇବ । ଯୋଗସିଦ୍ଧ ପୁରୁଷର—ସିଦ୍ଧ ଯୋଗୀଙ୍କର; ପୁରୁଷାର୍ଥ—ମୋକ୍ଷ ବା ମହାପୁରୁଷ (ଭଗବାନଙ୍କ) ଦର୍ଶନ ପରି, ମିତ୍ରର—ମଧୁମଙ୍ଗଳର ଉତ୍ତର ବଚନ, ମାନ—ସ୍ୱୀକାର କରି, ହରଷ ଜନମିଲ୍ଲ—ଆନନ୍ଦ ଜାତ ହେଲା । ସ୍ତୋକ—ଚାତକ । ଘନଘୋଷ—ମେଘଶବ୍ଦ । ଚକ୍ରମୂଦ—ଚକ୍ରବାକର ଆନନ୍ଦ । ନିଶିଶେଷ—ପ୍ରଭାତ । । ଜୀବଞ୍ଜୀବ—ଚକୋରକୁ ସନ୍ଧ୍ୟା ସଦୃଶ—ସନ୍ଧ୍ୟା ହେଲେ ଚନ୍ଦ୍ର ଉଦିତ ହୁଅନ୍ତି (ତାକୁ ସନ୍ଧ୍ୟା ଭଳି ସେହିପରି ମିତ୍ର ବଚନ କୃଷ୍ଣଙ୍କୁ ଆନନ୍ଦ ଦେଲା ) ।

୧୮ । ଜାତବେଦ ଯାତନାରୁ—ଅଗ୍ନି ସନ୍ତାପରୁ ଅର୍ଥାତ୍ କନ୍ଦର୍ପଜନିତ ବାଧାରୁ । ପ୍ରାଣତ୍ରାଣ—ଜୀବନରକ୍ଷା । ଯେମନ୍ତ—ଯେପରି । ନୀର ବରଷି—ଜଳ ବର୍ଷିଲେ, ଜଳନ୍ତକ ତନୁ ତୃଷ୍ଣ—ପୋଡ଼ା ଦେହ ତୃଷ୍ଣାକୁ ପୂର୍ଣ୍ଣ କରିଦିଏ (ଫୁଲାଇ-ଦିଏ) ବା ଜଳନ୍ତକ ତନୁ—ଜଳ ନ ଥିବା ସ୍ଥାନକୁ ତୃଷ୍ଣା—ଶୀଘ୍ର ଜଳ ବର୍ଷି ପୂର୍ଣ୍ଣ କରିଦିଏ । (ବାଧା ନିବର୍ତ୍ତାଇ ଦିଏ) । କାଦ୍ରୁଗର—ସର୍ପର । ଗର—ବିଷ । ବାରଣି ତ—ବାରଣ କଲାପରି । ମୃତ୍ୟୁସଞ୍ଜୀବନୀ ବ୍ରତ—ମୃତ୍ୟୁସଞ୍ଜୀବନୀ ମନ୍ତ୍ର ପରି ଯୋଷି ଜଳ । ଭସ୍ମାଙ୍ଗବତ—ଦଗ୍ଧପୋଡ଼ା କାଠ ଲଭିଲା ପରି ହେବ ତ । କନ୍ଦର୍ପ ତାପରେ ପୋଡ଼ିବା ଅଙ୍ଗ ଲଭିଲା ପରି ହେବ ତ ।

Digitized by srujanika@gmail.com

ଜମ୍ବୁବେଦୀପିଣ୍ଡି ନେବ ପରସିଛି ରସଣଧି ଭେଟ ହେଲେ ।
ଜଗି ଗତାଗତ-ପଥ କେବା ସାର୍ଥ ଯିବା ଗୃହ ମିତ ବୋଲେ ।
ଜୟ ଜୟ ଉଚ୍ଚାର । ଜଗବନ୍ଧୁ ମିତ କର ଧର ।
ଯିବା ଅଣେ ଉଲ୍ଲୁକ ଅଚର । ଯୋଗ ବାୟୁ ଖୋଜି ଗତ କର । ୧୯ ।
ଯାଉଁ ପାଉଁ ମିତ ଉତ୍ତର କରଇ ବଟୁ ତୁଅ ବଟିବାକୁ ।
ଜାଣି ବ୍ରହ୍ମମୂର୍ତ୍ତି ବ୍ରହ୍ମମୂର୍ତ୍ତି ହେବା ସର୍ବ ଭର ମନକୁ ।
ଯାଇଁ ହେଲେ ପ୍ରବେଶ । ଯହିଁ ସୂର୍ଯ୍ୟକୁଣ୍ଡ ପରକାଶ ।
ଯୋଷା ଅଗତ ଜଗି ହରଷ । ଜନ୍ମେ ମୁମୁକ୍ଷୁଜନର ଆଶ । ୨୦ ।
ଯାମଳାଭଞ୍ଜନ ଯୁବତୀରଞ୍ଜନ ମଦନଗଞ୍ଜନ ଭାବ ।
ଜନମଧ୍ୟେ ହୀନ ଦୀନ ଅଭିମନ୍ୟୁ ଜଗତେ ବୋଲାଏ ଜୀବ ।
ଜୀବ ଯିବ କି ସତେ । ଜପୁଁ ଜପୁଁ ନାମ ହୃଦଗତେ ।
ଯେତେବେଳେ ଥିବ ପ୍ରେମଯୁତେ । ଯୁଗ୍ମଧ୍ୟାନେ ଥିବି ଦୃଢ଼ଚିତ୍ତେ । ୨୧ ।

---

୧୯ । ଜମ୍ବୁବେଦୀ ପିଣ୍ଡି—ଉଦ୍ୟାନ । ରସନିଧି—ରସିକା ଶ୍ରୀରାଧା । ଗତାଗତ ପଥ—ଯିବାଆସିବା ବାଟ । ସାର୍ଥ—ସଫଳ । ଜଗବନ୍ଧୁ—ଶ୍ରୀକୃଷ୍ଣ । ମିତ କର—ମଧୁମଙ୍ଗଳ ହାତ । ଉଲ୍ଲୁକ—ଉତ୍କଣ୍ଠା । ଅଚର—ଦେଖାଇ, ପ୍ରଦର୍ଶନ କରି । ଯୋଗ ବାୟୁ—ଅନୁକୂଳ ପବନ, ମଙ୍ଗଳ ପବନ ବା ଯେଉଁ ନାସାପୁଟରେ ବାୟୁ ବହୁଥିଲେ ଯାତ୍ରାରେ ଶୁଭ ହୁଏ ସେହି ନିଶ୍ୱାସ ବାୟୁ । ଖୋଜି—ବାଛି । ଗତ—ଗମନ ।

୨୦ । ବଟୁ—ବ୍ରାହ୍ମଣ ବାଳକ. ବଟିବାକୁ—ଠକିବାକୁ । ବ୍ରହ୍ମମୂର୍ତ୍ତି—ବ୍ରହ୍ମାତ୍ମକ ଶ୍ରୀକୃଷ୍ଣ । ବ୍ରହ୍ମମୂର୍ତ୍ତି—ବ୍ରାହ୍ମଣ ସ୍ୱରୂପ । ଯୋଷା—ଶ୍ରୀରାଧା । ମୁମୁକ୍ଷୁଜନର—ମୋକ୍ଷାର୍ଥୀର । ମୋକ୍ଷ ଇଚ୍ଛା କରିବା ଲୋକର ଆଶ, ଜନ୍ମେ—ଜାତହୁଏ । (କୃଷ୍ଣଙ୍କ ଆଶା ଜନ୍ମିଲା)

୨୧ । ଯାମଳାଭଞ୍ଜନ—ଯାମଳାର୍ଜ୍ଜୁନ ଭଞ୍ଜନକାରୀ ଶ୍ରୀକୃଷ୍ଣ । ଯୁବତୀରଞ୍ଜନ—ଗୋପାଙ୍ଗନା ମନହରଣକାରୀ ମଦନଗଞ୍ଜନ—ରୂପରେ କାମଦେବଙ୍କୁ ପରାଭବ କରିବା କୃଷ୍ଣ । ହୀନ—ଶ୍ରେଷ୍ଠ, କ୍ଷୁଦ୍ର । ଦୀନ—ଦରିଦ୍ର, ଦୁଃଖୀ; ପ୍ରେମଯୁତେ—ଯୁଗଳ ପ୍ରେମାବେଶ ଦ୍ୱାରା ପରିପ୍ଳୁତ ଭାବରେ । ଯୁଗ୍ମଧ୍ୟାନେ—ଶ୍ରୀରାଧା କୃଷ୍ଣଙ୍କ ଧ୍ୟାନ କରିବାରେ । ଦୃଢ଼ଚିତ୍ତେ—ଗାଢ଼ ମନରେ ।



Digitized by srujanika@gmail.com

# ସତାବନ ଛାନ୍ଦ

## ଶ୍ରୀକୃଷ୍ଣ ସଙ୍କେତସ୍ଥଳରେ ବିଭ୍ରମ ଉକ୍ତି ।

ଝ ଏକବର୍ଣ୍ଣାନୁପ୍ରାସ

**ଝା**ଡ଼ବନୋଦଧି ହର ଯେ । ଝସକେତନକୁ ଡର ।
ଝୀନବସନାକୁ ଦେଖିବ ମୁଁ କବ ଭାଳୁଁ ବୁଦ୍ଧି ଯାଏ ସରି ଯେ । ୧ ।
ଝିଲ୍ଲୀଡାକ କର୍ଣ୍ଣେ ଶୁଣି ଯେ । ଝୁଣ୍ଟିଅ ପଞ୍ଚାଗ୍ନି ମଣି ।
ଝାଙ୍କି ନୟନକୁ ଦେଇ ଅୟନକୁ ଗଣିବନ୍ତ ପୁଣି ପୁଣି ଯେ । ୨ ।
ଝରନ୍ତେ କୁରରପକ୍ଷୀ ଯେ । ଝିଙ୍କା ରଥ ହୁଁ ହୁଁ ଲକ୍ଷି ।
ଝାମ ହେଲ ତନୁ ଅସ୍ତୁକ୍ତ ଅତନୁ ଭ୍ରାନ୍ତ ମିତେ ଠାର ଅକ୍ଷି ଯେ । ୩ ।
ଝଙ୍କାର କରେ ମଧୁପ ଯେ । ଝାଡ଼େ କି-ଫଡ଼ କନ୍ଦର୍ପ ।
ଝଡ଼ନ୍ତେ ସୁମନ ଭେଦନ୍ତି ସୁମନଶର ମାରେ ଫୁଲରୂପ ଯେ । ୪ ।

---

୧ । ଝାଡ଼ବନୋଦଧି—ବନବହ୍ନି ( ବୃନ୍ଦାବନବହ୍ନି ) । ଝସକେତନକୁ—କନ୍ଦର୍ପକୁ । ଝୀନ ବସନାକୁ—ସୂକ୍ଷ୍ମବସ୍ତ୍ର ପିନ୍ଧିଥିବା ଶ୍ରୀରାଧାଙ୍କୁ । ଦେଖିବ ମୁଁ କବ—ସତେ ମୁଁ ଦେଖିବ କି । ଭାଳୁଁ—ଚିନ୍ତା କରୁଁ କରୁଁ । ବୁଦ୍ଧି—ଚେତନା । ସରିଯାଏ—ନଷ୍ଟ ହୋଇଯାଏ ।

୨ । ଝିଲ୍ଲୀଡାକ—ଝିଙ୍କାରି ଧ୍ୱନି । ଝୁଣ୍ଟିଅ—ବାଜେଣି । ଝାଙ୍କି ନୟନକୁ—ଆଖିକୁ ଆଗେଇ ଦେଇ ଅଟକଣ କରି । ଅୟନକୁ—ବାଟକୁ, ରାଧା ଆସିବା ବାଟକୁ । ଗଣିବନ୍ତ—ଗମନକାଳ ପୁଣି ପୁଣି ଠିକ କରନ୍ତି ।

୩ । କୁରର ପକ୍ଷୀ—( ଉତ୍କ୍ରୋଶ କୁରରୌ ସମୌ ) ଉତ୍କ୍ରୋଶୀ—କ୍ରନ୍ଦନଶୀଳ ପକ୍ଷୀ ବିଶେଷ, ମାଛ କାଟପାଗ । ଝରନ୍ତେ—ଦୁଃଖରେ ଚିତ୍କାର କରନ୍ତେ । ଝିଙ୍କରଥ—ଝଣା ହୋଇଥିବା, ଉଡ଼ାହୋଇଲା କନ୍ଦର୍ପ ରଥ । ହୁଁ ହୁଁ ଧ୍ୱନିକି ଲକ୍ଷି—ଲକ୍ଷ୍ୟକରି । ତନୁ—ଦେହ । ଝାମ ହେଲା—ଅବଶ ବା ମୋହ ହେଲା । ଅତନୁ—କନ୍ଦର୍ପ । ଅସ୍ତୁକ୍ତି—ରଥ ଚଢ଼ି ଆସୁଛନ୍ତି, ଭ୍ରାନ୍ତ—ଭ୍ରମ, ମିତେ—ମଧୁମଙ୍ଗଳକୁ । ଠାର—ଠାରଦେଲେ ।

୪ । ମଧୁପ—ଭ୍ରମର, ଝଙ୍କାର ଧ୍ୱନି କରନ୍ତେ । କନ୍ଦର୍ପ—କାମ । ଫଡ଼—ଫଳକ, ଢାଲ । ଝାଡ଼େ—ଝମକାଏ । ସୁମନ—ଫୁଲ । ଝଡ଼ନ୍ତେ—ଖସନ୍ତେ । ଫୁଲରୂପ—କନ୍ଦର୍ପ । ସୁମନଶର—ଫୁଲରୂପ ବାଣ, ମାରେ—ବିନ୍ଧେ, ଏହି କଥା ଭେଦଲ ।

Digitized by srujanika@gmail.com

ଝୋଟକୁ ଅନଳ ପରି ଯେ । ଝାମ ହେବ ଶମ୍ବର ।
ଝିଙ୍କ ଝାଡ଼ହେବ ଲକ୍ଷ ତ ନୋହିବ ଶରେ ହେଲେ ତନୁ ଭରି ଯେ । ୫ ।
ଝାଙ୍କି ବହିବାରୁ ବାତ ଯେ । ଝର ଝର ମଧୁପାତ ।
ଝୋଲ ଅନଳର ବିନ୍ଦୁ ଗରଳର ତୁଲ୍ୟବତ ପରଗୀତ ଯେ । ୬ ।
ଝରଇ ନୟନୁଁ ପାଣି ଯେ । ଝର ବହିବାର ମଣି ।
ଝୋଳମାଳା ଧରି ଜପି ବିମ୍ବାଧରୀ ଯୋଗୀ ହେବି ମିତେ ଭଣି ଯେ । ୭ ।
ଝାଡ଼େ କେକୀଡାକ ଶୁଣି ଯେ । ଝର୍ଝରି ବାଜା ମଣି ।
ଝାସ ଯମୁନାରେ ଦେବି ବନ୍ଧୁ ନାଁରେ ଜନ୍ମାନ୍ତେ ପାଇବି ପୁଣି ଯେ । ୮ ।
ଝୋଳ-ମରି ପରି ହେଲେ ଯେ । ଝଟତ କୃଷ୍ଣ ବୋଇଲେ ।
ଝସବିଲୋଚନା କାଣା-ସେବକ ନା ନ ରଖିବ ଜଗତଲେ ଯେ । ୯ ।
ଝୁଲେ ପକ୍ୱପର୍ଣ୍ଣଡାଳ ଯେ । ଝିଙ୍କାରି କଳରି କଳ ।
ଝୀମାଣିଖେଳରେ ବୟସ୍ୟମେଳରେ ଅବୋଧ କରେ କି ବେଗାଳ ଯେ । ୧୦ ।

---

୫ । ଝୋଟକୁ ନିଆଁ ପରି । ଶମ୍ବର—କନ୍ଦର୍ପ । ଝାମ ହେବ—ନଷ୍ଟ କରିଦେବ, ଦାହ କରିବ (ଧାମ ଶବ୍ଦଜ ?) । ଝିଙ୍କ ପକ୍ଷୀ ଝାଡ଼ ହେଲେ ତା କାଠି ସବୁ ଠିଆ ହୋଇ ଦେହସାକ ବ୍ୟାପିଯାଏ । ଶରେ—ବାଣରେ, ତନୁ—ଦେହ, ଭରି ହେବ—ପୂର୍ଣ୍ଣ କରିଦେବ, ଏତେ ଶର ଦେହରେ ଭରିଗଲେ ଯେ ଝିଙ୍କ ଦେହର କାଠିଠାରୁ ତା ସଙ୍ଗରେ ଫରକ ହେବ ନାହିଁ ।

୬ । ବାତ—ପବନ । ଝାଙ୍କି ବହିବାରୁ—ଜୋରରେ ବହିବାରୁ । ପୁଷ୍ପରୁ ମଧୁ ଝରଝର ହୋଇ ଖସି ପଡ଼ୁଛି । ଅନଳର ଝୋଲ— ଅଗ୍ନିକଣା ଗରଳର ବିନ୍ଦୁ —ବିଷର ବିନ୍ଦୁ ବର୍ଷିଲା ଭଳି; ପରଗୀତ—ବୋଧ ହେଉଛି ।

୭ । ପାଣି—ଲୁହ । ଝୋଲମାଳା ଧରି—ଝୁଲିମୁଣି ଧରି । ବିମ୍ବାଧରୀ—ରାଧାକୁ, ଜପି—ଜପକରି, ଯୋଗୀ ହେବ ଏହି କଥା, ମିତେ—ମଧୁମଙ୍ଗଳକୁ, ଭଣି—କହିଲେ ।

୮ । ଝାଡ଼େ—ବନରେ । କେକୀ ଡାକ—ମୟୂର ଧ୍ୱନି । ଝର୍ଝରି—ଝାଞ୍ଜ ବାଜା । ମଣି—ଜ୍ଞାନ କରି । ବନ୍ଧୁ ନାଁ-ରେ—ରାଧା ନାମରେ ।

୯ । ଝୋଲମରି—ଝୋଲ ମାଇଲା ପରି ହେଲେ । ଝଟତ—ଶୀଘ୍ର । ଝସବିଲୋଚନା—ମତ୍ସ୍ୟନୟନା । କଣା ସେବକ ନା—ନୀଚଦାସ ନାମ, କୃଷ୍ଣନାମ । ଜଗତଲେ—ପୃଥ୍ୱୀରେ । ନ ରଖିବ—ରଖିବ ନାହିଁ ।

୧୦ । ପକ୍ୱପର୍ଣ୍ଣ ଡାଳ ଝୁଲେ—ପାଚିଲା ପତ୍ର ଡାଳ ହଲେ । ଝିଙ୍କାରି କଳକରଇ—ଅବ୍ୟକ୍ତ ମଧୁର ଧ୍ୱନି କରେ । ଝୀମାଣି ଖେଳରେ—ଡୁ ଡୁ ଖେଳରେ,

Digitized by srujanika@gmail.com

ଝାଙ୍କିଖରା ପରଖର ଯେ । ଝୁଣା ବାଣ ମାରେ ମାର ।
ଝାଡ଼ିବ ପାର୍ଥିବ ଗୁଣ ଯେତେ ଥିବ ଦେହଭୂତ ଅଧ୍ୟାହାର ଯେ । ୧୧ ।
ଝଗଡ଼ା କର ଅତନୁ ଯେ । ଝିଙ୍କୁଛୁ କୁସୁମଧନୁ ।
ଝୁଣ୍ଟିଲେ ଦୁର୍ବାକୁ ପଡ଼ିବି ନେବାକୁ ଜୀବନ କରନ୍ତି ମନ୍ୟୁ । ୧୨ ।
ଝିମିଝିମି କଳେବର ଯେ । ଝାଳ ବହେ ଝରଝର ।
ଝକମକାନଳ ତୁଳାଫୁଙ୍କାନଳ ବାଧିରେ ବୃଦ୍ଧି ଜ୍ୱରର ଯେ । ୧୩ ।
ଝଞ୍ଜାବାତ ବହୁବାରୁ ଯେ । ଝୁଙ୍କେ ପୀତଯୂଥୀତରୁ ।
ଝିଲ୍ଲିକଅଙ୍ଗୀ ତ କରୁଛୁ ଭଙ୍ଗୀତ ବାଗ୍ବଳେ କେତେ ଗୁରୁ ଯେ । ୧୪ ।

---

ବସନ୍ତ ମେଳରେ—ବସନ୍ତକାଳ ଯୋଗରେ, ଅଦେହ—କନ୍ଦର୍ପ, ଗୋଳ—କଳହ କରେ କି ?

୧୧ । ଝାଙ୍କି ଖରା—ତତଲ ଖରା । ପରଖର—ପ୍ରଖର, ପ୍ରଚଣ୍ଡ । ମାର—କନ୍ଦର୍ପ । ଝୁଣାବାଣ—ଚୂନ ବାଣ । ମାରେ—ବର୍ଷେ । ଯେତେ ପାର୍ଥିବ ଗୁଣ ଥିବ—ପୃଥିବୀ ସମ୍ବନ୍ଧୀ ଯେତେ ଗୁଣ ଥିବ; ସହିଷ୍ଣୁତା, ସ୍ଥିରତା ଆଦି ଗୁଣକୁ, ଝାଡ଼ିବ—ଦୂର କରିବ, ଦେହ—ଶରୀରରେ, ଭୂତ—ଭୂତ ହୋଇ, ଭୂତ ଦେବତା ପରି, ଅଧ୍ୟାହାର—ତର୍କ ହେଉଛି । (କାମଦେବ ଭୂତ, ଅନଙ୍ଗ ଏପରି ତର୍କଣା ହେଉଛି) ବା କାମଦେବ ପାର୍ଥିବଗୁଣ—ପୃଥିବୀ ସମ୍ବନ୍ଧୀ ଯେତେ ଗୁଣ ତାକୁ ଦୂର କରିବ; କାରଣ ମନୁଷ୍ୟର ଶରୀର—ଭୂତ—ପଞ୍ଚମହାଭୂତ, କ୍ଷିତି, ଅପ, ତେଜ, ମରୁତ, ବ୍ୟୋମରେ ନିର୍ମିତ, ଏହି ଅଧ୍ୟାହାର—ଏହି ତର୍କଣା ଅଛି ।

୧୨ । ଅତନୁ—କାମଦେବ । ଝଗଡ଼ା—କଳହ । କୁସୁମ ଧନୁ—ଫୁଲ ଧନୁ, ଝିଙ୍କୁଛୁ—ଟାଣୁଛୁ । ମୁଁ ଏପରି ଦୁର୍ବଳ ହୋଇଛି ଯେ, ଦୁର୍ବାକୁ—ଦୂବକୁ । ଝୁଣ୍ଟିଲେ—ପାଦରେ ଦୂବ କାଟିଲେ । ମୁଁ ପଡ଼ିବ—ତଳେ ପଡ଼ିଯିବି, ଏପରି ଅବସ୍ଥାରେ ସେ ମୋ ଜୀବନ ଦେବାକୁ, ମନ୍ୟୁ—କ୍ରୋଧ କରୁଛି ।

୧୩ । କଳେବର—ଦେହ । ଝିମି ଝିମି—ଦୁର୍ବଳତାରୁ ଅବଶ ଝୋଲେଇ ହୁଏ; ଶରୀର ବହିବାକୁ ଅସହ୍ୟ ହୁଏ । ଝକମକାନଳ—ତୁଳାଫୁଙ୍କାନଳ । ବାଧିରେ ବୃଦ୍ଧିସ୍ୱରର ଝକମକି ପଥରରୁ ବାହାରିଥିବା ଅଗ୍ନି ଯେପରି, ଫୁଙ୍କାନଳ ଦ୍ୱାରା ଫୁଙ୍କାହୋଇ କ୍ରମେ ବଢ଼େ, ସେହିପରି ଜ୍ୱରର—ପ୍ରଣୟର ବୃଦ୍ଧି ହେଉଅଛି । ବା 'ଝକମକି ଅଗ୍ନିକୁ ତୁଳାରେ ଧରି ଫୁଙ୍କାନଳରେ ଫୁଙ୍କିଲେ ଯେପରି ବଢ଼େ ସେପରି' ।

୧୪ । ପୀତ ଯୂଥୀତରୁ—ହଳଦିଆ ଯୂଥିଗଛ, ହେମପୁଷ୍ପିକ ଲତା । ଝଞ୍ଜାବାତ ବହୁବାରୁ—ପ୍ରକୋପ ପବନ ବହୁବାରୁ—ଝୁଙ୍କେ, ନଇଁଯାଏ । ଝିଲ୍ଲିକଅଙ୍ଗୀ

Digitized by srujanika@gmail.com

ଝଟକ ପିକ ଡାକନ୍ତେ ଯେ । ଝଳଅଙ୍ଗୀ ବାଣୀ ପ୍ରତେ ।
ଝୁଲବ ମଥାରୁ ବୋଇଲେ କଥାରୁ ଭୁଲିବ ଅଛୁ ଜଗତେ ଯେ । ୧୫ ।
ଝଟକ କେତକୀ ଦେଖି ଯେ । ଝିମଣ୍ଟେ ହୃଦରେ ରଖି ।
ଝରୁଛି ବଶୁଦ୍ଧା ଅଧରୁଁ କି ସୁଧା ବଧୂଲି ଚୁମ୍ବନେ ସୁଖୀ ଯେ । ୧୬ ।
ଝଡ଼ାସଜଡ଼ା କବରୀ ଯେ । ଝୁମ୍ପା ଫୁଲେ ପ୍ରତେ ଭରି ।
ଝଗଡ଼ ମନ୍ଥିବ ବେଣୀ ବିରଚିବ ବନ୍ଧୁ ହେଲେ ଅଙ୍ଗୀକାରୀ ଯେ । ୧୭ ।
ଝିଣ୍ଟି ନାମେ ଭ୍ରମ ହେଲେ ଯେ । ଝାଟକାରେ ଗୃହ କଲେ ।
ଝୁମ୍ପାଣ ଚଢ଼ାଇ ମଦନେ ଲଢ଼ାଇ ବଢ଼ାଇକି ବିନାଶିଲେ ଯେ । ୧୮ ।

୧୮-ସ — ଲଢ଼ାଇ-ଜ, ଝ, ଠ, ବଢ଼ାଇକି-ଝ ବ୍ୟତୀତ ସମସ୍ତ ପୋଥିରେ, ଚଢ଼ାଇ, ଲଢ଼ାଇ ଓ ବଢ଼ାଇ ପାଠ ମଧ୍ୟ ସମୀଚୀନ ।

---

—କାନ୍ତମତୀ ଶ୍ରୀରାଧା, ଉଚ୍ଚାରିତ କରୁଛନ୍ତି—ଟଳ ଟଳ ବା ଝୁଲି ଝୁଲି ସ୍ଖଳିତ ହେଉଛି ଲମ୍ବିତ କରୁଛନ୍ତି । ବୋଇଲେ—କହିଲେ, ତାହା କେତେ ଶୁଣୁ—ସୁନ୍ଦର ।

୧୫ । ଝଟକ—ଶୀଘ୍ର । ପିକ—କୋଇଲି । ଝଳଅଙ୍ଗୀବାଣୀ—ଉଜ୍ଜ୍ୱଳାଙ୍ଗୀ ଶ୍ରୀରାଧାଙ୍କ ବଚନ, ପ୍ରତେ—ବୋଧହୁଏ ।

୧୬ । ଝଟକକେତକୀ—ଝଟକ ଶୋଭା ପାଉଥିବା କେତକୀ ଦେଖିଲେ, ଝିମଣ୍ଟେ—କ୍ଷଣକାଳ, ଶୀଘ୍ର । ହୃଦରେ—ହୃଦୟରେ । (ରାଧାଙ୍କ ବର୍ଣ୍ଣର ସମତା ହେତୁ) । ବଶୁଦ୍ଧା—ନିର୍ଦ୍ଦୋଷା; ଶ୍ରୀରାଧାଙ୍କ ଅଧରୁଁ—ଓଷ୍ଠରୁ । ସୁଧା—ଅମୃତ । ଝରୁଛି—କ୍ଷରୁଛି । ଏହାଦ୍ୱାରା ବଧୂଲି ଚୁମ୍ବନେ ସୁଖୀ—ଆନନ୍ଦିତ ହୁଏ । (ବନ୍ଧୂଳି-ଅଧରା ରାଧାଙ୍କୁ ଚୁମ୍ବନ ଅଭିପ୍ରାୟରେ ବନ୍ଧୂଳିକୁ ଚୁମ୍ବନକରି ସୁଖୀ ହୁଏ ।)

୧୭ । ଝଡ଼ା ସଜଡ଼ା କବରୀ—ବନ୍ଧାହୋଇଥିବା ଜୂଡ଼ାର ଝଡ଼ା—ଝରା ଫୁଲ ଲଟକଣରୁ ଝୁମ୍ପା ଫୁଲ, ପ୍ରତେକରି—ମନେକରି (ବା ଝରାରେ ସଜଡ଼ା—ବନ୍ଧା ହୋଇଥିବା ଜୂଡ଼ାକୁ) । ଝଗଡ଼—କ୍ଳେଶ; କନ୍ଦର୍ପ ଦୁଃଖ । ବେଣୀବିରଚିବ—ବେଣୀ ସଜାଡ଼ି କରିବି । ବନ୍ଧୁ—ରାଧା । ଅଙ୍ଗୀକାରୀହେଲେ—ମାଗିଲେ । ଫୁଲେ—ଝୁମ୍ପା (ବା ଫୁଲରେ ଗୁନ୍ଥା) ।

୧୮ । ଝିଣ୍ଟିନାମେ—ଦାସକେରଣ୍ଡାରେ ଭ୍ରମହେଲେ—ସନ୍ଦେହରେ ଏହି ଶବ୍ଦରେ । ଝିଣ୍ଟିଗଛକୁ ନାମ ଭ୍ରମରେ ରାଧାଙ୍କର ସନ୍ଦେହରେ ବିରୁଦ୍ଧ ଗୃହ ସାନ୍ତ୍ୱନବଚନ, କଲେ—କହିଲେ ଅର୍ଥାତ୍ ଅଗଣିତ ସାନ୍ତ୍ୱନାରେ କହିଲେ । ଝୁମ୍ପାଣ ଚଢ଼ାଇ—ସାମ୍ନେକରି ପାରିବା ପକ୍ଷିବିଶେଷ ପରି, ମଦନେ—କନ୍ଦର୍ପ ସଙ୍ଗରେ ଯୁଦ୍ଧକରି ତାର ବଢ଼ାଇ—ଗର୍ବକୁ, କନ୍ଦର୍ପ ବଳକୁ ବିନାଶ କଲେ ବା ଝୁମ୍ପାଣଚଢ଼ାଇକି ମଦନେ—ମଦନପକ୍ଷୀକି ଖଞ୍ଜନ ପକ୍ଷୀସଙ୍ଗରେ ଲଢ଼ାଇ ମଦନପକ୍ଷୀଙ୍କି ହରାଇ-ଦେଲେ—ମଦନର ବଡ଼ପଣକୁ ବିନାଶ କଲେ ।

Digitized by srujanika@gmail.com

ଝାମ ତୃଣ ଗେଲ ଧରି ଯେ । ଝରବାରୁ ଦିଏ ବାଡ଼ି ।
ଝଲକ-ଶୋଭନା ମୋ ପ୍ରିୟସେବିନା ହେବାରୁ କର ବାଗୁଡ଼ି ଯେ । ୧୯ ।
ଝଁବା ବନା ଜଳକାଡ଼ି ଯେ । ଝାଙ୍କିରେ ହୋଇବ ବାଡ଼ି ?
ଝୋଲବାସେ ବାତ ରେଙ୍ଗୁ ବାନ୍ଧିବ ତ ବନ୍ଧୁ ବୋଧେ ମିତ ହରି ଯେ । ୨୦ ।
ଝଗ ବଜଳା ରଜୁର ଯେ । ଝୁଲଣା ରାଧା କୃଷ୍ଣର ।
ଝୁଲିବ ଦେବ କି ଏ ପରାଣ ବାଳ ଛବେ ସାମନ୍ତସିଂହାର ଯେ । ୨୧ ।

୧୯-୧—ଝମ୍ପବୃନ୍ଦ-ଗ, ଘ, ଚ, ଛ, ଜ ।
୨୦-୨—ହୋଇବ ଧରି, ଝଁ ବ୍ୟତୀତ ସମସ୍ତ ପୋଥିରେ ଅଛି-ଏ ପାଠ ସମୀଚୀନ ।

---

୧୯ । ଝାମ—ଝାମ ମାଟିଧରା ଯଜ ବିଶେଷ ବା ଟୋକେଇ, ତୃଣ—ଘାସରେ । ଗେଲହୋଇ—ଯୁକ୍ତହୋଇ, ଝରବାରୁ—ଝରପାଣିକୁ ବାଡ଼ିଦିଏ—ଅଟକାଇ ଦିଏ, ଆଡ଼ଇ ଦିଏ । ଝଲକଶୋଭନା—ଝଲକାଳଙ୍କାରରେ ଶୋଭବତୀ ବା ଶୀଘ୍ରରେ ଶୋଭବତୀ (ବାଣ୍ଟେଶୋଭିଲକ୍ଷିଣୀ) ରାଧା ଝର ବାରୁପଣ ସମସ୍ତ ବିଷୟ ଗୁଣ ମୋଠାରେ ପ୍ରିୟସେବିନା—ଅସନ୍ତା ହେବାରୁ, ବାଗୁଡ଼ି—ସ୍ୱୀକାର ।
୨୦ । ଝଁବା—ମାଠିଆ, ବନା—ଛଡ଼ା, ଜଳକାଡ଼ି—ପାଣିକଣ, ଝାଙ୍କିରେ—ବାଉଁଶ ପାଉଁଆ ବା ଲଇରେ ଫାଙ୍କ ଫାଙ୍କ ଥାଇ ବୁଣା ହୋଇଥିବା ଟୋକେଇରେ, ବାଡ଼ିହୋଇବ—ବନ୍ଦହେବ । ଝୋଲବାସେ—ଝିଲ୍ଲିଝିଲ୍ଲୀ ଲୁଗାରେ ବା କଣାଥିବା, ଲୁଗାରେ ବାତ—ପବନ । ବାନ୍ଧିବ—ରୁନ୍ଧ କରିବ । ମିତ—ମଧ୍ୟମମିତ ବନ୍ଧୁ, ହରି—କୃଷ୍ଣଙ୍କୁ, ବୋଧେ—ବୁଝାଇଲେ ।
୨୧ । ରାଧାକୃଷ୍ଣର—ରାଧାକୃଷ୍ଣଦୁହିଁଙ୍କର ରଜୁର ଝଗ—ବଜଳା ଲାଗିଥିବାରୁ; ଝୁଲଣା—ଝୁଲଣ—ଦୋଳକୁ ଏ ଜୀବନ ବଳ ଝୁଲାଇ—ଦେବକିନ୍ଦଳାଇ ଦେବଣ ଏହାଁ ସାମନ୍ତ ସିଂହାର ଛବେ—ଇଚ୍ଛାବରେ (ବା ଛବେ—ଛନ୍ଦରେ ଝୁଲାଇ ଦେବ କି ?)

---

# ଅଠାବନ ଛାନ୍ଦ

## ଶ୍ରୀକିଶୋରୀଙ୍କର ମହାଉତ୍କଣ୍ଠା ବିଭ୍ରମ ଉକ୍ତି ।

### ଯମକ ଶ୍ଳେଷ

ରାଗ—ବରାଡ଼ି । ( ଅଷାଢ଼ ଶୁକ୍ଳବାଣୀ )

ସାଧବ ମାଧବ ପ୍ରୀତି ବିହ୍ୱଳେ । ସାଧବୀ ମାଧବୀ ପୁଷ୍ପପବନେ ।
କାମ ବାମ ହେଲା ଅତିଶୟରେ । ରାମ ଶ୍ୟାମ ପ୍ରାପ୍ତି ଆଶା ମନରେ ।
ଭାବଶାବଲ୍ୟତା ହେ । ଅତି ମତିକି କଲା ବିଭ୍ରମତା । ୧ ।
ଜାତ ଯାତନା କଳନା ନୋହିଲା । ମନ ମନମଥ ମନ୍ଥନ କଲା ।
ରସାଳସା ଦଶା ଅସାଧାରଣ । ବିକଳ କଲା ଯା ଯାରେ ପରାଣ ।
ନୁହ ରହ ରହ ରେ । ଦେହଦାହ ଦେଉ ଦାହନ ବହ । ୨ ।

---

୧ । ସାଧବ—ହେ ସାଧୁମାନେ, ମାଧବ ପ୍ରୀତିବିହ୍ୱଳେ—କୃଷ୍ଣଙ୍କ ସ୍ନେହବଶା । ସାଧବୀ—ପତିବ୍ରତା । ମାଧବୀ—ଶ୍ରୀରାଧା ( ବା ମାଧବୀ - ପତିବ୍ରତା ରାଧା ) ପୁଷ୍ପପବନରେ ଫୁଲର ସୁଗନ୍ଧଯୁକ୍ତ ପବନରେ ବା ମାଧବୀ ପୁଷ୍ପ ବନରେ । ବାସନ୍ତୀ - ବସନ୍ତକାଳର ଫୁଲର ସୁଗନ୍ଧଯୁକ୍ତ ପବନରେ । ଅତିଶୟରେ—ଅତି ପ୍ରବଳ ଭାବରେ । କାମ—କନ୍ଦର୍ପ । ବାମ—ବିପକ୍ଷ, ପ୍ରତିକୂଳ, ପୀଡ଼ାଦେଲା । ରାମଶ୍ୟାମ—ରମଣୀୟ କୃଷ୍ଣ । ତାଙ୍କ ପ୍ରାପ୍ତି—ମନରେ ଆଶା କରିବାରୁ । ଭାବଶାବଲ୍ୟତା—ଭାବ ଶବଳତା "ଭାବାନାଂ ବାଧ୍ୟବାଧକଭାବମାପନ୍ନାନାମୁଦାସୀନାନାଂ ବା ବ୍ୟାମିଶ୍ରଣମ । ଜଗନ୍ନାଥ ପଣ୍ଡିତକୃତ ରସଗଙ୍ଗାଧର" । ବିରୋଧୀଭାବ ପ୍ରାପ୍ତ ବା ଉଦାସୀନ ଭାବମାନଙ୍କର ମିଶ୍ରଣକୁ ଭାବଶବଳତା କହନ୍ତି । ବିତର୍କ, ଔତ୍ସୁକ୍ୟ, ମତି, ସ୍ମୃତି, ଶଙ୍କା, ଦୈନ୍ୟ, ଧୃତି, ଚିନ୍ତା ପ୍ରଭୃତି ଭାବମାନଙ୍କର ମିଶ୍ରଣକୁ ଭାବଶାବଲ୍ୟ କହନ୍ତି । ମତିକି—ମନକୁ, ଅତିଶୟରେ ବିଭ୍ରମତା କଲା—ଭ୍ରାନ୍ତିଯୁକ୍ତ, ବିହ୍ୱଳକଲା; ପାଗଳ ପରି ହୋଇଗଲେ । ଏଠାରେ ସୁଗନ୍ଧ ପବନ ବିରହକୁ ଉଦ୍ଦୀପନ କଲା ।

୨ । ଜାତ ଯାତନା—ଜନ୍ମିଥିବା ତୀବ୍ର ବେଦନା, କଳନା ନୋହିଲା କଳ ହେଲାନାହିଁ । ମନମଥ—କନ୍ଦର୍ପ । ମନକୁ ମନ୍ଥନ କଲା—ମନ୍ଥି ପକାଇଲା, ଅତିଶୟ ବ୍ୟସ୍ତ କରାଇଲା । ରସାଳସା ଦଶା—ରସବତୀ ରାଧାର ମଦ ଅବସ୍ଥା, ଅସାଧାରଣ—ଗୁରୁତର, ଅତ୍ୟଧିକ, ଯାହା ସାଧାରଣରେ ଦେଖାଯାଏ ନାହିଁ । ବିକଳ କଲା—ଦୁଃଖ ବଚନ, ବାହାରିଲା—ରେ ପରାଣ ଯା ଯା—ଯମପୁରକୁ ଚାଲିଯା । ରହ ରହ ନୁହରେ—ଅପେକ୍ଷା ଅପେକ୍ଷା ବା ମଠ ମଠ ହୁଅ ନା ବା

Digitized by srujanika@gmail.com

ଅମଳ ଶ୍ୟାମଳ କମଳମୁଖ । ବିଧୁର ବିଧୁର ମଧୁର ସୁଖ ।
ସାନ୍ଦ୍ର ଇନ୍ଦ୍ରନୀଳମଣିକ ଆଣି । ମଦନ ମଦ ମରଦାଇ ପୁଣି ।
ଏ ଶୋଭା ନ ଦେଖିବେ । ଛି ଛି ଅଛି କି ଲୋ ଏ ପାପଆଖି । ୩ ।
ମଞ୍ଜୁଳ ଉଜ୍ଜ୍ୱଳ ଶୀତଳ ଦ୍ୟୋତି । ସୁଧାର ସୁଧାର ଉଧାର ପତି ।
ବିଧୁର ବିଧୁର ମଧୁର ତେଣୁ । ବାଣୀ ଆଣି ବାଣୀ ବୀଣା କି ଗଣୁ ।
ହା ହା ତା ମୂର୍ଚ୍ଛିଲି ବେ । ଅବଧି ବଧିର ଶ୍ରୁତି ନୋହିଲି । ୪ ।

୪-୪—ବାଣୀଆଣି ବୀଣାବାଣୀ ଝୁ,

---

ଠିଆ ଠିଆ ହୁଅବା—ଶୀଘ୍ର କର, ତରତର ହୁଅ । ଦେହଦାହ—କନ୍ଦର୍ପ । ଦେହଦାହ ନ ନ ବହ—ଶରୀରକୁ ପୋଡ଼ପକା ନାହିଁ ।

୩ । ଅମଳ ଶ୍ୟାମଳ କମଳମୁଖ—ନିର୍ମଳ ନୀଳପଦ୍ମ ସଦୃଶ ମୁଖ (ଶ୍ରୀକୃଷ୍ଣଙ୍କର) ବିଧୁର—ଚନ୍ଦ୍ରର, ମଧୁର ସୁଖ ମାଧୁର୍ଯ୍ୟ ଜନକ ସୌଖ୍ୟ । ବିଧୁର ବିକଳ. କ୍ଷୁଣ୍ଣ (କୃଷ୍ଣଚନ୍ଦ୍ରଙ୍କ ମୁଖ ତୁଳନାରେ କ୍ଷୁଣ୍ଣ) ଆଣି—ଶୋଭା । ସାନ୍ଦ୍ର ଇନ୍ଦ୍ରନୀଳମଣିକ—ନିବିଡ଼ ବା ଉଜ୍ଜ୍ୱଳ ନୀଳମଣି ଘନ ବା ଉଜ୍ଜ୍ୱଳ ନୀଳମଣି ର ଆଣି—ସମାନ କରି । ମଦନମଦ—କନ୍ଦର୍ପର ସୌନ୍ଦର୍ଯ୍ୟ ଗର୍ବକୁ ପୁଣି, ମରଦଇ—ଗୋଡ଼ତଳେ ମକଚଦଏ ଅର୍ଥାତ୍ ତିରସ୍କାର କରେ (କୃଷ୍ଣଙ୍କ ଶୋଭା ମଦନ ଶୋଭାଠାରୁ ବଡ଼, କାରଣ ସେ ମନ୍ମଥ ମନ୍ମଥ । ଏପରି କୃଷ୍ଣଙ୍କ ଶୋଭାକୁ ନ ଦେଖି) ଛି ଛି କି ଲୋ—କିନିମିତ୍ତ ଏ ପାପଆଖି ରହିଛି ।

୪ । ମଞ୍ଜୁଳ—ସୁନ୍ଦର । ଉଜ୍ଜ୍ୱଳ—ଶୁଭ୍ର, ଉଜ୍ଜ୍ୱଳ । ଶୀତଳ—ସୁଖପ୍ରଦ, (ଶୀତସ୍ପର୍ଶ ଶାନ୍ତ ବା ସୁଖପ୍ରଦ) । ଦ୍ୟୋତି—ଜକଜକ, ଦେଦୀପ୍ୟମାନ । ସୁଧାର—ଅମୃତର । ସୁଧାର ଉଧାର—ଉତ୍ତମ ଧାରର ବା ସାରର ବା ସ୍ୱାଦର ଉଧାର, ଉଦ୍ଧାର—ଉଦ୍ଧରଣ, ସାର ଗ୍ରହଣ । ଏ ମୁଖପତି; ବା ସୁଧାର ଉଧାର—ଉତ୍ତମ ଧାରା-ମାନଙ୍କୁ ଉଧାର ନେଇଛି ପତି । ବିଧୁର—ଚନ୍ଦ୍ରର । ବିଧୁର—ତିରସ୍କାରକ ତେଣୁ ସେ ମୁଖ, ମଧୁର—ମାଧୁର୍ଯ୍ୟ ଗୁଣ ବିଶିଷ୍ଟ ବା ବିଧୁର—ଚନ୍ଦ୍ରର ଓ ମଧୁର ମଦ୍ୟର ବା ଅମୃତର ବିଧୁର—ତିରସ୍କାର ବା 'ବିଧୁର ମଧୁର ମଧୁର' ପାଠରେ—ଚନ୍ଦ୍ର ଓ ମଧୁ ବା ଅମୃତ ଠାରୁ ଅଧିକ ମଧୁର । ବାଣୀ—ବଚନ ଆଣି—ମିଷ୍ଟତାରେ ତୌଲ, ବାଣୀଙ୍କ—ସରସ୍ୱତୀଙ୍କ ବୀଣାକୁ କିଏ ଗଣନା କରିବ—ବୀଣାଠାରୁ ମଧୁର ବଚନ । ହା ହା—ଅତି ଦୁଃଖରେ । ତା ମୂର୍ଚ୍ଛିଲି—କୃଷ୍ଣଙ୍କ କଥା ଛୁଡ଼ିଲି । ଅବଧି—ଏ ପର୍ଯ୍ୟନ୍ତ । ଶ୍ରୁତି—କାନ । ବଧିର—କାଲ ।

Digitized by srujanika@gmail.com

ରାଗ ଅନୁରାଗ ସୁଧା ମିଳନ । କୋଳ ମେଳ ବେଳ ଶଶୀ ଅରୁଣ ।
ପ୍ରବାଳ ଆଳବାଳ ସୁଧାଙ୍କୁର । ମନଲୋଭ ଶୋଭ ସ୍ମିତ ଅଧର ।
ତାହା ସ୍ୱାଦୁ ବିନାରେ । ଖଣ୍ଡ ନ ପଡ଼ ରହୁଛୁ ରସନା । ୫ ।
ତର୍କିତ ମର୍କତ କପାଟ ଅଣି । ଉଦାର ଉରପଟ ପାରେ ଛଣି ।
କୃପା ଅନୁପାତ ଆହ୍ଲାଦ ସୃଷ୍ଟା । କାମ ବାମ ତାପ ପ୍ରତାପ ଘୃଷ୍ଟା ।
ଅନୁଭବୀ ହୋଇରେ । ମନ୍ଦ ହୃଦ ଅଛୁ ଫାଟି ନ ଯାଇ । ୬ ।
ନୀଳ କମଳ ମୃଗମଦ ଗନ୍ଧ । ଗର୍ବ ଖର୍ବ କରେ ତନୁ ବିଶୁଦ୍ଧ ।
ନାରୀ ଭ୍ରମରୀ ଅତୁରୀ ତର୍ଦ୍ଧିକ । ମନ୍ଦ ଚନ୍ଦ୍ରବାହୁ ସାକ୍ଷୀ ପର୍ଦ୍ଧିକା ।
ସେ ସୁଖ ଲଭରେ ରେ । ନାସା ଆଶା କର ରହ କେଉଁରେ । ୭ ।
୭-୨—ମାତେର ଜଣି କ, ଙ ।

---

୫ । ରାଗ ଅନୁରାଗ ସୁଧା ମିଳନ—ରକ୍ତିମାଯୁକ୍ତ ସ୍ନେହରେ, ସୁଧା—ଅମୃତର ମିଳନ ଯେପରି—ଅରୁଣ—ସୂର୍ଯ୍ୟ କୋଳରେ ଶଶୀ—ଚନ୍ଦ୍ରର ମେଳନର ବେଳ ସମୟ ଯେପରି । ପ୍ରବାଳ ଆଳବାଳ—ପୋହଳା ମଣ୍ଡାରେ; ସୁଧା ଅଙ୍କୁର—ଅମୃତର ଗଛ, ମନଲୋଭ—ମନର ଲୋଭନୀୟ ଓ ଶୋଭ—ଶୋଭାଯୁକ୍ତ ଅଧରରେ, ସ୍ମିତ—ଅଳହାସ (ଏଠାରେ ଅଧର ଲାଲ । ସ୍ମିତ—ଧଳା; ଅନୁରାଗ ଅରୁଣ ସହିତ ପ୍ରବାଳ ମଣ୍ଡା ଅଧର ସହିତ ଓ ସୁଧା ଶଶୀ ସହିତ: ସୁଧାଙ୍କୁର—ସ୍ମିତ ସହିତ ତୁଳିତ) ଏପରି ମନହାସ ଯୁକ୍ତ ଓଷ୍ଠର ସ୍ୱାଦ ବିନା । ଅଧର ଆସ୍ୱାଦ ବିନା ) ରେ ରସନା ଜିହ୍ୱା ତୁ ଖଣ୍ଡ ନ ପଡ଼ି ରହୁଛୁ ?

୬ । ତର୍କିତ—ତର୍କଣୀକର—ଉତ୍ପ୍ରେକ୍ଷା କର । ମର୍କତ କପାଟ ଅଣି—ମର୍କତ ମଣିର କବାଟର ଶୋଭାକୁ । ଉଦାର—ବିଶାଳ ବା ଉତ୍କୃଷ୍ଟ । ଉରପଟ—କୃଷ୍ଣଙ୍କ ବକ୍ଷସ୍ଥଳ (ଗ୍ରୀବାପଟ) । କୃପା ଅନୁପାତ—ଦୟା ସମ୍ପଦ ଓ ଆହ୍ଲାଦ—ପୁଲକଯୁକ୍ତ ବା ସୌଖ୍ୟମୟ ଆନନ୍ଦ ପୂର୍ଣ୍ଣ; ସୃଷ୍ଟା—ସ୍ଥିତ (ହୃଦୟରେ ରଖା ହୋଇଛନ୍ତି) । କାମ, ବାମ, ତାପ, ପ୍ରତାପ ଘୃଷ୍ଟା—କନ୍ଦର୍ପ ରୂପ ଶତ୍ରୁର କଷ୍ଟ ଓ ଉତ୍ତାପକୁ ଦୂର କରିବାରେ ସମର୍ଥ ବା କାମର ଅତି ଦୁଃଖଦାୟକ ପୀଡ଼ାର ପ୍ରକୋପକୁ ଦୂରକାରୀ ବା କନ୍ଦର୍ପ ଅଟେ ଶତ୍ରୁ ଯାହାଙ୍କର, ତାଙ୍କର ଦୁଃଖର ପ୍ରବଳତାକୁ ଦୂରକାରୀ ଯେ ବକ୍ଷ (ଆଲିଙ୍ଗନରେ ତାପ ଘୁଞ୍ଚିଯାଏ) । ରେ ମନ୍ଦ ହୃଦୟ—ରେ ମୂର୍ଖ ତୁ ଅନୁଭବୀ ହୋଇ ସେ ବକ୍ଷସ୍ଥଳ ସୁଖକୁ ଅନୁଭବ କରି ଫାଟି ନ ଯାଇ ଅଛୁ—ଶୀଘ୍ର ଫାଟି ଯା ।

୭ । ବିଶୁଦ୍ଧ—ନିର୍ଦ୍ଦୋଷ, ଅତି ନିର୍ମଳ; ତନୁ—ଶ୍ରୀକୃଷ୍ଣଙ୍କ ଦେହ । ନୀଳ କମଳ ଓ ମୃଗମଦଗନ୍ଧ—କସ୍ତୁରୀ ସୁବାସର, ଗର୍ବ—ଅଭିମାନକୁ, ଖର୍ବ କରେ—କ୍ଷୀଣ କରେ । ନାରୀ ଭ୍ରମରୀ ଅତୁରୀ ତର୍ଦ୍ଧିକ—ସ୍ତ୍ରୀମାନେ ହେଲେ ଭ୍ରମର ସ୍ତ୍ରୀ

Digitized by srujanika@gmail.com

ନାନା ଭଙ୍ଗୀ ସଙ୍ଗୀ ତ୍ରିଭଙ୍ଗୀ ଠାଣି । ଅପାଙ୍ଗ ରଙ୍ଗ ତରଙ୍ଗକୁ କିଣି ।
ପୀତପଟ୍ଟ ନଟବେଶେ ପିନ୍ଧିବା । ଶକ୍ରଚାପ ବନ୍ଧ ଚୂଡ଼ା ବାନ୍ଧିବା ।
ମୁରଲୀ ବାଦନ ରେ । ଚିତ୍ତଲୁଟିତ ନୟନମୋହନ ରେ ।୮।
ଅମାପ ତାପ ନ ପାଇବୁ ଯେଣେ । ପବନ ପ୍ରୟାଣ ନ କରୁ ତେଣେ ।
ଶ୍ୟାମ ନାମ ଧରି ଯା ଯା ବାହାର । ଲକ୍ଷ ଲକ୍ଷ ମୋକ୍ଷ ନୋହିବ ସରି ।
ଏତେ କହି ଧନୀ ହେ । ମୋହନ ମୋହନଭାବକୁ ଘେନି ।୯।
ଇଚ୍ଛା ଚକୋରାକୁ କର ସଜନୀ । ବାରି ବାରିଲ କେ ଏମନ୍ତ ଘେନି ।
ସ୍ୱଦେହ ଦେହି କଞ୍ଜ ଦହନ । ଶୁଭ୍ର ସ୍ୱଚ୍ଛ ବହିଲି ଘନ ।
ଗାଢ଼େ ନ ...ଲେ ଯେ । ଛନ୍ନ ଛନ୍ନ ହୁଡ଼ିଯିବ ପାଖିଲେ ।୧୦।

୧୦-'—ଇଚ୍ଛା ଚକୋରାକୁ କରୁ ସଜନୀ ଛ, ଝ, ବ୍ୟତୀତ ସମସ୍ତ ପୋଥିରେ ପାଠ, ମଧ୍ୟ ସମୀଚୀନ ।

ତହିଁକି—ଯେ ଦେହ ମୃଦାମକୁ, ଆତୁରୀ—ଲୋଭବତୀ (ଭୋଗ କରିବାକୁ) । ମନ୍ଦ ଗନ୍ଧବାହ—ଧୀର ପବନ (ମଳୟ ମରୁତ) ଯହିଁକି—ଯେଉଁ ଦେହ ଗନ୍ଧକୁ, ସାକ୍ଷୀ—ସମାନ (ଅର୍ଥାତ୍ ମଳୟ ମରୁତ ଯେ ଗନ୍ଧ ବହନ କରେ ତହୁଁ ସୁଗନ୍ଧ ଓ ଧୀର) । ସେ ସୁଖ ଲାଭରେ—ସେ ସୁଖ ପାଇବା ନିମନ୍ତେ. ନାସା—ନାକ; ଆଶା କରି—ଇଚ୍ଛା କରି ଲୋଭରେ ରହ ।

୮ । ତ୍ରିଭଙ୍ଗିଠାଣି—ଶ୍ରୀକୃଷ୍ଣଙ୍କ ତ୍ରିଭଙ୍ଗୀ ଶୋଭା (ପାଦ, କଟି ଓ ଗ୍ରୀବାରେ ବଙ୍କିମା) । ନାନା ଭଙ୍ଗୀ ସଙ୍ଗୀ—ନାନା ବିଳାସଯୁକ୍ତ (ନାରୀ ଆକର୍ଷଣ ନିମିତ୍ତ ଭ୍ରୂ, ପାଣି, ଅଧର ଇତ୍ୟାଦିରେ ଭଙ୍ଗୀ ) । ଅପାଙ୍ଗ ରଙ୍ଗ—ନେତ୍ରପ୍ରାନ୍ତ, ବିଳାସ ଅକ୍ଷି କୋଣରେ ଚାହିଁ ଠାରିବା ପ୍ରକାର । ତରଙ୍ଗକୁ—ଲହରୀକୁ କିଣି ପକାଇଥାଏ ଅର୍ଥାତ୍ ଅତି ଚଞ୍ଚଳ । ନଟ ବେଶେ—ନାଟୁଆ ବେଶରେ । ପୀତପଟ୍ଟ—ହଳଦିଆ ପାଟ; ଶକ୍ରଚାପ—ଇନ୍ଦ୍ରଧନୁ ପରି ବଙ୍କ । ବଙ୍କ ଚୂଡ଼ା ବାନ୍ଧିବା—ବାଙ୍କ ଜୂଡ଼ା ବାନ୍ଧିବାର । ମୁରଲୀ ବାଦନ—ବଂଶୀ ବଜାଇବା (ମୁରଲୀ ବଙ୍କ, ବଙ୍କ ଅଧରରେ ବାଦନ ) । ଚିତ୍ତଲୁଟିତ—ମନ ଲୁଟିକର । ନୟନ ମୋହନ—ଚକ୍ଷୁ ମୋହିକାରୀ ।

୯ । ରେ ପବନ ଅମାପ—ଅପ୍ରମିତ; ତାପ—ବିଚ୍ଛେଦ ଦୁଃଖ, ଯେଣେ—ଯେ ହେତୁ, ନ ପାଇବୁ—ପାଇବୁ ନାହିଁ, ତେଣେ—ସେହି ହେତୁ, ପ୍ରୟାଣ—ଯମ ନିକଟକୁ ଗମନ ନ କରୁ—କରୁନାହିଁ (କାହିଁକି), ଲକ୍ଷ ଲକ୍ଷ ମୋକ୍ଷ—ଅସଂଖ୍ୟ ମୁକ୍ତି । ସରି ନୋହିବ—ସମାନ ହେବ ନାହିଁ (ନାମ ଧରି ପ୍ରାଣଗଲେ ବହୁ ମୋକ୍ଷ ପାଇବା ବ୍ୟକ୍ତିମାନେ ତୋ ସମାନ ନୋହିବେ) ମୋହନ ଭାବକୁ—ଶ୍ରୀକୃଷ୍ଣଙ୍କ ପ୍ରେମକୁ, ଘେନି—ଭାବି, ମୋହନ—ମୋହିତା ହେଲେ ।

୧୦ । ସଜନୀ—ସଖୀମାନେ, ଚକୋରାକୁ—ନିପଟୁରକୁ । ଏମନ୍ତ ଘେନି—ଏହି କଥାକୁ, ଭାବି, କେ—କେଉଁ ସଜନୀ, ବାରି—ଜଳ, ବାରିଲ—ବାରଣ କଲା.

Digitized by srujanika@gmail.com

ତୁଳା ଅତୁଳା ଶ୍ୱାସରେ ଯୋଗିଲେ । ଅଳି ଚଳିବାରୁ ପ୍ରାଣ ଲକ୍ଷିଲେ ।
ହା ହା ସୁଦେହା କାହିଁ ଦାହୁଥିଲ । ମାର ପାମର ତାପ ଅରଜିଲ ।
ବୋଇଲେ ବଚନ ରେ । ଆଖି ଦେଖିଲ ଏଡ଼େ ଅପଘନ ।୧୧।
ବ୍ୟାକୁଳ ଅକୁଳ ରୋଦନ ଶୁଣି । ଜଟିଳା କୁଟିଳା ମିଳିଲେ ପୁଣି ।
ମୁଖରା ପ୍ରଖରା ଶ୍ରୀପୂର୍ଣ୍ଣମାସୀ । ବୀରା ଧୀରା ଆଦ ସେ ଗ୍ରାମବାସୀ ।
ନାନ୍ଦୀମୁଖୀ ମେଳେ ଯେ । ନିଷ୍ଠା ଧନିଷ୍ଠା କୁନ୍ଦଲତା ମିଳେ ।୧୨

---

ନିଷେଧ କଲା । ବଡ଼ଦେହ—କନ୍ଦର୍ପ । ଦେହ—ରାଧା ଦେହକୁ, ଦହନ କରୁଛି—ଦଗ୍ଧ କରୁଛି । ଧନ—ରାଧା । ଶୁକ୍ତ ଖଣ୍ଡିକ—ଶାମୁକା ପ୍ରକାରକୁ ( ତାତଲା ଖପରେ ପାଣି ପଡ଼ିଲେ ଫୁଟି ଉଠେ, ସେହିପରି ରାଧା ଦେହ ପାଣିରେ ଦେବ ) ଗାଢ଼ରେ—କୋଳରେ, ବଡ଼ରେ । ତନୁ ତନୁ—ପାତଳା ଦେହ (କୃଶ ଶରୀର; ବିରହ ଜନିତ ଦେହ ଅତି କୃଶ) ।

୧୧ । ଅତୁଳା—ଅତୁଳନୀୟା ଶ୍ରୀରାଧା । ଶ୍ୱାସରେ—ନିଃଶ୍ୱାସ ପବନରେ ( ଖର ନିଶ୍ୱାସ ବହୁବାରୁ ), ତୁଳା ଯୋଗିଲେ—ନାସିକାର ଅଗ୍ରରେ ଦେଲେ । ଅଳୀ—ସଖୀମାନେ । ଚଳିବାରୁ—ରାଧା ହଲିବାରୁ (ବା ଶରୀର), ପ୍ରାଣ ଲକ୍ଷିଲେ—ଜୀବିତାବସ୍ଥାରେ ରାଧା ଅଛି ବୋଲି ଜାଣିଲେ । ସୁଦେହା—ସୁନ୍ଦରୀ ରାଧେ, ହା ହା—ବଡ଼ କଷ୍ଟ । କାହିଁ—କାହାକୁ, ଦାହୁଥିଲ—ପୋଡ଼ୁଥିଲ ବା କେଉଁଠାରେ କି ଦାହୁଥିଲ—ପାପ କରିଥିଲ ବା କେଉଁ ସ୍ଥାନରେ ନିଜେ ପୋଡ଼ି ହୋଇଥିଲ । ପାମର—କୁତ୍ସିତ, ମାର—କନ୍ଦର୍ପ ତାପ—ଦୁଃଖ; ଅରଜିଲ—ପାଇଲ । ବଚନ—ଏହିପରି କଥା କହିଲେ, ରେ ଆଖି ଏଡ଼େ—ଏପରି ଗୁରୁ । ଅପଘନ—ଦୁରବସ୍ଥା; ଚେତନା ରହିତ ରାଧାଙ୍କୁ ଦେଖିଲ ।

୧୨ । ବ୍ୟାକୁଳ—ଅସ୍ତବ୍ୟସ୍ତ, ଜ୍ଞାନଶୂନ୍ୟ; ଅକୁଳ—ଅସ୍ଥିର; କ୍ରନ୍ଦନ ଶୁଣି, ଜଟିଳା—ରାଧାଙ୍କ ଶାଶୁଙ୍କର ନାମ ; କୁଟିଳା—ରାଧାଙ୍କ ନଣନ୍ଦ । ମୁଖରା—ରାଧାଙ୍କ ମାତାମହୀ ଓ କୃଷ୍ଣଙ୍କ ମାତାମହୀ ପାଟଳାଙ୍କ ପ୍ରିୟ ସହଚରୀ । ପ୍ରଖରା—ଚଞ୍ଚଳ ହୋଇ ମିଳିଲେ । ଶ୍ରୀପୂର୍ଣ୍ଣମାସୀ—ଭଗବତୀ ପୌର୍ଣ୍ଣମାସୀ (ଏ ଯୋଗମାୟା, ଏ ମଧ୍ୟ ଦୁର୍ଗା; ସାନ୍ଦୀପନୀଙ୍କ ମାତା, ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମବଶତଃ ଅବନ୍ତୀରୁ ଆସି ଗୋକୁଳରେ ବାସ କରୁଥିଲେ । ବୀରା—ଶ୍ରୀକୃଷ୍ଣଙ୍କ ଦୂତୀ, ଜଟିଳାର ପ୍ରିୟତମା ସେ ଧୀରସ୍ୱଭାବା ବୀରଦୂତୀ । ନାନ୍ଦୀମୁଖୀ—ସାନ୍ଦୀପନୀଙ୍କ କନ୍ୟା—ଶ୍ରୀ ରାଧା କୃଷ୍ଣଙ୍କ ମିଳନରେ ନିପୁଣା ଓ ରାଧା କୃଷ୍ଣଙ୍କ ପ୍ରେମରେ ପରିପୂର୍ଣ୍ଣା । ଧନିଷ୍ଠା—ଶ୍ରୀ ରାଧାଙ୍କ ସଖୀ ନନ୍ଦଙ୍କ ଘରେ ବାସ କରନ୍ତି । କୁନ୍ଦଲତା—ରାଧାଙ୍କ ସଖୀ ବନବାସିନୀ ଓ ବନମାଳାର ସହାୟଭୂତା । ନିଷ୍ଠା—ନିଷ୍ଠାପ୍ର ମିଳିଲେ ।

Digitized by srujanika@gmail.com

ଚନ୍ଦ୍ରା ପଦ୍ମା ଭଦ୍ରା ଚନ୍ଦ୍ରା ସଜ୍ଜନୀ । ମାନ ସମ୍ମାନକୁ ମାନସେ ଘେନି ।
ଅସି ଭାଷିଲେ ଏକ ବ୍ୟାଧିବଧି । ବେଦ ବୈଦ୍ୟ ଆଣି କର ଔଷଧି ।
ଯେ ଯେତେ ମତରେ ଯେ । କଥନ ଅକଥନ ଦୁର୍ଗତରେ । ୧୩ ।

ନାମ କାମସେନୀ ଜ୍ଞାତା ଅଣାଇ । ଉପଗୂଢ଼ ପଗ୍ରବନ୍ଧ ମଣାଇ ।
ବ୍ୟାଧି ବସନ୍ତି ଅଙ୍ଗେ କି ହେବ । ଧନକୁ ଧନ କ୍ଷୀଣଜ୍ଞୁ ଗବ ।
ବାତୁଳ ତୁଳରେ ହେ । ପାଞ୍ଚ ଆଚରଣ କାହିଁକି କରେ ।୧୪।

ବାଚ ବାଚକ ହେଲ୍ଲ ଏ ବଚନେ । ରୋଗ ରାଗଜନ୍ୟ ବଧି ଯତନେ
ଘେନ ମନରେ ସ୍ମର ଅପସ୍ମାର । ଏକା ପୃଶକା ମଧୁରେ ନିସ୍ତାର ।
ଆନ ଗତି ନାହିଁ ହେ । ଶ୍ୟାମଘନରସ ସୁପଥ୍ୟ ତହିଁ । ୧୫ ।

---

୧୩ । ପଦ୍ମା, ଭଦ୍ରା, ଚନ୍ଦ୍ରା,—ସଜ୍ଜନମାନେ, ଚନ୍ଦ୍ରା—କପନିଜା ହୋଇ । ମାନସମ୍ମାନକୁ—ମାନମର୍ଯ୍ୟାଦାକୁ ବା ମାନ—ଅଭିମାନ, ସମ୍ମାନ—ମାନକକୁ ମନେ ବିଗ୍ଭୁଧ, ବ୍ୟାଧି ବ୍ୟାଧି—କି ପ୍ରକାର ରୋଗ, ବେଦବୈଦ୍ୟ—ଆୟୁର୍ବେଦ ନିଦାନଜ୍ଞ ବୈଦ୍ୟ । କଥନ—କହିଲେ, ତା ଅକଥନ—କୁହାଯାଇ ପାରୁନାହିଁ ।

୧୪ । କାମସେନୀ ନାମ—କୁହ ଯେ ଜ୍ଞାତା—ନିଦାନଜ୍ଞ ଅଣାଇ, ମଣାଇ —ମନାଇ । ଉପଗୂଢ଼—ଚିକିତ୍ସା । ବସନ୍ତି ଅଙ୍ଗେ—ରାଧାଙ୍କ ଦେହରେ । କ୍ଷୀଣଜ୍ଞୁ—କୃଶତାକୁ । ବାତୁଳତୁଳ—ବାଇଆଣୀ ପରି ଆଚରଣ କରେ, ଏହା ପାଞ୍ଚ—ବିଗ୍ଭର କର ।

୧୫ । ବାଚ—କଥା, ବାଚକ ହେଲ୍ଲ—କହିଲ୍ଲ । ବଚନେ—ବାକ୍ୟରେ । ଏହିପରି ସଖୀମାନେ କହିବାରେ ରୋଗ—ବ୍ୟାଧି । ରାଗଜନ୍ୟ—ଅନୁରାଗଜନିତ, ବଧିଯତନେ—ବିଧାତାର ଯତ୍ନରେ ବା ଯତ୍ନରେ ବିଧାନ କର । ସ୍ମର, ଅପସ୍ମାର —ସ୍ମରଣ କର ଅପସ୍ମାର ରୋଗ, କାମଜନିତ ଅପସ୍ମାର ମୂର୍ଚ୍ଛାପାଉଁଥିବା ରୋଗ, ମନରେ—ଚିତ୍ତରେ, ଘେନ—ଗ୍ରହଣ କର । ଏକା ପୃଶକା ମଧୁରେ—ଏକମାତ୍ର ମନ୍ତ୍ରରେ ଦେଲେ । ନିସ୍ତାର, ପୃଶ ପରିମାଣ ମନ୍ତ୍ରରେ ଏକମାତ୍ର । ମନ୍ତ୍ରରେ ଦେଲେ, ଦୁଇକା ଓ ମଧୁ ନାମକ ଶ୍ରୀକୃଷ୍ଣ ମିଶ ଦ୍ୱାରା ନିସ୍ତାର ରୋଗମୁକ୍ତ ହେବ ବା ଏକା ପୃଶକା ମନ୍ତ୍ରରେ କେବଳ ଶୃଙ୍ଗାର ରସ ରୂପ ମନ୍ତ୍ରରେ ଏ ରୋଗ ନିସ୍ତାର ହେବ । ତହିଁରେ—ସେ ରୋଗକୁ ଶ୍ୟାମଘନ ରସ—କଳାମରିଚ ଓ କର୍ପୂର ବା ମୁଥା ଏ ଦୁହିଁଙ୍କ ରସ ପାଚନ, ସୁପଥ୍ୟ—ଅତ୍ୟନ୍ତ ପଥ୍ୟକର ହେବ ବା କଳାମେଘର ରସ ଅର୍ଥାତ୍ ଜଳ ଓ ଶ୍ରୀକୃଷ୍ଣଙ୍କର ନବଲ ଶୃଙ୍ଗାର ରସ ସୁପଥ୍ୟ ହେବ ।

Digitized by srujanika@gmail.com

ଦେହଦାହ ଦୁଃଖ ଯିବାକୁ ଘୂଞ୍ଚି । ଅଛୁ ରସାନନ୍ଦ ପାଚନ ପାଞ୍ଚି ।
କୃଷ୍ଣ ନାଗର ସୁରସେ ବୁଡ଼ିବ । ପଦ୍ମିନୀ ମୂଳ ତହିଁରେ ପଡ଼ିବ ।
ପରିପାକ ହେବ ହେ । ମଧୁର ପଥ୍ୟେ ଭୋଗ ହୋଇବ ।୧୬।

ପ୍ରେତଗ୍ରସ୍ତ ହୋଇଥିବ କି ଅବା । ତହିଁକି ଅଦ୍ଭୁତ ଉପାୟ ଦେବା ।
ରାମାୟ ନମଃ ଏ ମନ୍ତ୍ରର ସତ । ରସରେ ଜପିମ ଯେବେ ତା ଚିତ୍ତ ।
ଉଚ୍ଚରି ନିରତେ ହେ । ହରି ହେବେ ତାର ବିପଦ କେତେ ।୧୭।

ଏ ବୋଲେ ସଚେତ ହୋଇ ସୁମତି । ଏ ଉପାୟ ଶୁଣି ସନ୍ତୋଷ ଅତି ।
ଲାଜ ପୀରତି ବିବାଦ ପଡ଼ିଲା । ସୁକଣ୍ଠୀ ଉତ୍କଣ୍ଠିତା ବଢ଼ିଗଲା ।
ବୋଇଲେ ସଖୀକି ଯେ । ମୋ ହିତ ଆଶ ବହୁତ ଭାବିକି ।୧୮।

ଶୁଣି ଗୁଣି କେ କେତେମତେ ବୋଧି । ଧୀର ଅଧୀର ହେବାର କି ବିଧି ।
ଯେ ବିଧି ଔଷଧି ସିଦ୍ଧିକି କର । କହୁ ମେଳକୁଣି ବହିରଙ୍ଗୀବାର ।
ଅନ୍ତରଙ୍ଗୀ ଗୃହିଁ ହେ । ଅତୁର ଚିର ଜନନ୍ତ୍ର ମୂନ୍ୟହିଁ ।୧୯।

୧୯-୧—ଶୁଣି ପୁଣି କେ—ଛ, ଝ ବ୍ୟତୀତ ସମସ୍ତ ପୋଥିରେ
୧୯-୪—ବହିରଙ୍ଗ କ, ଖ, ଗ, ଘ, ଚ; ଅନ୍ତରଙ୍ଗ ଗୃହିଁ ଛ, ଜ, ଝ ବ୍ୟତୀତ ସମସ୍ତ ପୋଥିରେ

---

୧୬ । ଦେହଦାହ ଦୁଃଖ—ଦେହର ତାପ ହେତୁକ କଷ୍ଟ ଓ କନ୍ଦର୍ପ ଜନିତ କ୍ଲେଶକୁ ରସାନନ୍ଦ ପାଚନ— ରସାନନ୍ଦ ବା ( ରସାୟନ ) ନାମକ ରୋଗନିବାରକ ପାଚନ ଓ ରସଜନିତ ଆନନ୍ଦ ପରିପାକ । କୃଷ୍ଣ ନାଗର ସୁରସେ—ମରିଚ ଶୁଣ୍ଠି ଉତ୍ତମ ଜଳରେ ବା ଶ୍ରୀକୃଷ୍ଣ ରୂପକ ବିଳାସୀଙ୍କ ଉତ୍ତମ ରସ ଯୋଗରେ । ପଦ୍ମିନୀ ମୂଳ—ପଦ୍ମ ଲତାର ମୂଳ ବା ପଦ୍ମିନୀ ଜାତୀୟା ଶ୍ରୀରାଧା ନିଜେ । ପରିପାକ—ସିଦ୍ଧ, ପରିଣତ । ମଧୁର—ମହୁର ଓ ମଧୁମଙ୍ଗଳ । ପଥ୍ୟରେ—ସହାୟତାରେ । ଭୋଗ ହୋଇବ—ଭକ୍ଷଣ ବା ସମ୍ଭୋଗ ହେବ ।

୧୭ । ଭୂତଗ୍ରସ୍ତ—ପ୍ରେତାବିଷ୍ଟ ଓ ମୃତ କନ୍ଦର୍ପ ଦ୍ୱାରା ଆବିଷ୍ଟ । ଅଦ୍ଭୁତ ଉପାୟ—ଉଚିତ ବିଧାନ । ରାମାୟନମଃ—ଏ ମନ୍ତ୍ର, ସତ—ନିଶ୍ଚୟରେ । ରସରେ—ଆଗ୍ରହରେ ଓ ଅନୁରାଗରେ । ନିରତେ—ସର୍ବଦା । ହରିହେବେ—ହରଣ ହୋଇଯିବେ । ତାର ବା ବିପଦ କେତେ—ବିପଦମାନେ କେତେ ମାତ୍ର । ହରି —କୃଷ୍ଣ ତାର ହେବେ; ବିପଦ କେତେ ମାତ୍ର ।

୧୮ । ସୁକଣ୍ଠୀ—ସୁନ୍ଦର କଣ୍ଠବତୀ ରାଧାର । ଉତ୍କଣ୍ଠିତା—ଶୀଘ୍ର ଉତ୍କଣ୍ଠା ବଢ଼ିଲା, ଲଜ୍ଜା ଗୁଣା ପଡ଼ିଗଲା । ଲଜ୍ଜା ଓ ପ୍ରୀତି ମଧ୍ୟରେ ବିବାଦ ତହୁଁ ହେଲା ।

୧୯ । ଶୁଣି ଗୁଣି—ଗୁଣୀ—ଗୁଣବତୀ ରାଧାଙ୍କ ବଚନ ଶୁଣିବା ଶୁଣି ଓ ମନରେ ସ୍ମରି, କେ—କେଉଁ ସଖୀମାନେ, କେତେ ପ୍ରକାରେ ବୋଧ କରାଇଲେ ।

Digitized by srujanika@gmail.com

ମିଥୁନ କାଳ ହେବାର ଦେଖିଲି । ରୁଚିର ଘନଶ୍ୟାମ ତ ଆସିଲି ।
ଚନ୍ଦ୍ରକ ଉଲ୍ଲାସ ବିଶଦ ପ୍ରଭା । ହରିତାମ୍ବର ଅଚ୍ଛାଦନେ ଶୋଭା ।
ଘନରସବନ୍ତ ହେ । ଆନନ୍ଦ କଦମ୍ବ ସୁମନ ସତ । ୨୦ ।
କେ କି ବେନି ମନେ ସଖୀଏ ତର୍କେ । ପ୍ରତି ଉତ୍ତର କରନ୍ତି ତନ୍ୱଙ୍ଗୀ ।
ଜଣିମୁଖ ଶଶୀ ଉଦୟକାଳ । ଘନ ବୋଲିବାର ଭ୍ରମ କେବଳ ।
କଶୋଭା ବଚନ ଗୋ । ରୁଚିର ପୁଷ୍କର କଳିତ ଘେନ । ୨୧ ।
ମଜନୀ ଭୂଷିଲ ସେ ତ ଗଗନ । ମଦନଜନକ ଧନୀ ବଚନ ।
ମିତ ଉତ୍ତର ସେ କାଳ ନୋହେ କି । ଧନୀ ବୋଲେ ରସାମୃତଦାମିନୀ ।
ବୋଇଲି ମିତଣୀ ଗୋ । ଚନ୍ଦ୍ରରେ ନାହିଁ କି ତେମନ୍ତ ଅଣି । ୨୨ ।

୨୧-୨ କହନ୍ତି ତନ୍ୱଙ୍ଗୀ କ, ଗ, ଘ, ଚ, ଝ, ଠ

---

ଧୀର—ପଣ୍ଡିତା ବା ସ୍ଥିର ହୋଇ ଅଧୀର—ଅଧୈର୍ଯ୍ୟବନ୍ତ । ହେବାର କି ବାର୍ଥ—ଉଚିତ ନୁହେଁ । ଯେ ବାର୍ଥ ଅପଥ୍ୟ ସିଦ୍ଧିକି କର—ଏ ବାର୍ଥାନକୁ ଯେ ପ୍ରତୀକାର ତାକୁ ନାର୍ଥ୍ୟସୁ କର । ଏପର କଣ୍ଠ—କଣ୍ଠରଙ୍ଗୀବାର—କାହାକୁଅ ସଖୀସବୁ, ମେଲାଣି—ଗୁଲଗଲେ । ଅନ୍ତରଙ୍ଗୀ—ଅନ୍ତରଙ୍ଗ । ଭ ନଜର ବାସ୍ୟସ୍ତ ସଖୀମାନେ, ସୁମୁହାଁ—ରାଧା । ଆକୁଳ ଗିର—ବ୍ୟାକୁଳ ବଚନ ।

୨୦ । ମିଥୁନକାଳ—ଅଷାଢ଼ ମାସ, ସମ୍ଭୋଗ ସମୟ । ରୁଚିର—ସୁନ୍ଦର । ଘନଶ୍ୟାମ—କାଳିଆ ମେଘ, ଶ୍ରୀକୃଷ୍ଣ । ଚନ୍ଦ୍ରକ—ମୟୂର ଓ ମୟୂର ଚନ୍ଦ୍ରିକାଧାରୀ ଶ୍ରୀକୃଷ୍ଣ । ଉଲ୍ଲାସ—ଆନନ୍ଦ । ବିଶଦ ପ୍ରଭା—ବିବିଧ କାନ୍ତିଯୁକ୍ତ ଓ ଆଶ୍ଚର୍ଯ୍ୟଜନକ ଦୀପ୍ତିମନ୍ତ । ହରିତାମ୍ବର ଅଚ୍ଛାଦନେ ଶୋଭା—ଦିଗ ଓ ଆକାଶକୁ ଆବରଣ କରେ ଶୋଭାବନ୍ତ ଓ ହଳଦିଆ ପାଟ ପରିଧାନରେ ଶୋଭାଯୁକ୍ତ । ଘନ ରସବନ୍ତ—ମେଘ-ଜଳଯୁକ୍ତ; ବର୍ଷାକରେ ଓ ଗାଢ଼ ରସପୂର୍ଣ୍ଣ । ଆନନ୍ଦ କଦମ୍ବ ସୁମନ—ପ୍ରଫୁଲ୍ଲ କଦମ୍ବ ପୁଷ୍ପ ଓ ଆନନ୍ଦ ସମୂହଯୁକ୍ତ ମନ । ସତ—ଏହା ଧ୍ରୁବ, ନିଶ୍ଚୟ ।

୨୧ । ସଖୀଏ—ସଖୀମାନେ, ମନେ—ଚିତ୍ତରେ, ଘେନ—ଗ୍ରହଣ କର ଅର୍ଥାତ୍ ବିଗ୍ଭର, କେ—କେଉଁମାନେ କି ତର୍କି—କଣ ତର୍କଣା କଲେ । ତନ୍ୱଙ୍ଗୀ—ରାଧାର ମିଥୁନକାଳ କଥାକୁ ଉତ୍ତର ଦଅନ୍ତି । ଜଣିମୁଖ—ସନ୍ଧ୍ୟାକାଳ । ଶଶୀ ଉଦୟ କାଳ—ଚନ୍ଦ୍ର ଉଦିଲା ବେଳ (କୃଷ୍ଣଚନ୍ଦ୍ର ଆସିବା ବେଳ) । ଘନ୍—ମେଘ (କୃଷ୍ଣ) । କଶୋଭା ବଚନ—ରାଧା କହିଲେ । ରୁଚିର ପୁଷ୍କର କଳିତ—ସୁନ୍ଦର ଜଳଧୃତ ଓ ସୁନ୍ଦର ପଦ୍ମଧୃତ; ଘେନ—ଗ୍ରହଣ କର ।

୨୨ । ସେ ତ—ଘନ; ଗଗନ—ଆକାଶରେ ଥାଏ । ମଦନଜନକ—କନ୍ଦର୍ପ ଉଦ୍ଦୀପକ, ଉଭୟ ପକ୍ଷରେ ସମାନ ବା ଶ୍ରୀକୃଷ୍ଣ ପକ୍ଷରେ କନ୍ଦର୍ପ ପିତା । ଧନୀ

Digitized by srujanika@gmail.com

ଧନ୍ୟା ଉଜ୍ଜ୍ୱଳ ବନ୍ଧୁବର ଯେବେ । ରାଧା ପ୍ରେମବଶ ହୁଅନ୍ତେ ତେବେ ।
ଉଜ୍ଜ୍ୱଳ ନିପୁଣ ବୋଲନ୍ତି କେହି । ସୁଖକର କାନ୍ତି ଦଶଇ ନାହିଁ ।
ରସାମୃତଦାନୀ ଗୋ । କି କର ବୋଲୁଛ ପ୍ରାଣସଜନୀ । ୨୩ ।

ଅନନ୍ତ ଗଗନଚନ୍ଦ୍ର କଳାନିଧି । ସର୍ବ ଶିରୋଧାର୍ଯ୍ୟ କରିଛି ବିଧି ।
ସକଳ ମଣ୍ଡନ ଲକ୍ଷଣଚନ୍ଦ୍ର । ପରମାନନ୍ଦ ସୁଖଦ ନୁହେ ତ ।
ଆହ୍ଲାଦକର ଟୋ । କେଉଁନାହିଁ ତ ଦୀନ ତାପହର । ୨୪ ।
ସୁମନାଚନ୍ଦ୍ର ନାମ ଅଛି ଯେଣୁ । ପଞ୍ଚକର ଯଶ ହେବ କି ତେଣୁ ।
ତମ ବିନାଶକ ବୋଲିବ କିଏ । ବିରାଜପଦମାନେ ତେଣୁ କର ।
ଏ ନୋହିଲେ ମିଛ ଗୋ । ହୃଦୟ ପୂରିଲା କି ଦେଇ ଛାପି ଛ । ୨୫ ।

୨୫—୪—ବିରାଜ ପଦମାନ କ, ଖ, ଗ;

---

ବଚନ—ରାଧା କହିଲେ । ସେ କାଳ ନୁହେଁ କି—ସେ ସମୟ ନୁହେଁ କି । ସେ କାଳ—କୃଷ୍ଣବର୍ଣ୍ଣ । ଧନ୍ୟା—ରାଧା । ରସାମୃତ ଦାନୀ—ଜଳରୂପକ ଅମୃତ ଦାତା ଓ ରସରୂପକ ଅମୃତଦାତା । ଚନ୍ଦ୍ରରେ—ବନ୍ଧୁରେ, ତେମନ୍ତ ଆଣି କି—ତେମନ୍ତ ଶୋଭା କା ଧର୍ମ (ରସାମୃତଦାନତ୍ୱ) ।

୨୩ । ବନ୍ଧୁବର—ଚନ୍ଦ୍ରପକ୍ଷ (ବା ଚନ୍ଦ୍ରଶ୍ରେଷ୍ଠ) ଓ ଶ୍ରୀକୃଷ୍ଣ ରୂପକ ପକ୍ଷ । ରାଧା—ଅନୁରାଧା ଓ ରାଧିକା । ଉଜ୍ଜ୍ୱଳ ନିପୁଣ—ଶୁକ୍ଳ ଗୁଣରେ ଶ୍ରେଷ୍ଠ; ଉଜ୍ଜ୍ୱଳ—ଶୃଙ୍ଗାର ରସରେ କୁଶଳ । କେହି—କପଟ ବା କେଉଁମାନେ । ସୁଖକର କାନ୍ତି—ସୁଖପ୍ରଦ କିରଣ ରୂପ ଯଶ ଓ ସୁଖଦାୟକ ଯଶ; ଦଶଇ ନାହିଁ—ଦେଖା ଯାଉନାହିଁ । (ସୁଖକର କାନ୍ତି—ସୁଖପ୍ରଦ ହସ୍ତଦ୍ୱାରା ଆଲିଙ୍ଗନ, ସ୍ତନ ଧାରଣାଦି ରୂପ କାର୍ଯ୍ୟକଳାପ ଜନିତ ଯଶ) ରସାମୃତଦାନୀ ଗୋ—ଅମୃତଦାନୀ ଓ ରସରୂପକ ଅମୃତଦାତା ।

୨୪ । ଅନନ୍ତ ଗଗନଚନ୍ଦ୍ର—ଆକାଶସ୍ଥ ଚନ୍ଦ୍ର; ଅନନ୍ତ ରହିତ ଓ ଗଗନଦାତା ବା ବାସୁକି ଶୟନକାରୀ ବା ଯାହାଙ୍କ ଗତି ବ୍ରହ୍ମାଦିଙ୍କ ଅଗୋଚର ଏପରି ଶ୍ରୀକୃଷ୍ଣ । କଳାନିଧି—ଷୋଳକଳାଯୁକ୍ତ ଚନ୍ଦ୍ର, ଚତୁଃଷଷ୍ଟିକଳାକୁଶଳ ଶ୍ରୀକୃଷ୍ଣ । ସର୍ବଶିରୋଧାର୍ଯ୍ୟ—ମହାଦେବଙ୍କ ମସ୍ତକସ୍ଥିତ ଚନ୍ଦ୍ର, ସମସ୍ତଙ୍କ ମାନନୀୟ ଶ୍ରୀକୃଷ୍ଣ, ସକଳମଣ୍ଡନ—ସମ୍ପୂର୍ଣ୍ଣ ଓ ଭୂଷଣକାରୀ ବା ସମସ୍ତ କଳାପୂର୍ଣ୍ଣ ଚନ୍ଦ୍ର, ସମସ୍ତଙ୍କର ଜୀବନ ସ୍ୱରୂପ ମଣ୍ଡନ ହୋଇଅଛନ୍ତି—ଶ୍ରୀକୃଷ୍ଣ । ଲକ୍ଷଣଚନ୍ଦ୍ର—କଳଙ୍କଯୁକ୍ତ ଚନ୍ଦ୍ର; ସର୍ବଲକ୍ଷଣ—ଶୁଭଲକ୍ଷଣ ଯୁକ୍ତ । ପରମାନନ୍ଦ ସୁଖଦ—ଉତ୍କୃଷ୍ଟ ଆନନ୍ଦ ଓ ସୁଖପ୍ରଦ ଚନ୍ଦ୍ର ଓ ପରମାନନ୍ଦ ସ୍ୱରୂପ ଭୂଷଣଯୁକ୍ତ ସୁଖପ୍ରଦ । ଆହ୍ଲାଦକର—ଶୀତଳ କିରଣ ବା ଆନନ୍ଦପ୍ରଦ ଚନ୍ଦ୍ର; ଭକ୍ତର ହୃଦୟରେ ପ୍ରେମାନନ୍ଦ ପୁଲକପ୍ରଦ । ଦୀନ ତାପହର—ଦିବସର ଉତ୍ତାପ ନିବାରକ ଓ ଦୁଃଖୀ ଦୁଃଖନାଶକ ।

୨୫ । ସୁମନାଚନ୍ଦ୍ର—ପୁଷ୍ପଚନ୍ଦ୍ର; ଚନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କି ଏକାବେଳେକେ ପୁଷ୍ପବନ୍ତ ବୋଲାଯାଏ । କୃଷ୍ଣପକ୍ଷରେ—ଉତ୍ତମ ମନଯୁକ୍ତ । ପଞ୍ଚକର ଯଶ—

Digitized by srujanika@gmail.com

ଅଳୀ ବୋଲେ ଯେବେ ହେଲେ ତପନ । ଶଙ୍କା ଶଙ୍କା ଛାଡ଼ି ପାଇଲେ ଘେନ
ରାଧା ଗିର ଆଜ୍ଞି ଆନ୍ଧି ନାୟକ । ପଦ୍ମିନୀ ମ୍ଲାନ କି ନୁହିଁ କଳଙ୍କ ।
ସଜନୀ ଭାରତୀ ଗୋ । କୁମୁଦ ମୁଦ କି କଷ ହୁଅନ୍ତି । ୨୭।
ରାଧା ବାଚକ ଉପୁର କଳଙ୍କେ । ହାସ ପ୍ରକାଶ ନୁହଇ କି ଲୋକେ ।
ସଖୀ ବୋଲେ ସେ କି ଘଟଇ ଉଦେ । ରାଧା ବୋଇଲେ ହୋଇଥିବ ଖେଦେ
ଲଜ କି ନ କରେ ଗୋ । ଇନ୍ଦ୍ର ଲୋକେ ମାନସଂଶ୍ରୟେ । ୨୮।

---

ସୂର୍ଯ୍ୟଖ୍ୟାଇ । ( ଚନ୍ଦ୍ରପକ୍ଷେ ) ପ୍ରକୃଷ୍ଟ ଭା—କାନ୍ତି ଓ କର—କିରଣ ଅଛି ଯାହାର ବା ପ୍ରକୃଷ୍ଟକାନ୍ତି କିରଣରେ ଯାହାର ବା ସୂର୍ଯ୍ୟଙ୍କ କିରଣ ତାପ ପର ଚନ୍ଦ୍ର କିରଣ ମଧ୍ୟ ହୋଇଛି । (ଶ୍ରୀକୃଷ୍ଣପକ୍ଷେ) ପ୍ରକୃଷ୍ଟଭା ଅର୍ଥାତ୍ ଶୋଭା କରରେ—ହସ୍ତରେ ଅଛି ଯାହାର ବା ପ୍ରକୃଷ୍ଟକାନ୍ତି । କ—ସୂର୍ଯ୍ୟ, ର—ଅଗ୍ନିରେ ଯାହାର ଏବଂ ଭୂତ ସବୁ ତେଜର ଆଧାର ଭୂତ । ତମ—ଅନ୍ଧକାର; ହର—ଚନ୍ଦ୍ର ଓ ସୂର୍ଯ୍ୟ; ତମ ଅଜ୍ଞାନ ବା ରାହୁ, ହର—ନଷ୍ଟ । ବିରାଜ—ପକ୍ଷିଶ୍ରେଷ୍ଠ; ସୂର୍ଯ୍ୟ ପକ୍ଷରେ ଅରୁଣ; ଶ୍ରୀକୃଷ୍ଣ ପକ୍ଷରେ ଗରୁଡ଼ । ଚନ୍ଦ୍ରପକ୍ଷେ ବି- ପାକ୍ଷିକ; ବ୍ରାହ୍ମଣ,ଦ୍ୱିଜ । ସେମାନଙ୍କ ରାଜା ବିରାଜ—ଦ୍ୱିଜରାଜ: ବ ଚନ୍ଦ୍ରମନ୍ତ । ପଦମାନେ—କଥାକୁ ମାନୁଅଛି ‧ବା ପାଦକୁ ସମ୍ମାନ କରେ ବା ପାଦରେ ଶୋଭାପାଏ । ପଦ—ନାମ, ସୂର୍ଯ୍ୟଙ୍କର ନାମ ମଧ୍ୟ ଅରୁଣ ବ ପଦ —କିରଣ । ସୂର୍ଯ୍ୟ ଅରୁଣ କିରଣ ଅଟନ୍ତି । ଚନ୍ଦ୍ରପକ୍ଷେ; ପଦ—ଲକ୍ଷ୍ମ, କଳଙ୍କ । ମାନେ—ଶୋଭାପାଏ । ହେ ମିତ ଏ ଚନ୍ଦ୍ର, ସୂର୍ଯ୍ୟ ନୋହିଲେ ହୃଦୟ ସୁଶୀତଳ—ପ୍ରସ୍ତୁତ୍ତ୍ୱ । କାହିଁକି—କି ହେତୁ, ତାପିତ—ସୂର୍ଯ୍ୟପର ମୋତେ ତାପ ହୁଏ ।

୨୭ । ଅଳୀ—ସଖୀ, ଯେବେ ଚନ୍ଦ୍ର । ତପନ—ସୂର୍ଯ୍ୟ । ଶଙ୍କା ଶଙ୍କା—କଳଙ୍କ ଶଙ୍କା ବା ଚିହ୍ନ ପରିତ୍ୟକ୍ତ କରି । ଘେନ—ମନେକର । ରାଧାଗିର—ରାଧା କହିଲେ । ନାୟକ—ପତି ଓ ସୂର୍ଯ୍ୟ; ପଦ୍ମିନୀ ଓ ପଦ୍ମଲତା ଓ ପଦ୍ମିନୀ କନ୍ୟା; ମ୍ଲାନ—ପଦ୍ମଲତାର ମୁଦ୍ରଣ ଓ ପଦ୍ମିନୀ ସ୍ତ୍ରୀର ଦୁଃଖ, କଳଙ୍କ—ଲାଞ୍ଛନ । ସଜନୀ ଭାରତୀ—ସଖୀ କହିଲେ । କୁମୁଦ—କୁତ୍ସିତ, ମୁଦ ଆନନ୍ଦ ଅଟେ ଯାହାର କହିଁ, ଅତଏବ ତାର ମୁଦ—ଆନନ୍ଦ କି କଷ—କେଉଁ ପର ହୁଅନ୍ତି ।

୨୮ । ରାଧାବାଚକ—ରାଧା କହିଲେ ଉପୁର କଳଙ୍କେ—ସୂର୍ଯ୍ୟ (ଶକୁନ୍ତ) ଲାଞ୍ଛିନା ହେବାରୁ, ଶଶ୍ କଳଂକିତ ହେଲେ, ହାସ—ବିକାଶ ଓ ହସିବା; ଲୋକରେ —ଜଗତରେ ହାସ ପ୍ରକାଶ ନୁହଇ କି ଅର୍ଥାତ୍ ସୂର୍ଯ୍ୟ କଳଙ୍କିତ ହେବାରୁ କୁମୁଦ ହସୁଛି । ସେ କି – ସେ ସୂର୍ଯ୍ୟ (କଳଙ୍କିତ) ଘଟରେ ଉଦୟ ହୁଏ କି ? ଖେଦେ—ଦୁଃଖ ହେବାରୁ ଉଦୟ ହୋଇଥିବ । ଲଜ କି ନ କରେ—ଲଜ୍ଜା

Digitized by srujanika@gmail.com

ଏପରି ଭାବୁଁ ଭାବୁଁ ନିଶି ଶେଷ । ବେଳକୁ ବେଳ କୃଶୋଷି ଅବଶ ।
ଗୁରୁଜନ ଭୟେ ନିଭ ବଢ଼ାଇ । କମଳଦଳ-ଶେଯେ ମଢ଼ଡ଼ାଇ ।
ସଜନୀ ଶୁଣିବ ଯେ । ହେଲେ ବିରହବ୍ୟାଧି-ଉପଗ୍ରସ୍ତ । ୨୮ ।
ଏହି ସମୟରେ ବୃନ୍ଦା ପ୍ରବେଶ । ଦେଖି କୃଶୋଷି ଉତ୍କଣ୍ଠେ ଉଲ୍ଲାସ ।
ସଂଳାପନ ପ୍ରେମବଳେ ଉଦିତ । ଭଗିଁ ଠାରୁ କି ନିମିତ୍ତେ ଆଗତ ।
କଲ ପ୍ରଶ୍ନୋତ୍ତର ଯେ । ସ୍ୱବନୁ ତୁମ୍ଭକୁ ଅସିବା ମୋର । ୨୯ ।
ବଢ଼ିଲା ଭାବ ଉତ୍କଣ୍ଠିତା ପ୍ରଶ୍ନ । ପ୍ରଥମା ଉକ୍ତି ଭଲେ ହୋଇ ଲଗ୍ନ ।
ବୃନ୍ଦାବନ ରୁଚି ମାଧବ ସେନ । କହ କେମନ୍ତେ ହୋଇଛି ସଜନୀ ।
ଦ୍ୱିତୀୟା କଥନ ଗୋ । ବସନ୍ତବାସେ କାନନ ରଞ୍ଜନ । ୩୦ ।
ପ୍ରଥମା କହେ ନାଗେଶ୍ୱର ଶ୍ରେଷ୍ଠ । ଦ୍ୱିତୀୟା କହେ କହେ ରୁଚୀ ନାଷ୍ଟ ।
ପ୍ରଥମା କହେ ଅଛି ନା କରୁଣା । ଦ୍ୱିତୀୟା କହେ ସୁମନା ପୂରୁଣା ।
ପ୍ରଥମା କଥନ ଯେ । ଅଣିଲ ନାହିଁ ମୋ ପାଇଁ କାହ୍ନୁ ତା ।୩୧ ।

---

ଭଣ କରି ନ ପାରେ । ବୃତ୍ର ବଧ ରୂପ ବ୍ରହ୍ମହତ୍ୟା ପାପ ହେତୁ ଲଜ୍ଜିତ ହୋଇ (କେତେକଙ୍କ ମତେ ଗୁରୁପତ୍ନୀ ହରଣ ହେତୁ ମହାମ୍ ଯୋନ ହେବାରୁ) ମାନସ ସରୋବରରେ ଲୁଚିଥିଲେ । ଏ ମୂର୍ଯ୍ୟ କଳଙ୍କିତ ହୋଇଥିବା ହେତୁ ସନ୍ଧ୍ୟରେ ଉଦିତ ହୋଇଥିବେ ।

୨୮ । କୃଶୋଷି—ରାଧା । ଅବଶ—ବିବଶା, ବିହ୍ୱଳା । ନିଭ—ନିତ୍ୟକର୍ମ ସ୍ନାନାଦି କ୍ରିୟା । କମଳଦଳ—ପଦ୍ମପତ୍ର । ବିରହ ବ୍ୟାଧି ଉପଗ୍ରସ୍ତ—ବିରହ ଜନିତ ରୋଗର ଶିକାରାକାଙ୍କ୍ଷୀ ହେଲେ ।

୨୯ । ବୃନ୍ଦା—ବନଦେବୀ । "ବୃନ୍ଦା ବୃନ୍ଦାଟବୀ ଦେବୀ ମୁରଲ୍ୟାଦ୍ୟାସ୍ତୁ ଦୂତକାଃ । କୃଷ୍ଣାଦି ସଂଘଟ୍ଟକା ବୃକ୍ଷାୟୁର୍ବେଦକୋବିଦାଃ । ବଶୀକୃତଜ୍ଞାନବଶାଃ ଦ୍ୱୟୋଃ ସ୍ନେହେନ ନିର୍ଭରାଃ । ଗୌରାଙ୍ଗ୍ୟସ୍ତି ନିବସନା 'ବୃନ୍ଦାତାସୁ ବରୀୟସୀ ।" ଦୂତୀଶ୍ରେଷ୍ଠା । କୃଶୋଷି—ରାଧା; ଉତ୍କଣ୍ଠେ—ଉତ୍କଣ୍ଠାରେ, ଉଲ୍ଲାସ—ଆନନ୍ଦିତା, ପ୍ରେମବଳେ—ସ୍ନେହାଧିକ୍ୟରୁ । ସଂଳାପନ—କଥାବାର୍ତ୍ତା । ପ୍ରଶ୍ନୋତ୍ତର—ପଚାରିବାର ଉତ୍ତର । ସ୍ୱବନ—ନିଜ ବୃନ୍ଦାବନରୁ ।

୩୦ । ଭାବ ଉତ୍କଣ୍ଠିତା ପ୍ରଶ୍ନ—ଶ୍ରୀକୃଷ୍ଣଙ୍କ ପ୍ରେମ ବିଷୟରେ ଯେ ଉତ୍କଣ୍ଠା ତାର, ପ୍ରଶ୍ନ—ପ୍ରସ୍ତାବ । ପ୍ରଥମା—ରାଧା । ଲଗ୍ନ—ଆସକ୍ତା । ରୁଚି—ସୁନ୍ଦର । ମାଧବ—ବସନ୍ତ ଓ ଶ୍ରୀକୃଷ୍ଣ । ଦ୍ୱିତୀୟା—ବୃନ୍ଦା । ବସନ୍ତବାସେ—ବସନ୍ତଋତୁ ଥିବା ଯୋଗୁଁ; ପୀତାମ୍ବର—କୃଷ୍ଣଙ୍କ ଯୋଗୁଁ । କାନନ—ବନ । ରଞ୍ଜନ—ଶୋଭାଯୁକ୍ତ ।

୩୧ । ପ୍ରଥମା—ରାଧା । ନାଗେଶ୍ୱର—ନାଗକେଶର ଗଛ ଓ ଲମ୍ପଟ ଶ୍ରେଷ୍ଠ, କପଟୀ ବା କୁଚକ୍ରୀ ଶ୍ରେଷ୍ଠ ବା ନାଗ—କାଳୀୟ, ତାହାର ଈଶ୍ୱର ଅର୍ଥାତ୍

Digitized by srujanika@gmail.com

ହିଂସାସ୍ପୃ କହେ କେତକର କଥା । ମଧୁସୂଦନ ଅସଙ୍ଗ ବ୍ୟବସ୍ଥା ।
ସଖୀ ଅଛନ୍ତି ଯହିଁ ମାଳ ମାଳ । ସୁପର୍ଣ୍ଣାଳିବନ୍ତ ବିଟପୀଜାଳ ।
ଦକ୍ଷିଣାଚରଣ ଯେ । ବସନ୍ତବାସ ସୁମନା ହରଣ । ୩୨ ।
ମାଧବୀ ସୁମନା ମୋହଇ ମଣ୍ଡ । ପୁନ୍ନାଗ ବେଷ୍ଟନେ ଲୁଚର ଅଣ୍ଡ ।
ସୁନାସ୍ପ ସୁମନାବନ୍ତ ନୋହିଲେ । ନୂତନା ଦାସୀଏ ତାଙ୍କୁ ହସିଲେ ।
ସତ ଶତଭୀରୁ ଗୋ । ବନ୍ଧୁଜୀବ କାଞ୍ଚଣୀରେ ତ ଗୃହ୍ନ । ୩୩ ।

୩୧-୨—ଭୃଙ୍ଗନାଠ ଛ, ଝ ବ୍ୟତୀତ ସମସ୍ତ ପୋଥିରେ ୩୨-୨—ମଧୁସୂଦନ ତା ସଙ୍ଗ କ, ଟ, ଠ । ୩୨-୬—ବସନ୍ତ ସୁମନା ବାସହରଣ ଛ, ଝ ବ୍ୟତୀତ ସମସ୍ତ ପୋଥିରେ । ୩୩-୩—ସୁମନାବନ୍ତ ଛ, ଝ

---

ନନ୍ଦାମଦ 'ଶ୍ରୀକୃଷ୍ଣ । ଧୃଷ୍ଟ—ପ୍ରଶ୍ନୁଟିତ ଓ ବ୍ୟକ୍ତି । ଭୃଙ୍ଗୀ—ଭ୍ରମରୀ ଓ କାମୁକୀ ସ୍ତ୍ରୀ (ରାଧା) । କରୁଣା—ବୃକ୍ଷ ବିଶେଷ ଓ ଦୟା । ସୁମନା ପ୍ରଫୁଲ୍ଲା—ଫୁଲ ଫୁଟିଛି ଓ ଉତ୍ତମ ମନର ପ୍ରସନ୍ନତା (କୃଷ୍ଣ ତୋ ପ୍ରତି ପ୍ରଫୁଲ୍ଲ ମନା) । ମୋ ପାଇଁ କାନ୍ତି ତ—କାନ୍ତି ଫୁଲ ଓ ଖବର ବା ପଦାର୍ଥ ଆଣିଲା ନାହିଁ ।

୩୨ । କେତକର କଥା—କେତକୀ ଫୁଲର ଓ ଅଳକର । ମଧୁସୂଦନ ଅସଙ୍ଗ ବ୍ୟବସ୍ଥା—ଭ୍ରମରର କେତକୀ ଫୁଲ ସନ୍ନିକଟରେ ସଙ୍ଗ ହେବା ସମ୍ଭବ ନାହିଁ ଓ ଶ୍ରୀକୃଷ୍ଣଙ୍କ ସଂସର୍ଗ ନ ହେବା ବିଷୟ । ମାଳମାଳ—ଅନେକ; ବା ମାଳମାଳରେ—ବନ ସମୂହରେ । ସୁପର୍ଣ୍ଣାବଳୀ ବିଟପୀବନ୍ତ—ସୁନ୍ଦର ପତ୍ରସମୂହ ଯୁକ୍ତ ବୃକ୍ଷସମୂହ ଓ ଉତ୍ତମ ପର୍ଣ୍ଣାବଳୀ (ପତ୍ର ରଚନା) ଯୁକ୍ତ ବ୍ୟଭିଚାରିଣୀ ବା ପରକୀୟା ସ୍ତ୍ରୀସମୂହ । ଦକ୍ଷିଣାଚରଣ—ଦକ୍ଷିଣା ବାୟୁର କୃତ୍ୟ ବା ସଞ୍ଚାର ଓ ଦକ୍ଷିଣ ନାୟକର ସ୍ୱଭାବ—ଅନେକ ସ୍ତ୍ରୀଙ୍କ ଠାରେ ସମାନ ସ୍ନେହ । ବସନ୍ତ ବାସ ସୁମନା ହରଣ—ବସନ୍ତ, ଦକ୍ଷିଣା ପବନର କ୍ରୀଡ଼ା ଓ ପୁଷ୍ପର ଆହରଣ—ସୌରଭ ବା ବସନ୍ତକାଳୀନ ସୁଗନ୍ଧ ପୁଷ୍ପ ସୌରଭ ବା ସଂଗ୍ରହିବା ଓ ବସନ୍ତବାସ—ହଳଦିଆ ପାଟ ପିନ୍ଧିଥିବା ଶ୍ରୀକୃଷ୍ଣଙ୍କ ଦ୍ୱାରା, ସୁମନା—ସୁନ୍ଦରୀ ସ୍ତ୍ରୀଙ୍କ ହରଣ ଅଳକେ ହେବ । (ବସନ୍ତ ଶାଢ଼ୀ ପିନ୍ଧା ସ୍ତ୍ରୀଙ୍କ ହରଣ ବା ସ୍ତ୍ରୀମାନଙ୍କ ବସନ୍ତଶାଢ଼ୀ ହରଣ) ।

୩୩ । ମାଧବୀ ସୁମନା ମୋହଇ ମଣ୍ଡ—ମାଧବୀ ଫୁଲ ବା ମାଧବୀ ଓ ମାଳତୀ ଲୋକଙ୍କ ମନକୁ ମୋହନ କରେ ଓ ମାଧବଙ୍କ ପତ୍ନୀ ରାଧା; ସୁମନା ସ୍ତ୍ରୀ ମନକୁ ମୋହିତ କରେ । ପୁନ୍ନାଗ ବେଷ୍ଟନେ—ପୁନ୍ନାଗ ଗଛରେ ମାଡ଼ିଥିବା ଓ ପୁରୁଷ ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନରେ । ଅଣ୍ଡ ଲୁଚର—ଅତି ସୁନ୍ଦର । ସୁନାସ୍ପ ସୁମନାବନ୍ତ—ସୁନାସ୍ପୀ ଫୁଲଗଛ—ଫୁଲଯୁକ୍ତ, ସୁନ୍ଦରୀ ବା ଉତ୍ତମା ସ୍ତ୍ରୀ, ହୃଷ୍ଟମନା, ରସ ହୃଦୟା (ବା ପୁଷ୍ପବତୀ) । ସୁନାସ୍ପ ବସନ୍ତରେ ଫୁଟିବା କବି ସମୟ ପ୍ରସିଦ୍ଧ । ନୂତନା ଦାସୀଏ

ପ୍ରଥମା ନ ଅର୍ଥ ସ୍ୱାର୍ଥ କର । ଅଣ ନଗଣ ଭ୍ରମେ ଋଜୁ ଧର ।
ବାରିପାରିଲେ ନାହିଁ ପ୍ରେମ ଲୋଭ । କୁଟିଳ ପ୍ରୀତି ସ୍ୱାତିକ ଦୁର୍ଲ୍ଲଭ ।
ନନ୍ଦ ସହଚରୀ ଗୋ । ଗୋବର୍ଦ୍ଧନଙ୍କୁ ଦେଖିବା କି କର । ୩୪ ।
ବେଣୁ ଶୋଭିର ଶୃଙ୍ଗ ବେଧକରେ । କି ଶୋଭା ଦିଶୁଥିବ ଏ କାଳରେ ।
ନିର୍ଝରା ନହେ ସୁଶୀଳାରେ ଘନ । ବିଟପୀବ୍ରତତୀ ସେନ ସୁମନ ।
ମଧୁପରେ ବସି ଗୋ । ହେଲେ ତନୁ ଭୋଗଦାନାଭିଳାଷୀ । ୩୫ ।

୩୪-୨—ଅଣନଗଣ ଭ୍ରମ ରୁପଧର, ଝ, ଠ, ଅସ ନଗଣ ଭ୍ରମେ ରୂପଧର କ, ଖ, ଗ, ଘ, ଚ । ୩୫-୧—ବେଣୁ ଶୋଭିତ ଛ, ଜ, ଝ, ବ୍ୟତୀତ ସମସ୍ତ ପୋଥିରେ । ୩୫-୪—ବିଟପୀ ତତି ତ ସେନ ସୁମନ କ, ବିଟପୀ ତତିତ ସେନ ଶୋଭନକ ।

---

—ନୂଆ ଦାସକେରଣ୍ଡା ଗଛସବୁ ଓ ନୂଆ ଦାସୀମାନେ । ହସିଲେ—ଫୁଟିଲେ ଓ ଉପହାସ କଲେ (ତୁମ୍ଭେମାନେ କିଛି ନୁହଁ, ବସନ୍ତ କାଳରେ କୃଷ୍ଣରୂପ ପୁରୁଷକୁ ଭୋଗ କରୁନାହଁ ଏହା କହି ଟୋକା ଦାସୀ ସବୁ ଉପହାସ କଲେ ) । ସତ ଶତଙ୍କୁରୁ—ନଶ୍ବର ମଲ୍ଲୀ ଫୁଲ ଓ ଅସଂଖ୍ୟ ସ୍ତ୍ରୀ; ବା ଶତ ଶତଙ୍କୁରୁ—ଅସଂଖ୍ୟ ମଲ୍ଲୀଫୁଲ, ଅସଂଖ୍ୟ ଅସଂଖ୍ୟ ସ୍ତ୍ରୀ । ବନ୍ଧୁଜୀବ ରଙ୍ଗଣୀରେ—ବନ୍ଧୁକ ଫୁଲ ଓ ରଙ୍ଗଣୀ ଫୁଲରେ ଓ ବନ୍ଧୁଜୀବ ଜୀବର ବନ୍ଧୁ ଶ୍ରୀକୃଷ୍ଣଙ୍କ ରଞ୍ଜନକାରିଣୀ ଲୀଳାରେ, ଗୁରୁ—ସୁନ୍ଦର ।

୩୪ । ପ୍ରଥମା—ରାଧା; ଋଜୁ ଧର—ସରଳତା ଅବଲମ୍ବନ ପୂର୍ବକ, ଭ୍ରମେ—ଭ୍ରମରେ, ଅଣ କୃଷ୍ଣ ପ୍ରାପ୍ତି ବାଞ୍ଛା, ନଗଣ—ବିଫଳ ହେତୁ, ନଅର୍ଥ—ଦୂର ହୁଇ ଅର୍ଥକୁ, ସ୍ୱାର୍ଥ—ବୃଥାକର ସ୍ୱବ, ପ୍ରେମ ଲୋଭ ବାର ପାରିଲେ ନାହିଁ—ଜାଣି ପାରିଲେ ନାହିଁ । ବା ଭ୍ରମେ—ଭୁଲରେ, ଋଜୁ ଧର—ସରଳତାରେ, ନଅର୍ଥ ସ୍ୱାର୍ଥ କର, ଅଣ ନଗଣ ହେଲେହେଁ ପ୍ରେମଲୋଭ ବାର ପାରିଲେ ନାହିଁ—ଛାଡ଼ି ପାରିଲେ ନାହିଁ । କୁଟିଳ—କୁଟିଳତା, ପ୍ରୀତି ସ୍ୱାତିକୁ—ପ୍ରୀତି ପ୍ରକାରରେ ଦୁର୍ଲ୍ଲଭ ଅଟେ—ପ୍ରୀତି ସରଳ ସ୍ୱବକୁ ଜନ୍ମାଏ ବା କୁଟିଳ ପ୍ରୀତି—କୃଷ୍ଣଙ୍କ ଅନୁରାଗ, ସ୍ୱାତିକ—ବ୍ୟବହାର, ଦୁର୍ଲ୍ଲଭ—ଦୁଃଖରେ ପାଇବାକୁ ହୁଏ । ସହଚରୀ—ବୃନ୍ଦେ । ନନ୍ଦ ଗୋବର୍ଦ୍ଧନକୁ—ପର୍ବତ ବିଶେଷକୁ, ଶ୍ରୀକୃଷ୍ଣଙ୍କୁ ।

୩୫ । ବେଣୁ ଶୋଭିର ଶୃଙ୍ଗ ବେଧ କରେ—ପର୍ବତ ପକ୍ଷେ:—ବାଉଁଶ, ଶୋଭିର—ଲତାବିଶେଷପୂର୍ଣ୍ଣ ପର୍ବତ ଶିଖର ଓ ବେତରେ, ଏ କାଳରେ—ଏ ବସନ୍ତକାଳରେ; କୃଷ୍ଣପକ୍ଷେ :—ବେଣୁ, ବନମହିଷର ଶୃଙ୍ଗରେ ନିର୍ମିତ ଶିଙ୍ଗା ( "ଶୃଙ୍ଗନ୍ତୁ ଶବଳହେମ ନିବଦ୍ଧାଗ୍ର ପଶ୍ଚିମଂ । ରତ୍ନଜାଲ ସ୍ଫୁରନ୍ମଧ୍ୟଂ ମନ୍ଦଘୋଷବିଧଂ ସ୍ମୃତମ୍") । ବେତ ହାତରେ । ସୁଶୀଳାରେ ଘନ—ଭଲ ପଥରମାନଙ୍କ ଦ୍ୱାରା ନିବିଡ଼ ଓ ସୁଶୀଳା ସ୍ତ୍ରୀମାନଙ୍କ ଦ୍ୱାରା ବେଷ୍ଟିତ । ବିଟପୀ ବ୍ରତତୀ—ବୃକ୍ଷ ଲତା

Digitized by srujanika@gmail.com

ରାଧା ବାଣୀ ରାମ ମଧୁ ମାଧବ । ସଙ୍ଗ ଭଙ୍ଗ ରଙ୍ଗ କି କର ହେବ ।
ବୃନ୍ଦା କହେ ରାମ ବହୁବଚନ । ମଧୁ ଷଷ୍ଠୀ ଅର୍ଥେ ହେଲ ରଞ୍ଜନ ।
ମାଧବ ମାଧବୀ ଗୋ । ବସନ୍ତବାସ ସମ୍ଭୋଗେ ବିଭବୀ । ୩୬ ।

ରସାଳସା ଦଶା ଶ୍ରବଣେ ବୃନ୍ଦି । ହା ହା କହୁଁ କଣ୍ଠ ହୋଇଲା ରୁନ୍ଧ ।
କୃଷ୍ଣ ପ୍ରେମ ପ୍ରାପ୍ତି ଆଶାଭଙ୍ଗରେ । କ୍ଷଣକୁ କ୍ଷଣ ପ୍ରେମତରଙ୍ଗରେ ।
ବୁଡ଼ିଲ ଉଠିଲ ଗୋ । ବିଭ୍ରମ ହେଲା କୁଳାଶା ଛଡ଼ାଇ । ୩୭ ।

---

ବ୍ୟଭିଚାରିଣୀ ପରକୀୟାଙ୍କର ବସ୍ତ୍ରରେ, ସମ୍ବନ୍ଧରେ । ବିଟପୀତଟ—ବୃକ୍ଷ ସମ୍ବନ୍ଧ ଓ ପରକୀୟା ସ୍ତ୍ରୀ ସମ୍ବନ୍ଧ । ସୁମନ—ଫୁଲ ଓ ପ୍ରସନ୍ନ ମନ । ମଧୁପରେ—ଭ୍ରମରଠାରେ ଓ ଶ୍ରୀକୃଷ୍ଣଙ୍କଠାରେ ତନୁ ବେଗଦାନାଭିଲାଷୀ—ଅଳ୍ପ ବେଗ ଦେବାକୁ ଅଭିଲାଷୀ ଓ ଶରୀର ସମ୍ଭୋଗ ଦାନରେ ଅଭିଲାଷୀ । ବେଣୁ ଶୋଭିତ ଶୃଙ୍ଗ ବେଦକରେ—ଏହି ପାଠ ମଧ୍ୟ ଗ୍ରହଣ କରାଯାଇପାରେ; ଅର୍ଥ ସୁଗମ ।

୩୬ । ରାଧା ବାଣୀ—ରାଧା କହିଲେ । ରାମ ମଧୁମାଧବ—ରମଣୀୟ ମଧୁଯୁକ୍ତ ବସନ୍ତ ବା ରମଣୀୟ ଚୈତ୍ର ଓ ବୈଶାଖ ମାସ (ବସନ୍ତକାଳ) ଓ ବଳରାମ, ମଧୁମଙ୍ଗଳ ଓ ଶ୍ରୀକୃଷ୍ଣ । ସଙ୍ଗଭଙ୍ଗରଙ୍ଗ—ସଂସର୍ଗ ଭାଙ୍ଗିବା ପ୍ରକାର; ଚୈତ୍ର ଓ ବୈଶାଖ ଦୁହେଁ ବସନ୍ତ କାଳ, କେହି କାହାକୁ ଛାଡ଼ି ରହନ୍ତି ନାହିଁ, ପୂର୍ବ ପର ହୋଇଥାନ୍ତି; ବଳରାମ ଓ ମଧୁମଙ୍ଗଳଙ୍କର ସଙ୍ଗ ଭଙ୍ଗରେ, ରଙ୍ଗ—କ୍ରୀଡ଼ା, କପଟ ହେବ । ରାମ ବହୁବଚନରେ ରାମା—ସ୍ତ୍ରୀ । ମଧୁଷଷ୍ଠୀ ଅର୍ଥରେ—ମଧୁରରେ, ମଧୁର ରସରେ, ଶୃଙ୍ଗାର ରସରେ; ହେଲ ରଞ୍ଜନ—ଅନୁରାଗ, ସ୍ନେହ । ମାଧବ ମାଧବୀ—ବସନ୍ତର ମାଧବୀ ଲତା, ବାସନ୍ତୀ ଲତା ଓ ଶ୍ରୀକୃଷ୍ଣ ରାଧାଦି ନାୟିକା । ବସନ୍ତବାସ ସମ୍ଭୋଗେ—ବସନ୍ତକାଳୀନ ସୁବାସ ଭୋଗରେ ଓ ବସନ୍ତର ଅବସ୍ଥିତି ହେତୁକ ସୁରତରେ । ବିଭବୀ—ଐଶ୍ୱର୍ଯ୍ୟଶାଳୀ (ବା ଅନୁଭବୀ) ହେଲେ ।

୩୭ । ରସାଳସା ଦଶା—ରସିକଜୀ ରାଧାଙ୍କ ଅବସ୍ଥା ଶ୍ରବଣେ, ବୃନ୍ଦି—ଶୁଣିବାରେ ବିରହ ଦଶା ବଢ଼ିଲା । କୃଷ୍ଣପ୍ରେମ ପ୍ରାପ୍ତି ଆଶ ଭଙ୍ଗରେ—ଶ୍ରୀକୃଷ୍ଣଙ୍କ ପ୍ରଣୟ ପାଇବା ଆଶା ତୁଟିଯିବାରେ । ପ୍ରେମତରଙ୍ଗରେ—ସ୍ନେହ ତେଜରେ ବୁଡ଼ିଉଠି ଅର୍ଥାତ୍ ମୋହ ହୋଇ ଓ ଚେତାପାଇ;- ବିଭ୍ରମ—ବିଳାସ, ଭ୍ରାନ୍ତି, ବାତୁଳତା, କୁଳାଶା ଛଡ଼ାଇଦେଲା—କୁଳରେ ରହିବା ଆଶା ମନରୁ ଛଡ଼ାଇଦେଲା—ସେ ବାଇଆଣୀ ହେଲା ।

Digitized by srujanika@gmail.com

ପରାପର ଲୋକ ଯେତେକ ଥିଲେ । ବହୁତ ଦ୍ୱନ୍ଦଭାବରେ ସେନିଲେ ।
ମିଳ ପୂର୍ଣ୍ଣମାସୀ କଲେ ବଞ୍ଚନା । ବୋଇଲେ ଦିବ୍ୟ ଉନ୍ମାଦ ବ୍ୟାଧିନା ।
ସୁଘନ ନବାଙ୍ଗ ରେ । ସମ୍ଭୋଗ ଯୋଗରେ ଏ ରୋଗଭଙ୍ଗ ॥
ଏତେ କହି ଶଠେ ସୁଦର୍ପା ବନ୍ଧୁ । ବଟି ଜଟିଳା ପାଶେ ଯାଇ କହୁ ।
ସାଧୁ ବଧୂ ସବୁଅଛୁ ହେଳାରେ । ସୂର୍ଯ୍ୟପୂଜନ ବିଘ୍ନ କରିବାରେ ।
କାମ ପୂର୍ଣ୍ଣ ହେଉ ଗୋ । ହର ହରିବ ରାଧାଦୁଃଖ ଯାଉ ।୩୯।
ଶୁଣି ଗୁଣି ବୃଦ୍ଧୀ ହୃଷ୍ଟ ହୋଇଲା । ମୁଦରେ କୁନ୍ଦଲତାକୁ ବୋଇଲା ।
ରାଧା ସାଧାରଣ ଶୋଭା ନୁହଇ । ସୁର ଅସୁର ମୋହ ତ ପାଇଲେ ।
ଶଙ୍କା ଏବା ଏହୁ ରେ! । ଭାନୁ ଭାନୁଜା ପୂଜି ଯିବ କେହୁ ।୪୦।

୩୯-୨—ବଟି ଜଟିଳାଆଗେ ଯାଇ କହୁ ଏ, ଜ ଟି ଜଟିଳା ଆ ଯେଇ କହୁ ବଂ ଜଟି ଜଟିଳା ପାଶେ ଚ ।

୩୮ । ପରାପର ଲୋକ—ପର ଆପଣା ବା ଇତର ଲୋକ । ବହୁତ—ଉଚିତକୁ ବା ବଧାତାକୁ ଦ୍ୱନ୍ଦ୍ୱ ଭାବରେ ସେନଲେ—ଦୁଇ ପ୍ରକାର ଅର୍ଥରେ ବା ପ୍ରତିକୂଳ ଭାବରେ ବର୍ଣ୍ଣିଲେ—(ବା କେତେକ ଦ୍ୱନ୍ଦ୍ୱ ଭାବରେ—ସ୍ତ୍ରୀ ପୁରୁଷ ସଂଯୋଗ ବୃଦ୍ଧିରେ ଏ ରୋଗ ବହୁତ—ଜାତ ହୋଇଛୁ ସେନଲେ) ପୌର୍ଣ୍ଣମାସୀ, ମିଳ—ଆସି । ବଞ୍ଚନା କଲେ—ଠକେଇ ଦେଲେ ଅର୍ଥାତ୍ ସୋଡ଼ାନ ପକାଇଲେ, ବ୍ୟାଧି ନା ରୋଗର ନାମ ; ଦିବ୍ୟ ଉନ୍ମାଦ—ଅଲୌକିକ ବା ଉତ୍କୃଷ୍ଟ ଚିତ୍ତ ବିଭ୍ରମ ବା ଦିବ୍ୟ ଉନ୍ମାଦ ବ୍ୟାଧି ନା—ଅଲୌକିକ ଉନ୍ମାଦ ଜନିତ ରୋଗ ଏହୁ ନା (ଅଟେ) ସୁଘନ ନବାଙ୍ଗ—ସୁସିଦ୍ଧ ବା ଉତ୍ତମ ବହଳ ନବାଙ୍ଗ—ଶୁଣ୍ଠୀ, ଶତେଇତା, ଗୁଳୁଚି, ମଥା ବା କଡ଼ପାଞ୍ଚ ମୂଳ ଏ ନବାଙ୍ଗ ପାଚନ, ସୁନ୍ଦର ମେଘତୁଲ୍ୟ ନୂତନ ଅଙ୍ଗ ଶ୍ରୀକୃଷ୍ଣ । ସମ୍ଭୋଗ ଯୋଗରେ—ସେବନ ହେତୁରୁ ଓ ସମ୍ଭୋଗ ହେତୁରୁ ।

୩୯ । ବଟି—ଠକ, କପଟ କରି କହି; ଜଟିଳା—ରାଧାଙ୍କ ଶାଶୁ । ସାଧୁବଧୂ—ଭଲ ସୁଧାର ବୋହୂ । କାମ—ଅଭିଳାଷ । ହର—ସୂର୍ଯ୍ୟ, କୃଷ୍ଣ ।

୪୦ । ମୁଦରେ – ଆନନ୍ଦରେ । କୁନ୍ଦଲତା—ରାଧାଙ୍କ ସଖୀ ବନବିଳାସରେ ସହାୟଭୂତା "କାନନାଦେଗତାଃ ସଖ୍ୟା ବୃନ୍ଦାକୁନ୍ଦଲତାଦ୍ୱୟଃ ।" ଭାନୁ—ସୂର୍ଯ୍ୟ । ଭାନୁଜା—ଯମୁନା । କେହୁ— କପଟ । 'ବା ଭାନୁଜା—ବୃଷଭାନୁଜା ରାଧା ଇତ୍ୟାଦ ।

Digitized by srujanika@gmail.com

ନନ୍ଦନନ୍ଦନ ମନ୍ଦଗୁଣମାନ । ଶୁଣି ଶୁଣି ଭସ୍ମ ହୋଇଲା ମନ ।
ସଙ୍ଗେ ରଙ୍ଗେ ତୁମ୍ଭେ ସେ ଯାଏ ଯାଅ । ରମ୍ୟ କାମବନେ ମିହ ପୂଜାଅ ।
ପଞ୍ଚବ୍ରତୀ ଯେଣୁ ଗୋ । ଚନ୍ଦ୍ରେ ପବନେ ଚୋରେ ମୋତେ ତେଣୁ ॥
ମିହ ଅମିହ ମାହା ମିହ ପୃଛ । ଏତେ ଚନ୍ଦ୍ରେ ମାନ ଥିବଟି ହେଙ୍କ ।
ନନ୍ଦନନ୍ଦନ ମନ୍ଦ ଗନ୍ଧ ଯେଣେ । ଆଉ ଥାଉ କଥା ନ ମିହ ତେଣେ
ଦ୍ଵିଜ ପୂଜନକୁ ଗୋ । ବାର ବରଷ ଶକ୍ତି ସଜ୍ଜନକୁ । ୪୨ ।
ଛନ୍ଦରେ କୁନ୍ଦଲତା କହେ ବାଣୀ । ଏ ବିଧି ଅବିଧି ମତେ କି ପୁଣି ।
ଅଜ୍ଞା ଅବଜ୍ଞା କରିବ କି କର । ନେଇ ସୂର୍ଯ୍ୟ ପୂଜାଇବ୍ ଚଣୋସ୍ତ ।
ଘନ ବନ ତେଣେ ଗୋ । ଦାସୀ ବୟସୀଏ ଥିବେ ଗହଣେ ।୪୩।
ଏମନ୍ତ ମତରେ କହୁଁ ଚତୁରା । ମିତ ଚନ୍ଦ୍ର ହେଲା ଶୁଣି ଅତୁରା ।
ବାନ୍ଧବ ସମ୍ପୃର ସମସ୍ତେ ଚଳଲେ । ରାଧା ବାଧା ଏବେ ମିହ ପାଇଲେ
ଗୁରୁ ଗୁରୁ ବେଶ ଗୋ । କରିବା ହରିବା ନେତ୍ର କଳୁଷ । ୪୪ ।

---

୪୧ । ନନ୍ଦନନ୍ଦନ—ଶ୍ରୀକୃଷ୍ଣ । ମନ୍ଦଗୁଣମାନ—ଅତି ସୁନ୍ଦରତାମାନଙ୍କ ଧର୍ଷଣ କାର୍ଯ୍ୟ । ରଙ୍ଗେ—କୌତୁକରେ । ସେ ଯାଏ—ମିହପୂଜା ସ୍ଥଳ ପର୍ଯ୍ୟନ୍ତ । ମିହ—ସୂର୍ଯ୍ୟ । ପଞ୍ଚବ୍ରତୀ—ରାଧାମତ । ଚନ୍ଦ୍ରେ......ତେଣୁ—ତୁମ୍ଭ ଅମ୍ଭର ମନ ବିଶ୍ୱାସ ।

୪୨ । ନନ୍ଦନନ୍ଦନ ମନ୍ଦ ଗନ୍ଧ ଯେଣେ—ଶ୍ରୀକୃଷ୍ଣଙ୍କ ମନ୍ଦବାସନା ବା ଶ୍ରୀକୃଷ୍ଣଙ୍କ ଖରାପ ସମ୍ବନ୍ଧ, ଯେଣେ—ଯେଉଁଠାରେ । ଦ୍ଵିଜ—ବ୍ରାହ୍ମଣ । ପୂଜନକୁ—ପୂଜା କରିବାକୁ । ବାର—ଶକ୍ତି । ସଜ୍ଜନକୁ—ଭଲ ଲୋକଙ୍କୁ ।

୪୩ । ଛନ୍ଦରେ—କପଟରେ । ଏ ବିଧି—ଏ ପ୍ରକାର, ଏ କଥା । ଅବିଧି—ଅନୁଚିତ । ଘନ—ନିବିଡ଼, ଘଞ୍ଚ । ଗହଣେ—ସଙ୍ଗରେ । ଦାସୀ—ଚୋଇଲୀ । ବୟସୀ—ସଖୀ ବା ସମବୟସ୍କା ଦାସୀମାନେ । ଘନବନ—ଶ୍ରୀକୃଷ୍ଣଙ୍କ ଅରଣ୍ୟ ଇତ୍ୟାଦ ଗୁହ୍ୟାର୍ଥ ଅର୍ଥରେ ।

୪୪ । ଚତୁରା—କୁନ୍ଦଲତା । ମିତ ଚନ୍ଦ୍ର......ଅତୁରା—ରାଧା ମନରେ ଉତ୍ସୁକା । ବାନ୍ଧବ ସମ୍ପୃର—ବାନ୍ଧବ ପ୍ରସ୍ତାବ । ଗୁରୁ ଗୁରୁବେଶ—ଅତି ସୁନ୍ଦର ବେଶ । ନେତ୍ରକଳୁଷ—ଆଖିର ପାପ ।

Digitized by srujanika@gmail.com

ତୋଷ ଧୀର ବେଶ ଲଚ୍ଛି ମିଳଣୀ । ହୃଦ ପ୍ରମୋଦ ଦେ କହୁଦ ପୁଣି ।
ଚନ୍ଦ୍ରେ ଚନ୍ଦ୍ର ଅଭୁମନ୍ୟୁ ଏକାଳ । ସତେ ଏହେ କି ବର୍ଣ୍ଣିବ ମଙ୍ଗଳ ।
ସଙ୍ଗୀ ଅଙ୍ଗୀକାରେ ହେ । ପଦଦ୍ୱନ୍ଦ ସେବା କରିବ ଥରେ । ୪୫ ।

---

## ଉପେନ୍ଦ୍ରଭଞ୍ଜ ଛାନ୍ଦ

## ବେଶ, ସୂର୍ଯ୍ୟପୂଜା ଆଗମନ

(ରାଗ – ବସନ୍ତୋତ୍ସବ)

ସୁମନେ ସୁଜନେ ଶୁଣ ଏ ରସ । ରାଧିକା ପ୍ରେମାଧିକା ଦିବ୍ୟ ବେଶ
କବି କରିବା ବେଳକୁ ରଚନ । ବାଣୀ ମଣିଲେ ଧନ୍ୟ ହେଲଇଁ ତ ସେ
ଜାଣି ପୁଣି ବଢ଼ ଲୋଭ ଯେ ।
ଅବିଘ୍ନ ବିଘ୍ନରାଜ କଲେ ଆନନ୍ଦେ ଦେବଗୁରୁ ହେଲେ ଶୁଭ ଯେ । ୧ ।
ରସସନ୍ଦର୍ଭ ଗର୍ଭ ପଦନ୍ୟାସ । ଛନ୍ଦ ଲାଲିତ୍ୟ ମାଧୁର୍ଯ୍ୟ ଉଲ୍ଲାସ ।
ସ୍ଫୂର୍ତ୍ତି ହେବା ମୂର୍ତ୍ତିବନ୍ତେ କି ଛନ୍ଦ । ଭକ୍ତ ମୁକ୍ତ କେତେ ଚିତ୍ତ ପବନ ମେ ।
ଚରଚ ଚକ୍ଷୁରେ ଲାଗି ଯେ ।
ସାର୍ଥ ପଦାର୍ଥ ମନୋରଥ ହେବାକୁ କେଣେ ଚଞ୍ଚଳ ଭଲ ଅନୀ ଯେ । ୨ ।

---

୪୫ । ତୋଷ - ଅତି ଶୀଘ୍ର । ଧୀର—ରାଧା । ପ୍ରମୋଦ—ଆନନ୍ଦ । ସଙ୍ଗୀ ଅଙ୍ଗୀକାରେ—ସଙ୍ଗପ୍ରାପ୍ତିର ସ୍ୱୀକାରରେ, ରାଧାଙ୍କୁ କୃଷ୍ଣ ଅଙ୍ଗୀକାର କରିବାରେ ଅର୍ଥାତ୍ ଦୁହେଁ ଏକତ୍ର ହେବାରେ; ଥରେ—ଥରେମାତ୍ର । ପଦଦ୍ୱନ୍ଦ—ଦୁହିଁଙ୍କର ପାଦପଦ୍ମ ଯୁଗଳକୁ ସେବା କରିବ ।

---

୧ । ହେ ସୁଜନେ; ସୁମନେ—ଉତ୍ତମ ମନରେ । ଏ ରସ—ଏ ଶୃଙ୍ଗାରରସ । ପ୍ରେମାଧିକା—ଅଧିକ ପ୍ରେମବତୀ । ଦିବ୍ୟବେଶ—ଦେହମାର୍ଜନା ଭୂଷଣାଦି ଧାରଣ । ରଚନ—ରଚନା । କବି ଅଭିମନ୍ୟୁ—ଚନ୍ଦ୍ରାବଳୀ ସମସ୍ତଙ୍କୁ, ବାଣୀ—ବଚନମାନେ (ସରସ୍ୱତୀ) ବିଘ୍ନରାଜ—ଗଣେଶ । ଅବିଘ୍ନ—ମଙ୍ଗଳ, ବିଘ୍ନ ବିନାଶ । ଦେବଗୁରୁ—ବୃହସ୍ପତି । ଶୁଭ—ମଙ୍ଗଳ ।

୨ । ରସସନ୍ଦର୍ଭଗର୍ଭ—ଭିତରେ ମଧୁର ରସ ବିଷୟ ଥିବା । ପଦନ୍ୟାସ—ପଦବିନ୍ୟାସ । ଛନ୍ଦ—ଯମକାଦି ଛନ୍ଦକାବ୍ୟ; ଲାଲିତ୍ୟ—ଶବ୍ଦ ଓ ଅର୍ଥର କୋମଳତା, ସୁକୁମାରତା । ମାଧୁର୍ଯ୍ୟ—ମଧୁରଗୁଣ, ଶବ୍ଦ ଓ ଅର୍ଥର ମିଷ୍ଟତା—"ମଧୁର

Digitized by srujanika@gmail.com

ବିଦଗ୍ଧ ରାଧା ସ୍ୱୟମ୍ବରେ ମିଳି । ଛଳି ଛଇଳୀଏ ଏମନ୍ତ ବୋଲି ।
ବିଭୂଷଣ-ଭୂଷା ବାନା ଉଡ଼ୁଛି । ଖ୍ୟାତି ସାକ୍ଷାତରେ କିପାଁ ନୋହୁଛି ଯେ ।
ଅନୁଗତ ହନୁଁ ଘେନ ଗୋ ।
ସାନ୍ଦ୍ର କି ଚନ୍ଦ୍ରଚୂଡ଼ ସେବା ନୋହିଲା ଶିବଙ୍କୁ ବୋଲିବା ସାନ ଗୋ । ୩ ।
ଦୟାନିଧି ସିଦ୍ଧି ନାମ ପ୍ରକଟି । ସେବକୀ ସେବା ଅଭିମାନ ଫିଟି ।
ଭବ ବଚନ ଅଲଙ୍କୃତ ହେଉ । ଅମ୍ଭ ନେତ୍ର ତାପ ପାପ ପଳାଉ ହେ ।
ଭୂରେ ପ୍ରଭୁପଣ ହସ୍ତୁ ଯେ ।
ଅମ୍ଭ ଶ୍ରମ ସାର୍ଥ କଲେ କେଳେ ଲଭ ମିଳିବ ମନକୁ ଅସୁ ଯେ । ୪ ।

---

ରସବଦ୍‌ଭାତି ବସ୍ତୁନ୍ୟପିରସସ୍ଥିତଃ । ଯେନ ମାଦ୍ୟନ୍ତି ଧୀମନ୍ତୋ ମଧୁନୈବମଧୁବ୍ରତାଃ" । ଉଲ୍ଲାସ—ଆନନ୍ଦପ୍ରଦତ୍ୱ ବା ପ୍ରସାଦ ଗୁଣବିଶିଷ୍ଟ ( ବା ଅନ୍ୟର ଦୋଷଗୁଣ ସହିତ ତୁଳନା କରି ଏକର ଦୋଷ ଗୁଣ ସ୍ଥାପନକୁ ଉଲ୍ଲାସ କହନ୍ତି ? ) ଏମାନେ ମୂର୍ତ୍ତିବନ୍ତେ—ପ୍ରତ୍ୟକ୍ଷରୂପରେ ଃ ଉଦିହେବା—ପ୍ରକାଶ ହେବା କି ଆଶ୍ଚର୍ଯ୍ୟ ଅଟେ । ବିଶ୍ୱପବନ୍ଦ—ଅଖିଳପାବନକାରୀ କେତେ ଭକ୍ତିମୁକ୍ତି; ଚରିତ—(ବିଷୟ ରଚନା ହେବ) ଚରିତରେ ଭ୍ରମି, ଏବଂ ପଦାର୍ଥ ମନୋରଥ—ପଦ ଓ ଅର୍ଥମାନଙ୍କର ମନବାଞ୍ଛା: ସାର୍ଥ—ସଫଳ ହେବାକୁ, ଆଳୀ—ସଖୀମାନେ ବେଶ କରିବାକୁ ଇଚ୍ଛା କଲେ । ବା ମୂର୍ତ୍ତିବନ୍ତେ—ଶ୍ରୀକୃଷ୍ଣଙ୍କଠାରେ ଉଦିତ କି ଆଶ୍ଚର୍ଯ୍ୟ, ଭକ୍ତି ଓ ମୁକ୍ତି କେତେ—ଅତୁଳ । ସେ ତ ନଜେ ବିଶ୍ୱପବନ୍ଦ ତାଙ୍କ ଚରିତ ଉତ୍ତରେ ଭ୍ରମି ପଦାର୍ଥମାନେ—ପଦ ଓ ଅର୍ଥମାନେ, ସଫଳ ହେବାକୁ ଅଳି—ସଖୀମାନେ ବେଶ ଇଚ୍ଛାକଲେ ।

୩ । ବିଦଗ୍ଧା—ଚତୁରା, ପଣ୍ଡିତା ବା କାମପୀଡ଼ିତା । ଛଳି—ଛଳହାସ କରି । ଛଇଳୀଏ—ଛଟକଣୀ ସଖୀମାନେ । ବିଭୂଷଣଭୂଷାବାନା—ଅଳଙ୍କାରର ଅଳଙ୍କାର ରୂପିଣୀ ଏହି ପତାକା । ଖ୍ୟାତି—ପ୍ରକାଶ । ସାକ୍ଷାତରେ—ପ୍ରତ୍ୟକ୍ଷରେ । ତୁମ୍ଭେ ବେଶହେଲେ ତାହା ଜଣାଯିବ । ଅନୁଗତହନୁ—ଅନୁସରଣ କରିବା ହନଠାରୁ । ଘେନ—ଜାଣ, ସାନ୍ଦ୍ର—ପୂର୍ଣ୍ଣ । ଚନ୍ଦ୍ରଚୂଡ଼ସେବା—ଶିବସେବା । ଚନ୍ଦ୍ରିବଙ୍କୁ ଅନୁସରଣ କରିବାରୁ ଶିବ ତାହାଙ୍କୁ ଧାରଣ କରି ଚନ୍ଦ୍ରଚୂଡ଼ ହେଲେ; "ଚନ୍ଦ୍ରଚୂଡ଼ ହେବା ନୋହିଲା" ପାଠ ମଧ୍ୟ ଗ୍ରହଣୀୟ । କିନ୍ତୁ ଶିବ ତାହା କରିବାରୁ ସାନ ହୋଇଲେ କି ? ଅତଏବ ହେ ରାଧେ ତୁମ୍ଭେ ବେଶ ରଚନା କର ।

୪ । ଦୟାନିଧି ସିଦ୍ଧି ନାମ—ଦୟାଳୁ ବୋଲି ଖ୍ୟାତି ଲଭିଛି ଯେଉଁ ନାମ; ସେ ପ୍ରକଟି—ପ୍ରକାଶିତ ହେଉ । ସେବକୀ—ଦାସୀ, ସେବା ଅଭିମାନ—ରାଧାଙ୍କୁ ସେବା କରିବାରେ ଗର୍ବ । ଫିଟି—ପ୍ରକାଶ ପାଉ, ଜଣାପଡ଼ୁ, ଆମେ ଏପରି ସୁନ୍ଦର ବେଶ ରଚନା କରୁ ଏହି ବିଷୟ ଜଣାପଡ଼ୁ । କବି ବଚନ ଅଲଙ୍କୃତ ହେଉ

Digitized by srujanika@gmail.com

ସଙ୍ଗୀ ଭଙ୍ଗି ବାଣୀ ଶୁଣି କଟଣାକ୍ଷୀ । ଦୁର୍ଲ୍ଲଭ ଲୋଭଦ୍ରବ୍ୟ ପ୍ରାପ୍ତି ପରି ।
ହୃଦନଦରେ ଅନଙ୍ଗଲହରୀ । ପିଧାନ ବିଧାନ ନପାରେ କରି ସେ ।
ମହୀ ଗୃହ୍ନି ରହିବାରେ ସେ ।
ସ୍ୱୀକାର ବିକାର ସୂଚିତ କରନ୍ତେ ଦର୍ଶିଗଲା ଶ୍ରୀମୁଖରେ ସେ । ୫ ।
ଅଙ୍ଗୀକାର ସଙ୍ଗୀ ହେଲେ ମାନସେ । ଭଙ୍ଗୀରୁ ଜାଣିଲେ ସଙ୍ଗିନୀଗଣେ ।
ଜଣାଇ ପଦ୍ମିଣୀ ମଣାଇ ନେଇ । ଆସନେ ପ୍ରସନ୍ନେ ଆଣି ବସାଇ ସେ ।
ସାଝ ସାଝ ଦର୍ପଣ ସେ ।
ଶ୍ରୀମୁଖ ଦେଖାନ୍ତେ ଦେଖାଇଲେ ଛବି ସଙ୍ଗେ ଗଲା ତା ବଡ଼ପଣ ସେ । ୬ ।

୩-୬—ହେବା ନୋହିଲା ଛ, ଝ, ବ୍ୟତୀତ ସମସ୍ତ ପୋଥିରେ ୪-୧—ସିଦ୍ଧିବାନ । ଛ, ଝ ବ୍ୟତୀତ ସମସ୍ତ ପୋଥିରେ ।

---

—ଅମୂଲ୍ୟ ବାକ୍ୟ ଭୂଷିତ ହେଉ; ତୁମ୍ଭ ବେଶ ବର୍ଣ୍ଣନା କର ସଫଳ ହେଉ । ନେତ୍ରଦୀପ ତାପ—ଆଖିର ଦୃଷ୍ଟି ଓ ଦୁଃଖ । ହୃଦେ—ପୃଥିବୀରେ; ପ୍ରତ୍ୟକ୍ଷ—ବଡ଼ଲୋକଙ୍କଠାରେ, ମାଲତୀର ଦଣ୍ଡ—ଜଣାଯାଉ, ପ୍ରକାଶ ପାଉ । ଅମ୍ଭ ଶ୍ରମ—ସେବକଙ୍କର ବେଶ ରଚନା କରିବାରେ ପରିଶ୍ରମ । ସାର୍ଥ—ସଫଳ । କେତେ ଲାଭ ମିଳିବ—କୃଷ୍ଣ ବେଶ ଦେଖି ତୁମ୍ଭ ଅଧୀନ ହେବେ । ମନକୁ ସ୍ଥିର—ମନରେ ବିଚାର କର ।

୫ । ଭଙ୍ଗୀବାଣୀ—ଚତୁରାମି କଥା । କଟଣାକ୍ଷୀ—ରାଧା । ଦୁର୍ଲ୍ଲଭ—ଦୁଷ୍ପ୍ରାପ୍ୟ; ଲୋଭଦ୍ରବ୍ୟ, ଲୋଭନୀୟ ପଦାର୍ଥ; ପ୍ରାପ୍ତି ପରି—ପାଇଲା ପରି; ହୃଦନଦରେ—ମନରୂପ ନଦୀରେ । ଅନଙ୍ଗଲହରୀ—ଉର୍ଦ୍ଧ୍ବ ଢେଉ, ନପାରେ—ନପାରିଲେ, ପିଧାନ—ଘୋଡ଼ାଇବା; ବିଧାନ—କାର୍ଯ୍ୟ, ସମାଧାନ । ମହୀ ଗୃହ୍ନି ରହିବାରେ—ମୁହଁକୁ ତଳକୁ ପୋତିବାରେ । ସ୍ୱୀକାର ବିକାର ସୂଚିତ—ଅଙ୍ଗୀକାର କରିବାରେ ଅନ୍ତର୍ଗତ ଭାବସ୍ୱରୂପ ଅଳ୍ପହାସ, ଅର୍ଥାତ୍ ମୋତେ ବେଶ କର ଏହା ସୂଚନା କଲେ ।

୬ । ଅଙ୍ଗୀକାର—ବେଶ ସ୍ୱୀକାର । ସଙ୍ଗୀ ହେଲେ—ମିଳିତ ହେଲେ; ମାନସେ—ମନରେ । ସଙ୍ଗିନୀଗଣେ—ସଖୀମାନେ । ଭଙ୍ଗୀରୁ—ଦରହାସାଦିରୁ । ଜଣାଇ—ରାଧାଙ୍କ ଅନୁମତି ନେଇ । ପଦ୍ମିଣୀ ମଣାଇ—ଧରି ଅସ୍ତେ ଅସ୍ତେ ଚଲାଇ । ପ୍ରସନ୍ନେ—ଖୁସିରେ (ବା ପ୍ରସନ୍ନ ଆସନରେ—ନିର୍ମଳ ବା ବହୁମୂଲ୍ୟ ଆସନରେ) । ଦରପଣ ସାଝ ସାଝ—ନିର୍ମଳ କରୁ କରୁ ଅର୍ଥାତ୍ ଦର୍ପଣକୁ ମାଜି ସାଜି । ଶ୍ରୀମୁଖ ଦେଖିବା ଶେଷରେ, ତଳେ ରଖାଇବା ସମୟରେ ତାର ବଡ଼ପଣ—ଦର୍ପଣର ନିର୍ମଳତା ରୂପ ଟେକ, ସଙ୍ଗେଗଲା—ଲୁଚିଗଲା; ରାଧାଙ୍କ ମୁଖକୁ ଦେଖାଇଦେଲା ।

Digitized by srujanika@gmail.com

ଚତୁରୀ ସହଚରୀଙ୍କ ନେତ୍ରାନ୍ତ । ଇଙ୍ଗିତ ଭଙ୍ଗିରୁ କରି ଚରିତ ।
ଜାଣି ବିଚକ୍ଷଣୀ ବୃନ୍ଦା ବହନ । କଳ୍ପପାଦପ ଜାତ ଭୂଷାମାନ ।
ଆଣିଦେଲେ ବେଶବିଧି ସେ ।
ଚିତ୍ତ ମୋହେ ଶଚୀପତିଙ୍କ ଦୃଷ୍ଟିର ଦେଖି ନ ଜାଣି ତା ବିଧି ସେ ।୭।
ହାସ ପ୍ରକାଶ କରି ବେଣୀକାରୀ । ଅଗ୍ରେ ପଛଭାଗେ ବସି କରି ।
ତ୍ୱରିତ ହରିତ-ବାସ ପଟାନ୍ତ । ବାମ ଚରଣଦେଶେ ପକାଇ ତ ସେ ।'
ଚିତ୍ରକବରୀ ଆଶ୍ୱାସି ସେ ।
ମୋକ୍ଷ କଲକ୍ଷଣୀ ମୋକ୍ଷକୁ ସେ କ୍ଷଣି ଲୁଚାଇବାର ଆଗ୍ରହି ସେ ।୮।
ଭଙ୍ଗ ଭଙ୍ଗ ହୋଇ ଖସିବା ଶୋଭା । ସୁଜନନନ ମନଲୋଭା ପ୍ରଭା ।
ସାନ୍ଦ୍ର ମୁଖଚନ୍ଦ୍ର ବିମ୍ବ ଦର୍ପଣେ । ଦେଖି ଲକ୍ଷିବା ମାୟା ବିଭ୍ରମଣେ ସେ ।
ତମିସ୍ରା ନାରୀ କବରୀ ସେ ।
ରହି ରହି ଗୁଣ୍ଠି ଗୁଣ୍ଠି ହାଜଅଛି ପଦ୍ମ ଭଙ୍ଗମାନ କରି ସେ ।୯।

୭-୮—ଜାତ ଭୂଷା ଛ, ଝ, ଟ, ଠ ବ୍ୟତୀତ ସମସ୍ତ ପୋଥିରେ ।

---

୭ । ବିଚକ୍ଷଣୀ—ପଣ୍ଡିତା । ନେତ୍ରାନ୍ତ ଇଙ୍ଗିତ ଭଙ୍ଗୀରୁ—ଆଖି କୋଣରେ ଠାରିଦେବା ଭଙ୍ଗୀରୁ । ଚରିତ ଜାଣିକରି—ଆଚରଣ ଜାଣିପାରି । ବହନ—ଶୀଘ୍ରରେ । କଳ୍ପପାଦପ ଜାତ ଭୂଷାମାନ—କଳ୍ପବୃକ୍ଷରୁ ଜାତ ଅଳଙ୍କାରମାନଙ୍କୁ, ବେଶ ବିଧି—ମଣ୍ଡନ ବିଧାନ । ଚିତ୍ତ ମୋହେ—ମନ ମୋହିବାରୁ । ଶଚୀପତିଙ୍କ—ଇନ୍ଦ୍ରଙ୍କ । ବିଧି—ବିଧାତା ବ୍ରହ୍ମା ।

୮ । ବେଣୀକାରୀ—ବେଣୀ କରିବା ନାରୀ "ମାଳତୀ ନାମ ସୈରନ୍ଧ୍ରୀ ଶିଳ୍ପିନୀ ଶିଳ୍ପକାରିଣୀ ।" ଅଗ୍ରେ—ସମ୍ମୁଖରେ । ତ୍ୱରିତ—ଶୀଘ୍ର; ହରିତ ବାସ ପଟାନ୍ତ—ନେଳିଆ ଲୁଗା କାନି । ବାମ ଚରଣଦେଶେ—ସୁନ୍ଦର ପିଠରେ । ଚିତ୍ର କବରୀ—ଉତ୍କୃଷ୍ଟ ଜୁଡ଼ା, ଆଶ୍ୱାସି—ଆଣି । ମୋକ୍ଷ—ଫିଟାଇବା । ମୋକ୍ଷକୁ—ମୁକ୍ତକୁ । ଆଗ୍ରହି—ଆଗ୍ରହ ଦେଉଅଛି । ମୁକ୍ତକୁ ବନ୍ଧ ଦେଉଅଛି ବୋଲି ଜଣାଗଲା ।

୯ । ଭଙ୍ଗ ଭଙ୍ଗ ହୋଇ—ଜୁଡ଼ାରେ ମୋଡ଼ ହୋଇଥିବା ବାଳକୁ ଭଙ୍ଗ କହନ୍ତି; ତାହା ଭଙ୍ଗ ଭଙ୍ଗ ହୋଇ ଖସି ପଡ଼ିଲା ଶୋଭା । ପ୍ରଭା—କାନ୍ତି । ସାନ୍ଦ୍ର—ସ୍ନିଗ୍ଧ ବା ସୁନ୍ଦର । ମୁଖଚନ୍ଦ୍ର ବିମ୍ବ—ମୁଖରୂପକ ଚନ୍ଦ୍ରର ପ୍ରତିବିମ୍ବକୁ ଲକ୍ଷିବା—ଲକ୍ଷ କଲା ଲକ୍ଷିଲା ପାଠ ମଧ୍ୟ ସମୀଚୀନ । ମାୟା—ଭ୍ରମ । ବିଭ୍ରମଣେ—ବିଭ୍ରମରେ । ତମିସ୍ରାନାରୀ—କୃଷ୍ଣପକ୍ଷ ରାତ୍ରିରୂପକ ସ୍ତ୍ରୀ ସେ ହେଲା, କବରୀ—ଜୁଡ଼ା । ରାଧାଙ୍କ ଜୁଡ଼ାରୂପୀ ଅନ୍ଧକାର ରାତ୍ରି ରାଧାଙ୍କ ମୁଖଚନ୍ଦ୍ର ବିମ୍ବକୁ ଦର୍ପଣରେ ରଖି ଭ୍ରମରେ ଚନ୍ଦ୍ର ବିମ୍ବରେ ଲକ୍ଷିବା ହୋଇ—ଦେଖା ଦେଲାପରି ରହି ବଳାସାଦ ରହି କର୍ଣ୍ଣ

Digitized by srujanika@gmail.com

ବାସ ବାସରେ ପୁଷ୍ପ ରହିଥିଲା । ଗନ୍ଧବାହ ହୋଇ ପବନ ଚଳା ।
ଦଗରେ ସଙ୍ଗ ବଳାଇ ଦେଲା । ସାରସ ଅଶକୁ ଛଡ଼ାଇ ନେଲା ସେ ।
ଭ୍ରମ ଭ୍ରମରେ ବ୍ୟସ୍ତାର ଯେ ।
ମାଧବ ମହୋଛବକୁ ରମଣୀ ଯାଇ ସେ ପୁଷ୍ପ କ ପୂର ଯେ । ୧୦ ।
ଗୃହିଁ ସହ କହାଲେ ରେ ପାମସ୍ । ତୁଛ କେକପୁଛ କୃଷ୍ଣ ଗ୍ରୀମସ୍ ।
ଇଛା ନିଜ ଗ୍ରାଇ ହେବାକୁ କର । ପଛରେ ଚନ୍ଦ୍ରଚନ୍ଦ୍ର ଅନୁସର ସେ ।
ଚନ୍ଦ୍ରିକ ସର କ କର ଯେ ।
ଛୁ ଛୁ ମର ମର ଯା ଯା ହସି ଗ୍ରୀଷ୍ମ ଗ୍ରୀମରଧାସ୍ ଏ ବାର ଯେ । ୧୧ ।
କ ଠିକ ମାନଛୁ ସିଠେକ ପଡ଼ି । ହେମ ଧରେ କ ଶ୍ୟାମଘନ ଧାଡ଼ି ।
ପଡ଼ିଛୁ ତଡ଼ିତେ କ ଧୂମକେତୁ । କୁଙ୍କୁମଧାମେ ସନ୍ତାପ୍ତସୂ ହେତୁ ଯେ ।
ଆସୁଛୁ ନାଗର ନେଉଛୁ ଯେ ।
ବସନ୍ତ ମିଷ ବଳକୁ ଅଡ଼ାଣିକା ପଦ୍ମଗନ୍ଧା ବାସ୍ତେ ଅଛୁ ନେ । ୧୨ ।

---

ଗୃହିଁ ଗୃହିଁ ଯାଉଅଛ ପଥ ! ରାଧାଙ୍କ କେଶରୂପା ରଜ—ସ୍ତ୍ରୀ, ରାଧା ମୁଖଚନ୍ଦ୍ର ପଦ୍ମ)କୁ ଦେଖି ରହି ରହି ଗୃହିଁ ଗୃହିଁ ଯାଉଛି—ଏପରି ତର୍କଣା ହୁଏ ।

୧୦ । ବାସ ବାସରେ—କେଶ ପାଶରେ ଦିଆଯାଇଥିବା ସୁଗନ୍ଧ ପଟବାସ-ଚୂର୍ଣ୍ଣର ବା ପୁଷ୍ପାଦର ବାସନାରେ । ପୁଷ୍ପ—କେଶ ଗୁଚ୍ଛ । ରହିଥିଲା—ସୁବାସିତ ହୋଇଥିଲା । ଗନ୍ଧବାହ—ପବନ । ଦଗରେ—ଦଗମାନଙ୍କରେ । ସଙ୍ଗ—ଅନୁସଙ୍ଗ ସହିତ ହୋଇ କେଶ ଗନ୍ଧକୁ ବଳାଇ ଦେଲା—ସଞ୍ଚାରିତ କଲା । ସାରସ—ପଦ୍ମ ଅର୍ଥାତ୍ କେଶଗନ୍ଧ ପଦ୍ମଗନ୍ଧକୁ ଜିଣିଲା । ଭ୍ରମ - ଭ୍ରାନ୍ତ । ଭ୍ରମରେ—ଭଅଁର-ମାନଙ୍କଠାରେ । ମାଧବ ମହୋଛବକୁ—ଶ୍ରୀକୃଷ୍ଣଙ୍କର ମହୋତ୍ସବ ନିମିତ୍ତ ବା ବସନ୍ତ ମହୋତ୍ସବ ପାଇଁ । ରମଣୀ—ରାଧା । ପୁଷ୍ପ—ନଗସ୍; ପୂର—ପୂର୍ଣ୍ଣ ହେଲା । ଭଅଁରମାନେ ସେଠାରେ ପୂର୍ଣ୍ଣ ହେଲେ ।

୧୧ । ପାମସ୍—ହ୍ରିଣୀ, ଜଳକୁମ୍ଭା; କେକାପୁଛ—ମୟୂରଲାଞ୍ଜ । କୃଷ୍ଣଗ୍ରୀମସ୍—କଳାଚଅଁର । ତୁଛ—ଊଣା । ନିଅଁଗ୍ରାଇ ହେବାକୁ—ବନ୍ଦନା କରିବାକୁ । ଇଚ୍ଛା କର, ଅନୁସର—ଅନୁଗତ ହୋଇ । ଛୁ ଛୁ ମରମର—ମରଯା ମରିଯା । ଯା, ଯା—ପଳା, ପଳା । ଗ୍ରୀମରଧାସ୍ ଏ—ଚଅଁର ଧରିଲା ସ୍ତ୍ରୀମାନେ । ବାର—ବାରଣ କଲେ ।

୧୨ । କ ଠିକ ମାନଛୁ—ଅଗତ ଠିକଣା ଶୋଭା ଦଶୁଛୁ । ହେମଧରେ—ସୁନାପର୍ବତରେ । ଶ୍ୟାମଘନ ଧାଡ଼ି—କଳାମେଘପଙ୍କ୍ତି । ପୁଷ୍ପ ହେମପର୍ବତ—କେଶ କଳାମେଘ ପରି ଦଶୁଛୁ । ତଡ଼ିତେ—ବିଜୁଳିରେ । ଧୂମକେତୁ—ଲଞ୍ଜାତାସ୍, ସିଠି

ତରଳ ମଞ୍ଜୁଳ କୁନ୍ତଳେ ଦେଲେ । ଝୀନ ବସନରେ ପୋଛି କଷ୍ଟିଲେ ।
ସର୍ବଗବନ୍ତ-ପଦ୍ମରାଗ-ଜଡ଼ା । ପାଣିଆ ମାନିଆ କାମସଜଡ଼ା ସେ ।
ଶଳାକା ଚଳାଇ କର ଯେ ।

ଝଙ୍କାର ନଖରେ ବେଣୀବାନ୍ଧି କରେ ଦେଲ ଭଙ୍ଗୀ ସହଚରୀ ଯେ । ୧୩ ।
ଲୁଣ୍ଠିଥାଇ କେଶ ଲୁଣ୍ଠିଅଛବା । ନାହିଁ ନୋହିବ ସେ ଶୋଭା କହିବା ।
ଚଞ୍ଚଳା ବାଳା ଲିଙ୍ଗ ରଙ୍ଗବାସ । ଘନ ଅପଘନ ମିଶା ଅଭ୍ୟାସ ସେ ।
କମଳ କୋଳକୁ ଲୁବ ଯେ ।

କାଳିନ୍ଦୀ ନଦୀରେ ପ୍ଲବନଗତିଙ୍କ କରୁଛି କି ପ୍ରାତ-ରବି ସେ । ୧୪ ।

୧୨-୭—ଉରଲୁ ଆଜ୍ଞକ ଭ ପଦ୍ମଭ଼ଛି ଛ, ଝ, ଠ, ୦ ବ୍ୟତୀତ ସମସ୍ତ ପୋଥିରେ; ୧୪-୫—କମଳ କୋଳାନୁଲୁବା ଛ; ଝ ବ୍ୟତୀତ ସମସ୍ତ ପୋଥିରେ; କୋଳାନୁଲୁବା କ,

---

ବଜୁଳ ଓ କେଶ ଲଜ୍ଜାତାର । କୁଙ୍କୁମଧାମେ—ଜାଫ୍ରାନକେଶରମୟ ସ୍ଥାନରେ । ମହାସ୍ତମ୍ଭ କେତୁ—ବଡ ଖମ୍ବ ସଦୃଶ କେତୁଗ୍ରହ । ବିଚିହ ହେତୁ—ନାନା ପ୍ରକାର କାରଣ । ଅସୃଷ୍ଟି—ବଗ୍ମର ପାଉଛି । ବସନ୍ତ ମିହ ଉରଲୁ—ବସନ୍ତ ମିହ ଗୃହକୁ (ବସନ୍ତ—ବଳଦାଅ) ଅଡ଼ଣି ପଦ୍ମଭ଼ଣା—ଆଉକ ଶୟନ କରଛ କି ? ବିଶ୍ୱକେତୁ—କନ୍ଦର୍ପ (କାମଦେବର ରୂପଗାଢ଼ କୃଷ୍ଣ) । ପୃଷ୍ଠ ଦେଲ ବସନ୍ତ; କେଶ ଦେଲ କାମଦେବ । ଉରଲୁ ଆଜ୍ଞକ ପଦ୍ମଭ଼ଛି ପାଠ ମଧ୍ୟ ସମୀଚିନ ।

୧୩ । ମଞ୍ଜୁଳ କୁନ୍ତଳେ—ସୁନ୍ଦର କେଶରେ । ଝୀନ ବସନରେ—ସରୁ ଲୁଗାରେ । କଷ୍ଟିଲେ—ସଜାଡ଼ିଲେ; ଏକାଧ କଲେ । ସର୍ବଗବନ୍ତ ପଦ୍ମରାଗ ଜଡ଼ା—ଉତ୍ତମ ରକ୍ତବର୍ଣ୍ଣ ଯୁକ୍ତ ପଦ୍ମରାଗ ମଣି ଜଡ଼ିତ । ମାନିଆ କାମସଜଡ଼ା—ମାନିଲା କି ସୁନ୍ଦର କନ୍ଦର୍ପଦ୍ୱାରା ନିର୍ମିତ ବା ସୁନ୍ଦର କାମର ବର୍ଦ୍ଧନା ବା କାମସଜଡ଼ା ମାନିଆ—କନ୍ଦର୍ପଦ୍ୱାର ସଜଡ଼ା ହେମ୍ଲକର ପାନିଅ । ଶଳାକା—ଖଡ଼ିକା, ଚଳାଇକର—ପାନିଅ ମଧ୍ୟରୁ ମଳି ବାହାର କରି, ନଖରେ ଝଙ୍କାର—ନଖରେ ଦାନ୍ତସୁଡ଼କ ବଜାଇ, ବେଣୀବାନ୍ଧି କରେ—ବେଣୀକାରଣୀ ହସ୍ତରେ ।

୧୪ । ଲୁଣ୍ଠିଥାଇ—ଏକାଠି କରି । ଚଞ୍ଚଳାବାଳା—ବିଜୁଳୀରୂପା ସ୍ତ୍ରୀ । ରଙ୍ଗବାସ—ନାଲିଅଲୁଗା । ଘନଅପଘନମିଶା—ମେଘ ଦେହରେ ମିଶିବା । ଅଭ୍ୟାସ—ପ୍ରକାଶ । କମଳକୋଳକୁ—ପଦ୍ମକୁ କୋଳରେ ଧରିବାକୁ । କାଳିନ୍ଦୀ-ନଦୀରେ—ଯମୁନା ନଦୀରେ । ପ୍ଲବନଗତିକ—ପହଁରିଯିବା । ପ୍ରାତରବି—ସକାଳ ସୂର୍ଯ୍ୟ । ଏଠାରେ ଚଞ୍ଚଳା—ପାନିଅ; ରଙ୍ଗବାସ—ପଦ୍ମରାଗମଣି; ଘନଅପଘନ—କେଶ; ପଦ୍ମ—ରାଧାଙ୍କ ମୁଖ । କାଳିନ୍ଦୀ ନଦୀ—ରାଧାଙ୍କ କେଶପାଶ; ପ୍ରାତରବି—(ସୂର୍ଯ୍ୟ)—ପାନିଅ ।

Digitized by srujanika@gmail.com

ଉତ୍ତମା ଉତ୍ତମାଙ୍ଗେ ମାଙ୍ଗଭଙ୍ଗ । ପ୍ରକଟ ବେଟଣୀ ଛନ୍ଦ ସଂଯୋଗ ।
ଜୂଡ଼ା ଅମରପକ୍ଷ ପଡ଼ା ଛଡ଼ା । ଅଲୋକନ-ଲୋକ-ଜ୍ଞାନଘଜଡ଼ା ସେ ।
ମୂଳ ଭଙ୍ଗ ସଜାଡ଼ିବା ଯେ ।
ବିମୁଦିତ ବାଧୀ ଖସିଗଲା ପଦ୍ମ କରଗତ ଭାଗ୍ୟେ କି ବା ସେ । ୧୫ ।
ସଞ୍ଚ ଭେଦ ସରୁ ଗୁରୁ ଚଉଁରି । ମାଣିକ୍ୟ ମଣି ଜଡ଼ିତ ଭଉଁରି ।
ଗର୍ଭକ ସମ୍ଭବ କର କରନ୍ତେ । ତପନ ଘନରେ ଉଦେ ପରତେ ସେ ।
ଅଭୁତ ସମ୍ଭୃତ ହେଲା ଯେ ।
କୋକନଦ କଳି କଳିନ୍ଦଜା ଜାତ ହେବା ଶୋଭାକୁ ହସିଲା ଯେ । ୧୬ ।

୧୫-୬—ଖସିଗଲା କ, ଖ, ଗ, ଘ, ଚ କରଗତ ଭାଗ୍ୟ, ଟ, ଠ କରଗତ ଭାଗ୍ୟେ ; କ, ଖ, ଛରେ କେବଳ ପାଠ ଭିନ୍ନ ଅଛି । ସଖୀଏ ବିଶ୍ବର ମୂଳ ଧୈର୍ଯ୍ୟ ତରୁ, ସମୂଳରେ ଉପାଡ଼ିବା ଜ, ଛ

---

୧୫ । ଉତ୍ତମା—ସୁନ୍ଦରୀ ରାଧାର । ଉତ୍ତମାଙ୍ଗେ—ମସ୍ତକରେ । ମାଙ୍ଗଭଙ୍ଗ—ସୁନ୍ଥା ଭାଙ୍ଗିବା । ଛନ୍ଦସଂଯୋଗ—କେଶମାନଙ୍କ ଛନ୍ଦିବା ବିଷୟରେ, ପ୍ରକଟ—ନିର୍ମାଣ, ବେଟଣୀ—ଲେଉଟିଥିବା ଜଡ଼ା । ଅମର—ଦେବତା । ପକ୍ଷପଡ଼ାଛଡ଼ା—ଅର୍ଥାତ୍ ରାଧାର ସୁନ୍ଥା ଓ ଜୂଡ଼ାକୁ ଚାହିଁ ଦେବତାଏ ଅନିମେଷ ହେଲେ କେବଳ ପୂର୍ବରେ ନିମେଷ ଥିଲା । ଅଲୋଚନା ଲୋକଙ୍କର ଦେଖିବା ଯୁବାଙ୍କର; ଜ୍ଞାନଧନ ଘଜଡ଼ା—ରଖିନାହିଁ । ମୂଳ - ଜୂଡ଼ାର ମୂଳ, ଭଙ୍ଗ—ଭଙ୍ଗରେ ବାନ୍ଧି, ସଜାଡ଼ିବା—ତିଆର କରିବା, ଉପର ଶୋଭାହେଲା । ବିମୁଦିତବାଧୀ—ମୁଦ୍ରଣ କରିବାରେ ଶକ୍ତ ଏପରି, ଖଣି—ଗ୍ରନ୍ଥି; ପଦ୍ମ କରଗତ—ପଦ୍ମରୂପ ହାତରେ ଥିଲା କି ଭାଗ୍ୟେ କ ଶୁଭରେ ବା ଦୈବାତ୍ ଗଲା - ପଳାଇଲା । ଏପରି ଉତ୍ପ୍ରେକ୍ଷା ହେଲା । ହାତ ହେଲା ପଦ୍ମ, କେଶପାଶ ହେଲା ଗ୍ରନ୍ଥି, ବନ୍ଧ ପରେ ହାତରୁ ଗଲା ।

୧୬ । ସଞ୍ଚଭେଦ—ଶୋଭିତ କେଶରେ ସରୁ ଗୁରୁ ଚଉଁରିଭୂଷଣି ଓ ମାଣିକ୍ୟ ମଣି ଜଡ଼ା ହୋଇଥିବା ଭଉଁରି । ଖେଳ ବିଶେଷକୁ ଗର୍ଭକ ବର—ମଧ୍ୟଗତ କର, ସମ୍ଭବେ—ଆଡ଼ମ୍ବର ବା ସମାବେଶରେ, କରନ୍ତେ - କରିବାରେ । ତପନ—ସୂର୍ଯ୍ୟ । ଘନରେ—ମେଘରେ । ଉଦେ—ଉଦିତ ହୋଇ, ପରତେ—ଜଣାଗଲା । ଅଭୁତ ସମ୍ଭୃତ ହେଲା—ଆଶ୍ଚର୍ଯ୍ୟକଥା ସମ୍ଭବିଲା । କୋକନଦ କଳି—ରଙ୍ଗପଦ୍ମ କଢ଼ି । କଳିନ୍ଦଜା ଜାତ—ଯମୁନାରେ ଉତ୍ପନ୍ନ—"ଗର୍ଭକ କଲା ଚଉଁରି ରୁପା ଭଉଁରି ଗୋ°" (ଲାବଣ୍ୟବତୀ) । ଶୋଭାକୁ ହସିଲା—ବଳପଡ଼ିଲା ।

Digitized by srujanika@gmail.com

ତୁଷ୍ଟି ପୁଷ୍ଟିକି ଜୁଡ଼ା ବୁଡ଼ାଉଛୁ । ଏମନ୍ତ ଶତ୍ରୁକୁ ପ୍ରତେ ହେଉଛୁ ।
ମାର ଧୀବର ମର୍କତ କୁବେଣୀ । ତ୍ରିଲୋକ ଲୋଚନ ମୀନ ଭରଣୀ ସେ ।
ଅଧୁନାହିଁ ବଢ଼ିବାକୁ ଯେ ।
ନୂଆ ଉଆଉ କି ଥୁଅଉଛୁ ମାର ନୀଳେନ୍ଦ୍ରମଣି ଦରକୁ ଯେ । ୧୭ ।
ସିନ୍ଦୂର ଗାର ଦେଲେ ସୀମନ୍ତରେ । ଉପମା ପଡ଼ିଲେ ଅପମାନରେ ।
ଶଶୀ ରସି ନଖ ଫେରଣ ଗାର । କଣାଯୋଷା ଦେହେ ରୁଧିରଧାର କି ?
କି ରମ ତମ ଅମର ଯେ ?
କ୍ଷତ କ୍ଷତଜ ଅଜହିଁ ବିଲୋକନେ କାଳିନ୍ଦୀ ପ୍ରବାହ ସ୍ଥିର ଯେ । ୧୮ ।

୧୭-୬—ନୀଳେନ୍ଦ୍ରମଣିବରକୁ କ, ଖ, ଘ, ଜ, ଝ, ଠ, ଧରକୁ ଗ;
୧୮-୫—କି ରମ ତମ ଗୃମର ଛ, ଙ ବ୍ୟତୀତ ସମସ୍ତ ପୋଥିରେ; ଠ ତମ ଅସର ଙ

---

୧୭ । ଜୁଡ଼ା ତୁଷ୍ଟି ପୁଷ୍ଟିକି—ଚକ୍ଷୁସମୂହକୁ । ବୁଡ଼ାଉଛୁ—କେଉଟ କରାଉଛୁ । ମାରଧୀବର—କନ୍ଦର୍ପ ହେଲା କେଉଟ । ମର୍କତକୁବେଣୀ—ନୀଳମଣିର ଖାଲୋଇ (ମାଛ ରଖିବା ପାତ୍ର) । ତ୍ରିଲୋକ ଲୋଚନ ମୀନଭରଣୀ—ତିନିଜଗତର ଅକ୍ଷିରୂପ ମାଛମାନଙ୍କଦ୍ୱାରା ପୂର୍ଣ୍ଣହେବା ଯୋଗ୍ୟ । ସମସ୍ତଙ୍କ ଆଖି ଜୁଡ଼ାରେ ଲାଗି ରହିଲା । ମାର—କନ୍ଦର୍ପ । ନୀଳେନ୍ଦ୍ରମଣି ଦରକୁ—ଇନ୍ଦ୍ରନୀଳମଣିମୟ ଶଙ୍ଖକୁ, 'ନୀଳେନ୍ଦ୍ରମଣି ବରକୁ' ପାଠରେ—ନୀଳେନ୍ଦ୍ରମଣି ଶ୍ରେଷ୍ଠକୁ ନୂଆ ଉଆଇ—ନୂଆ ଛଆର କରି ଥୋଇଛ କି ?

୧୮ । ସୀମନ୍ତିରେ—ସୁନ୍ଥାରେ, ଉପମା—ଉପମାନମାନେ । ଶଶୀ—ଚନ୍ଦ୍ର; ରସି—ରମଣରେ ଆସକ୍ତ ହୋଇ । ନଖ ଫେରଣ ଗାର—ନଖ ଗୃଞ୍ଜବାର କ୍ଷତ ରେଖା । କଣା ଯୋଷା ଦେହେ—ଗନ୍ଧେ ରୂପକ ସ୍ତ୍ରୀର ଶରୀରରେ, ରୁଧିର ଧାର—ରକ୍ତ ଧାର । ଚନ୍ଦ୍ର ଜଣା ଭାର୍ଯ୍ୟାକୁ ନଖ ଘାତ ଦେବାରୁ ରକ୍ତଧାର ବାହାରୁଛି କି ? ରମ—ରମଣୀୟ । ତମ—ଗଭୀର । ଅମର—ଅକ୍ଷୟ । କ୍ଷତକ୍ଷତଜ—ଛେଦହେବାରୁ ରକ୍ତ; ବା ସୁନ୍ଦର ଅନ୍ଧକାର ଦିବସରେ ସୁଦ୍ଧା ବିଦ୍ୟମାନ । ଅଜହିଁ—ଦିବସରେ ସୁଦ୍ଧା ଦେଖି କାଳିନ୍ଦୀ ପ୍ରବାହ—ଯମୁନା ସ୍ରୋତ—ସ୍ଥିର ହୋଇଛି—ବା କି ସୁନ୍ଦର; ଅମର ଗଭୀର ଚନ୍ଦ୍ରଙ୍କ ଶରୀର କ୍ଷତର ରକ୍ତ ଆଜସୁଦ୍ଧା ଦେଖି ଇତ୍ୟାଦି ବା ରମ—

Digitized by srujanika@gmail.com

ଅଛ ଜ୍ୟୋତ ମୋତି ପଂକ୍ତି ସୀମନ୍ତି । ରଞ୍ଜରଞ୍ଜି ପଦ୍ମରାଗକୁ ଗୁନ୍ଥି ।
ବନା ସୁନାଜାଲ-ଶିକଳୀ କମ । ଉତ୍ତମାଙ୍ଗ ସାଙ୍ଗ ପାଇ କି ରମ ସେ ।
ଜଡ଼ା ଘୋଡ଼ା ଦିବା ଶୋଭ ଯେ ।
ଛନ୍ଦଜାଲେ ମିଶ ଅଙ୍କ କୃଷ୍ଣସାରଁ ଅତନୁ ଧଇଲା ପରା ଯେ । ୧୯ ।

ଦୃଷ୍ଟି-କୋଟିବୃଡ଼ା ମୁକୁତା ପରା । ମନ-ନୟନ-ମୋହନ-ପସରା ।
ତର୍କିତ ମର୍କତ ଲିଙ୍ଗ ପାଶରେ । କ୍ଷୀରଧାରେ ବସୁଛରା ବାଧିରେ ସେ ।
ଜଡ଼ାବନ୍ଧା ମଣି ଛାର ଯେ ।
ସାନ୍ଦ୍ର ଇନ୍ଦ୍ରନୀଳ-ମଣିକୁଟିରୁ କି ଉଠି ଆସେ କଳାକର ଯେ । ୨୦ ।

୨୦-୯—ମୁକୁତାଙ୍କର ଛ, ଝ, ଠ, ଛ ରେ ମଧ୍ୟ 'ଧାର' ଅଛି । ୨୧-୩—ପନ୍ତି ପନ୍ତି ରଙ୍ଗପାର କ, ଖ, ପଡ଼ପଡ଼ି ରଙ୍ଗପାର ଛ, ଝ (ପାଠ ମଧ୍ୟ ସମୀଚୀନ)

---

୧୯ । ଅଛ ଜ୍ୟୋତ ମୋତିପଂକ୍ତି—ଅତି ତେଜୋଯୁକ୍ତ ମୁକ୍ତାପଙ୍କ୍ତିମୟ । ସୀମନ୍ତି—ମଥା ମଣ୍ଡିବାର ମଥାମଣି ବା ଅଳକା । ରଞ୍ଜରଞ୍ଜ—ପୁଞ୍ଜି ପୁଞ୍ଜି । ପଦ୍ମରାଗ—ପଦ୍ମରାଗ ମଣି, ନାଲିଆମଣି । ବନା ସୁନାଜାଲ ଶିକଳୀ କମ—ଛଅର ହେବା ସୁନା ଜାଲରେ ଟଙ୍କା (ଶୃଙ୍ଖଳା ଖଞ୍ଜନ) ଅଳଙ୍କାରମାନେ । ଉତ୍ତମାଙ୍ଗ ସାଙ୍ଗ ପାଇ—ମସ୍ତକରେ ରହି । କି ରମ—କି ସୁନ୍ଦର । ଶୋଭ—ଶୋଭା । ଛନ୍ଦଜାଲେ—ଛନ୍ଦ ହୋଇଥିବା ବାଗୁରାରେ । ମିଶ ଅଙ୍କ କୃଷ୍ଣସାର ରାଧା ମୁଖ-ଚନ୍ଦ୍ରର କଳଙ୍କ କୃଷ୍ଣସାର ମୃଗକୁ ଧଇଲା ପରି କ୍ରୀଡ଼ା ଶୋଭା ପାଇଲା । ଅତନୁ—କନ୍ଦର୍ପ ।

୨୦ । ଦୃଷ୍ଟି କୋଟିବୃଡ଼ା—କୋଟି କୋଟି ସଂଖ୍ୟକ ଚକ୍ଷୁର ବନ୍ଧନକାରୀ ବା ଚକ୍ଷୁସମୃଦ୍ଧ ହାରକ । ମୁକୁତା—ଜଡ଼ା ପାଖରେ ଯେଉଁ ମୁକ୍ତା; ପରା—ମଧ । ମୁକ୍ତା ଙ୍ଗ ପାଠ ମଧ ଗ୍ରହଣୀୟ । ମନ ନୟନ ଦୁହିଁଙ୍କର ମୋହନ ପସରା—ମୋହିବା ଦୋକାନ ବା ପଦାର୍ଥ । ତର୍କିତ—ତର୍କଣା ହୁଏ ତ । ମର୍କତ ଲିଙ୍ଗ ପାଶରେ—ମର୍କତମଣିମୟ ଶିବଲିଙ୍ଗ ପାଖରେ । କ୍ଷୀର ଧାରା—ଦୁଧର ଧାର । [illegible]

ଅସିତ ପୀତ ରଙ୍ଗ ଫୁଲମାଳ । ଚୂଡ଼ା ବେଢ଼ାଇବା ଅତି ମଞ୍ଜୁଳ ।
ନବ ଜୀବନଦେ ଚାପବର୍ଗ୍ଗ । ମୂଦେ ଉଦେ ହେଲ ପରି ଅକ୍ଷେପ ସେ ।
ପଡ଼ି ଜଡ଼ି ରଙ୍ଗପାଶ ଯେ ।
ଅତନୁଜୟକୁ ସୁତନୁ ବାନ୍ଧିଲ ରଙ୍ଗିମା-କେତନ ପରି ଯେ । ୨୧ ।
ଶମ୍ପା-କମ୍ପା ଚମ୍ପାଚଉଁରୀ ବାମେ । ଅସୀମେ ଦକ୍ଷିଣେ ମଲ୍ଲିକାଦାମେ ।
ବକଶାବକ ସନ୍ନ ପନ୍ତ ଘନେ । ଶୋଭା ପ୍ରଭା ଦୁବଦଳକୁ ମାନେ ସେ ।
ବାଙ୍କ କନକଡଉଁରି ଯେ ।
ଜଗତ-ଜିତ ବସନ୍ତବର୍ଣ୍ଣ ଧନୁ ଅତନୁ ଅଞ୍ଚିଲ ପରି ଯେ । ୨୨ ।
ସିତ ଅସିତ ହେମଦୂର୍ବା ଦେବା । ଧନ୍ୟା ତ୍ରିଲୋକଜିତା ଜାଣିବା ।
ଭାଳି ଅଳୀ ହେଲେ ବିଶାଖା କରି । ଛଳି ଛଳି ସେ କହୁଛନ୍ତି ଠାରି ସେ
ତ୍ରିପୁରସାର ଏ ସରି ଯେ ।
ନାହିଁ ବୋଧର ନଥିଲା ଆନ କେହି, ଏହା ଏଭା ଏହା ସରି ଯେ । ୨୩ ।

---

୨୧ । ଅସିତ—କଳା, ନୀଳ । ପୀତ—ହଳଦିଆ । ରଙ୍ଗ—ଲାଲ । ମଞ୍ଜୁଳ—ସୁନ୍ଦର । ନବଜୀବନଦେ—ନୂଆ ମେଘରେ । ଚାପବର୍ଗ୍ଗ—ଇନ୍ଦ୍ରଧନୁ । ମୂଦେ—ହର୍ଷରେ । ଅକ୍ଷେପ—ତର୍କଣା । ରଙ୍ଗପାଶ—ନାଲିଆ ପାଶୁଆ । ପଡ଼ି ଜଡ଼ି—ଦେହରେ ପଡ଼ି ଲାଗିଗଲା ପରି ( ମେଘରେ ନାଲିଆ ପାଶ ପଡ଼ି ଜଡ଼ିଗଲା ପରି )। ଅତନୁ ଜୟକୁ—କନ୍ଦର୍ପକୁ ଜିଣିବାପାଇଁ । ସୁତନ—ସୁନ୍ଦରୀ ଶ୍ରୀରାଧା (ବା କେଶକାରିଣୀ) ରଙ୍ଗିମା-କେତନ—ନାଲିଆ ପତାକା ।

୨୨ । ବାମେ—ଚୂଡ଼ାର ବାମ ଭାଗରେ । ଶମ୍ପା କମ୍ପା—ବିଜୁଳି ଚଞ୍ଚଳ । ଚମ୍ପା ଚଉଁରୀ—ଚମ୍ପା ଫୁଲର ଚଉଁରୀ । ଦକ୍ଷିଣ—ଚୂଡ଼ାର ଡାହାଣ ପାଖରେ । ଅସୀମେ—ସୀମନ୍ତରେ, ପୃଷ୍ଠରୂପେ । ମଲ୍ଲିକା ଦାମେ – ମଲ୍ଲିମାଳାରେ ; ବକଶାବକପନ୍ତ—ବଗ ଛୁଆମାନେ । ଘନେ—ମେଘରେ । ଶୋଭାପ୍ରଭା—କାନ୍ତିଶୋଭା । କନକ ବାଙ୍କ ଡଉଁରି—ସୁନା ବଙ୍କା ଡଉଁରିଆ । ଜଗତଜିତ—ଜଗତ ଜୟକାରୀ ବା ଜଗତ ଜିଣିବାକୁ : ବସନ୍ତ ବର୍ଣ୍ଣ—ହଳଦିଆ ରଙ୍ଗର । ଅତନୁ—କାମଦେବ । ଅଞ୍ଚିଲ—ଅଣ୍ଟିଲା । ଟଙ୍କାରିଲା—ଟାଣିଲା ।

୨୩ । ସିତ—ଧଳା । ଅସିତ—କଳା । ହେମଦୂର୍ବା—ସୁନା ଦୂବ, ଦେବା—ଦେଲେ । ଧନ୍ୟା—ସାଧ୍ୱୀ । ତ୍ରିଲୋକଜିତା—ତ୍ରିଭୁବନ ସୁନ୍ଦରୀ ଜିଣିପାରିବାର ଜାଣିବା । ଅଳୀ—ସଖୀମାନେ । ବିଶାଖା କରି—ଅନୁଭବ କରି । ସେ ଦୂତୀମାନେ, ଛଳି—ଛଳ (ରାଗି) ଛଳି—ପରିହାସ କରି ଠାରି କହୁଛନ୍ତି କି । ଏ ତ୍ରିପୁରସାର—ଏ ରାଧିକା ତିନି ଭୁବନରେ ଶ୍ରେଷ୍ଠ । ଏହା ସରି—ଏହା ସମାନ ।

Digitized by srujanika@gmail.com

ଯୁବା ଦେବାରେ ଖଞ୍ଜି ଚନ୍ଦ୍ରମୁଖା । ନୂତନ ଘନରୁ କି ଚ୍ୟୁତ ଶମ୍ପା ।
ତମ କି ସୋମ ନିକଟ ଗଲା । କି ଅଶେ ଆସେ କି ଅନ୍ଧାର ବଳି ସେ ।
ପାଟରଜ୍ଜୁରେ ଉଦ୍ଭିନ ସେ ।
କେଶେ ମନ ମୋହେ ନବ ଶଶି ଆସି କେଶଗୁଚ୍ଛ ମଧ୍ୟ ଦୋଳି ସେ ।୨୪।
ଝିଲମିଲ ମାଳୀ ଅଳକା ପାଶେ । ଛଟନ୍ତ ଘନେ ବିଦ୍ୟୁତରେଖା କି ଦିଶେ ?
ଝଲକା ଝଲକ ପାନପଟସି । ହୃଦ ଦଳ କରେ ପଲକ ରହି ସେ ।
କାନ୍ତ କାନ୍ତମୁଖେ ଭ୍ରାନ୍ତ ସେ ।
ପାଖରେ ସ୍ପର୍ଶରେ ତାରାଏ ଦେଖିଲେ କି ସ୍ୱନହୀନ ଦୁଲଦୁଲ ସେ । ୨୫ ।
ଅଳକାତଳରେ ଚୋପି ଚନ୍ଦନ । ଗର୍ଜି ଦର ସାଞ୍ଜବାର ଶୋଭନ ।
ତମିର କବରୀକି ପ୍ରତେ କରି । ମୁଖବିଧୁ ଚାରବଧୂ ସେବି ସେ ।
ରହି ବନ୍ଧିବାକୁ ତୋଷ ସେ ।
ଦଂଶି ମିଶି ଯାଉନାହିଁ ବ୍ୟଭିଚାର ଶଙ୍କା ଦେଇ ମନେ ମନ ସେ । ୨୬ ।

---

୨୪ । ଯୁବା—ନବଯୌବନା ବେଶକାରିଣୀ । ଶମ୍ପା—ବିଜୁଳି । ନୂତନ ଘନରୁ—ନୂଆ ମେଘରୁ । ଚ୍ୟୁତ—ଖସିପଡ଼ୁଛି । ତମ—ରାହୁ । ସୋମ—ଚନ୍ଦ୍ର । କି ଅଶେ—କି ଅଭିପ୍ରାୟରେ । ଅନ୍ଧାର ବଳି—ଅନ୍ଧକାରକୁ ପରାସ୍ତ କରି, ଆସେ କି —ଆସୁଛି କି ? ରଜ୍ଜୁରେ—ଦଉଡ଼ିରେ । ଉଦ୍ଭିନ—ଲମ୍ବି । ନବ ଶଶୀ—ନୂତନ ଚନ୍ଦ୍ର ।

୨୫ । ଅଳକା ପାଶେ—ଚୂର୍ଣ୍ଣ କୁନ୍ତଳ ପାଖରେ । ଛଟନ୍ତ—ଆବରଣରେ, ଘନାଚ୍ଛନ୍ନେ—ଘନାବରଣେ । ବିଦ୍ୟୁତରେଖା—ବିଜୁଳି ଲତା । ଝଲକା ଝଲକ—ଝଲକା ଝଲକିବାର । ପାନପଟସି—ଅଳଙ୍କାର ବିଶେଷ । ପଲକ—ନମେଷ ଯେ ଶୋଭା ଦେଖି ଚକ୍ଷୁ ଅପଲକ ହୋଇଯାଏ । କାନ୍ତ—ସୁନ୍ଦର । କାନ୍ତମୁଖେ—ଚନ୍ଦ୍ରମୁଖେ; ପକ୍ଷ ଚନ୍ଦ୍ର ତୁଲ୍ୟ ମୁଖରେ, ଅଥବା ଷୋଳ ଚନ୍ଦ୍ର ପରି କମନୀୟ ମୁଖରେ । ପଖରେ—ଶୀଘ୍ର । ତାରାଏ—ତାରକାମାନେ, ଅଶ୍ୱିନୀ ଆଦି ନକ୍ଷତ୍ରମାନେ; ସ୍ୱନହୀନ—ଧ୍ୱନି ନ କରି ।

୨୬ । ଚାଞ୍ଚକଞ୍ଚ—ଧାଡ଼ି କରି । କବରୀକ—ଜୁଡ଼ାକୁ, କେଶ ବେଣୀକୁ, ତମିର ପ୍ରତେ କରି—ସର୍ପ ବୋଲି ବିଚାରି । ମୁଖବିଧୁ—ମୁଖରୂପ ଚନ୍ଦ୍ରକୁ । ତୋଷ—ଶୋଭା । ଦଂଶି—ସର୍ପି । ବ୍ୟଭିଚାର ଶଙ୍କା—କପଟୀ ଭାର୍ଯ୍ୟା । (ଚନ୍ଦ୍ର-ତାରକାମାନେ ବିବାହିତା ଭାର୍ଯ୍ୟା, ଦଶି ବ୍ୟଭିଚାରିଣୀ ଭାର୍ଯ୍ୟା ହେବାରୁ ତାହା-ମାନଙ୍କ ସଙ୍ଗେ ମିଶୁ ନାହିଁ ପରା । )

Digitized by srujanika@gmail.com

କସ୍ତୁରୀ ଭ୍ରମରୀ ଚିତ୍ରଲେଖନ । ମଦନ-ମନ-ମୋହନ-ସଦନ ।
କମଳମେଳ ଇଚ୍ଛି ବେଢ଼ିଛନ୍ତି । ଛୁଅ ନୁଆ ଅଳି ଛଳି କରନ୍ତି ସେ ।
ଏମନ୍ତ ଚିତ୍ରକୁ ଅନେ ଯେ ।
ଜନ-ନୟନ-ବନ୍ଧନକୁ ମଦନ-ଶୃଙ୍ଖଳା ସଂସ୍ଥିତ କି ସେ ଯେ । ୨୭ ।
ଚନ୍ଦନପାଣ୍ଟୀ ପତ୍ରପାଣ୍ଟୀ ଶୁଭ୍ର । କୋଟି ପାଟି ବର୍ଣ୍ଣି ପାରିବେ ନାହିଁ ।
ଗଉରୀ ଗଉରୀ ମିତ୍ରତାପଣେ । ଶଶୀ ଭୂଷିତ ଶେଷ ଦେବ ମଣେ ସେ ।
ନାଗ ନାଗ ଜାତ ସ୍ଥିତ ଯେ ।
ମଣି, ମଣି ଥୋଇ ଭ୍ରୂ-ବ୍ୟାଳ-ଲୀଳାବନ୍ତ ସତ ପରଗତ ସେ । ୨୮ ।
ଗଣ୍ଡମଣ୍ଡଳକୁ ବିଚିତ୍ର କଲେ । ମକରୀ କସ୍ତୁରୀ ଲେଖି ନିରେଖିଲେ ।
ସୁଧାପିଣ୍ଡ ଖଣ୍ଡ ପରି ମାଧୁରୀ । ଅଙ୍କ ବାଙ୍କରେ କି ଦେଲା ଭଉଁରୀ ସେ ।

---

୨୭ । କସ୍ତୁରୀ ଭ୍ରମରୀଚିତ୍ର ଲେଖନ—କସ୍ତୁରୀରେ ଭ୍ରମରୀ ଚିତ୍ର ଶ୍ରେଷ୍ଠ ଶ୍ରେଷ୍ଠ ଭ୍ରମର ଚିତ୍ର ଲେଖିବା । ମଦନ ମନମୋହନ ସଦନ—କନ୍ଦର୍ପର ମନ ମୋହିବା ସ୍ଥାନ ବା ମାଦକ । କମଳମେଳ—ପଦ୍ମରେ ମିଳି ରହିବାକୁ ଇଚ୍ଛା କରି; ଅଳି—ଭ୍ରମର । ଜନନୟନ ବନ୍ଧନକୁ—ଲୋକଙ୍କ ଆଖିକୁ ବାନ୍ଧିବାକୁ । ମଦନ ଶୃଙ୍ଖଳା—କନ୍ଦର୍ପର ଶିକୁଳି । ସଂସ୍ଥିତ—ସ୍ଥାପିତ ।

୨୮ । ଚନ୍ଦନପାଣ୍ଟୀ ପତ୍ରପାଣ୍ଟୀ—ଚନ୍ଦନପାଣ୍ଟୀର ଶୁଭ୍ର ଧାର ଲେପନକ୍ରମ । କୋଟିପାଟି—ଶେଷଦେବ । ଗଉରୀ—ପାର୍ବତୀ । ଗଉରୀ ମିତ୍ରତାପଣେ—ଗୋରୀ ଶ୍ରୀରାଧାଙ୍କ ସାଦୃଶ୍ୟ ରୂପକ ମିତ୍ରତା ହେତୁରୁ ( ମିତ୍ରତା ପଣେ—ମିତ୍ର ବ୍ୟବହାରରେ) । ଶଶୀଭୂଷିତ ଶେଷଦେବ—ଚନ୍ଦ୍ରଙ୍କ ଓ ଅନନ୍ତ ବା ବାସୁକି ସର୍ପରେ ମଣ୍ଡିତ ବା ଚନ୍ଦ୍ରମଣ୍ଡିତ ଶେଷଦେବ । ମଣେ—ଜ୍ଞାନ କରେ, "ଶଶୀ-ଭୂଷିତ ଶେଷେ ଦେବ ମଣେ, ଶଶୀ ଭୂଷିତ ଶେଷ ଯେବା ମଣେ" ପାଠ ଦ୍ୱୟ ମଧ୍ୟ ସେହି ଅର୍ଥରେ । ରାଧାଙ୍କ ମୁଖରେ ଚନ୍ଦନପାଣ୍ଟୀ—ରାଧାଙ୍କ ମୁଖ ହେଲା ଚନ୍ଦ୍ର, ଚନ୍ଦନପାଣ୍ଟୀ ସର୍ପାକୃତି ହେତୁ ଶେଷଦେବ ସଦୃଶ; ଗୌରୀ—ପାର୍ବତୀ, ଶିବପତ୍ନୀ ହେତୁ ସେ ଚନ୍ଦ୍ରଶେଖର ଓ ସର୍ପମଣ୍ଡିତା ହେଲେ । ନାଗ ନାଗ—ସର୍ପଶ୍ରେଷ୍ଠ, ଶେଷଦେବ । ଜାତସ୍ଥିତ—ଜନ୍ମି ଶିଶୁରୂପେ ରହିଅଛନ୍ତି । ମଣି—ମନେକରି । ମଣି—ନିଜ ମସ୍ତକ ମଣିକୁ । ଭ୍ରୂବ୍ୟାଳ—ଭ୍ରୂଲତା ରୂପକ ସର୍ପ । ଲୀଳାବନ୍ତ—ଲୀଳାଯୁକ୍ତ, ବଳାଧଯୁକ୍ତ । ସତ—ନିଶ୍ଚୟ; ପରଗତ—ଜଣାଯାଏ ।

୨୯ । ଗଣ୍ଡମଣ୍ଡଳକୁ—ଗାଲକୁ । ବିଚିତ୍ର—ରଞ୍ଜିତ ଓ ଆଶ୍ଚର୍ଯ୍ୟଜନକ । ମକରୀ—ମକରାକାର ଚିତ୍ର ରଚନା । ସୁଧାପିଣ୍ଡଖଣ୍ଡ—ଚନ୍ଦ୍ରଖଣ୍ଡ । ମାଧୁରୀ—

ମତଙ୍ଗ ନୋହେ ମଦର ଯେ ।
ଦେଖି ଲକ୍ଷିବ ନାହିଁ କହି ବିବେକ ଉଗବିଜେ ମଦନର ଯେ । ୨୯ ।
ଚେଟକ ନାକରେ ଭଳକ ଦସ୍ତୁ ସ୍ଥି । ରତନାସ୍ଵକ କ ସାସ୍ୱକ ଧରି ।
ରଚନା ଗ୍ରୋଚନା ତାଲକୁ ଅଢ଼ି । ରଙ୍ଗ ତରଙ୍ଗ ନୟନ ଧାଉଡ଼ ଯେ ।
ସାଧିବା ବନ୍ଧିବା ଢଙ୍ଗେ ଯେ ।
ରୁଚିରୁ ଭ୍ରୂରୁ ଧନୁ ଅଞ୍ଜନ ରଞ୍ଜନ ଗୁଣେ ଦୃଷ୍ଟି ଶର ଭରେ ଜେ । ୩୦ ।
ଅଣି ମାଣିକ୍ୟସାର ନାକଚଣା । ତାର ଅବଦ୍ରା ନାଟ୍ୟ ଗନ୍ଧ ଜଣା ।
ତାର ଅବସାଖେ ନଥ ବସିଜେ । ମୋତିପନ୍ତି ରତ୍ନ ଝଲକା ସାଜେ ଯେ ।
ତାର ବାର ଅଭ କ ସେ ଯେ ।
ମିଷି ଶଶୀ ମୃଗ ଭାବ ଖେଳା ନାକେ କରୁଥିବାର ଆଦ୍ୟେ ଯେ । ୩୧ ।
ଶ୍ରୁତି ଶ୍ରୁତି ବନ୍ଦ୍ୟ ଉପମା ବଳି । ବଜ୍ର ବଜ୍ରବତ ମଲ୍ଲିକାବଳୀ ।
ରୁଚିରୁ ଗୁରୁ ରତ୍ନ ତାଟଙ୍କ ଚନ୍ଦ । ଖଞ୍ଜିଲେ ଗଞ୍ଜିଲେ ଉପମା ଚନ୍ଦ ଯେ ।

୨୯-୨ — ବେଖି ଲେଖିଲେ ଗ, ଘ, ଚ, ଟ, ୨୯-୩ ଦେଖି ଲେଖିବ ନାହିଁ-କ, ଖ, ଚ, ଛ

ଶୋଭା । ଅଙ୍କ—କଳଙ୍କ । ବାଙ୍କରେ—ବଙ୍କାଭାବେ । ମକର—ମଚରେ, କନ୍ଦର୍ପ ପତାକା ସ୍ଵରୂପ । ବିବେକ—ବିଶୃଙ୍ଖଳ ।

୩୦ । ଚେଟକ ନାକରେ—ଉନ୍ନତ ନାସିକାରେ । ରତିନାୟକ—କନ୍ଦର୍ପ । ସାୟକ—ଖଡ଼୍ଗ ଓ ଶର । ଗ୍ରୋଚନା ରଚନା—ଗୋରୋଚନା ଛନ୍ଦ ରଚନା । ରଙ୍ଗତରଙ୍ଗ—ଭଙ୍ଗୀରେ ଚଞ୍ଚଳ, ଧାଉଡ଼—ଯିବାଆସିବା । ସାଧିବା—ଖଡ଼୍ଗ ସାଧନ, ବନ୍ଧିବା—କାଣ୍ଡଲକ୍ଷ ଅଭ୍ୟାସ । ରୁଚିରୁ—ସୁନ୍ଦର । ଭୂରୁଧନୁ—ଭ୍ରୂଲତା ରୂପକ ଧନୁ । ଅଞ୍ଜନରଞ୍ଜନ—କଜ୍ଜ୍ୱଳ ରଞ୍ଜିବା ହେଲା ଗୁଣେ—ଧନୁର୍ଗୁଣରେ, ଦୃଷ୍ଟିଶର—ଦୃଷ୍ଟିବାଣ ରୂପ ଶରକୁ । ଭରେ—ବସାଉଛି ।

୩୧ । ମାଣିକ୍ୟସାର—ମାଣିକ୍ୟଶ୍ରେଷ୍ଠ । ନାକଚଣା ଅଣି—ନାକଚଣା ଶୋଭା । ତାର ଅବଦ୍ରା—ଉଜ୍ଜ୍ୱଳ ଅର୍ଦ୍ରା ନକ୍ଷତ୍ର । ନାଟ୍ୟ—ନାଟ । ମୋତିପନ୍ତି ରତ୍ନ ଝଲକା—ମୋତିସମୂହଯୁକ୍ତ ରତ୍ନମଣିର ଝଲକା । ସାଜେ—ଶୋଭାପାଏ । ତାରବାର—ନକ୍ଷତ୍ର ସମୂହ । ଶଶୀ—ଚନ୍ଦ୍ର । ନାକେ—ନାକରେ ଓ ସ୍ୱର୍ଗରେ । ସେ ମୋତିପନ୍ତି ରତ୍ନ ଝଲକା ନକ୍ଷତ୍ରସମୂହ କି? ଅଉ ମୁଖ-ରାଧାଙ୍କ ମୁଖକୁ ଚନ୍ଦ୍ର ଭାବି ନାସିକାରେ ଖେଳା କରୁଥିବା ଜଣାଯାଏ ।

୩୨ । ଶ୍ରୁତି—କର୍ଣ୍ଣ । ଶ୍ରୁତିବନ୍ଦ୍ୟ—ବେଦବନ୍ଦନୀୟ; ଉପମାବଳି—ଉପମାତୁଲ୍ୟ । ବଜ୍ର—ଇନ୍ଦ୍ରଙ୍କ ଅସ୍ତ୍ର ସ୍ଵରୂପ । ବଜ୍ରବତ—ହୀରାଖଚିତ, ମଲ୍ଲିକାବଳୀ—ମଲ୍ଲିକଢ଼ି । ରୁଚିରୁ—ମନୋହର । ଗୁରୁ—ଉତ୍କଟ ବା ବୃହତ୍

ଜିଷ୍ଣୁ ବିଷ୍ଣୁ ଜିଣି ଅଣି ଯେ ।
ଚଳା ପିପ୍ପଳା ତୋଡର ଫୁଲଝରି କରି କି ରଖିଲ ଅଣି ଯେ । ୩୨ ।
ଅଞ୍ଜନ-ଖଞ୍ଜନ-ଜିତ ନେତ୍ରକୁ । ଗଞ୍ଜିଲେ ନାହିଁ ଗଞ୍ଜିଲେ ଯୁବାଙ୍କୁ ।
ଅତନୁ-ଧନୁ-ବଙ୍କିମ ଭ୍ରୂଲତା । ଗୁଣ ଭୂଷଣ ପରିସ୍ଥେ ଶୋଭିତା ସେ ।
ତୋଳା ଖେଳାଇବା ତୋରି ଯେ ।
କାଳୀ କାଳିନ୍ଦୀରେ ଚହଟି ଯାଉଛି ସଲ୍ଲିଳେ ରାଜୀବ ପରି ଯେ । ୩୩ ।
ଲଞ୍ଜି ଭଞ୍ଜିଲା ଉପମା ଗୁମାନ । କଞ୍ଜବସା ଖଞ୍ଜନ କି ଶୋଭନ ।
ଶିବ ନେତ୍ର-ଅନ୍ଧୁଁ କଳା ସର୍ପିଣୀ । ଖେଳ ଚଳ ବଳ ଅସିଛି ମଣି ସେ ।
ଶ୍ରୁତି ଶ୍ରୁତି ବାକ୍ୟେ ଦୂଷି ଯେ ।
ନିଷେଧ ନିଷେଧ ବୋଲି ପରି କାମ ତର୍ଜେ କି [illegible] ଅସି ଯେ । ୩୪ ।
ଗୁରୁ ଅଗୁରୁପୋଡା କାଳୀ ବେଣୀ । ଭୃଙ୍ଗମୃଗ ବିରତଲେ ସଜଣୀ ।
ଭିନ୍ନ ନୋହିଲ ତ ତବୁକ ତୋରି । ମନ ଘୋଟଇ ଅଦଭୁତ ପରି ସେ ।

୩୨-୫—ବାଣୀ ଅଣି ଘ, ଘ, ଚ, ଛ, ଜ ।

---

ତାରରୂପ । ଉନ୍ନତାଙ୍କଚକ୍ର—ମଣିମୟ ଚକ୍ରାକାରପକ ଚକ୍ର, ଅଙ୍ଗୁଳିବିଶେଷ । ଉପମାଚକ୍ରକୁ—ଉପମାନସମୂହକୁ । ଗଞ୍ଜିଲେ—ତିରସ୍କୃତ କଲେ । ଅଣି—ଶୋଭା । ଜିଷ୍ଣୁ—ଇନ୍ଦ୍ର, ବିଷ୍ଣୁ—ନାରାୟଣ । ଚଳାପିପ୍ପଳା—ଚଞ୍ଚଳ ପିପ୍ପଳାଳଙ୍କାର । ତୋଡର—ବୀରର ପାଦ ଅଳଙ୍କାର ( ପାଦ କଳା ) ଫୁଲଝରି କରି ଅଣି ରଖିଲ କି ।

୩୩ । ଖଞ୍ଜନଜିତନେତ୍ରକୁ—ଖଞ୍ଜନପକ୍ଷୀ ଜୟକାରୀ । ଅତନୁ ଧନୁବଙ୍କିମ—କନ୍ଦର୍ପଧନୁକୁ ଜିଣିଥିବା, ଗୁଣଭୂଷଣ—ଧନୁର ଗୁଣ (ଦଉଡ଼ି)ରେ ଶୋଭିତ । ତୋରି—ଶୋଭା । କାଳୀ କାଳନ୍ଦୀରେ—କଳା ଯମୁନାରେ । ସଲ୍ଲିଳେ ଲୀଳାଯୁକ୍ତ ହୋଇ । ରାଜୀବ—ପଦ୍ମ ।

୩୪ । ଉପମା ଗୁମାନ—ଉପମାନମାନଙ୍କର ଅହଙ୍କାର । କଞ୍ଜବସା ଖଞ୍ଜନ—ପଦ୍ମରେ ବସିଥିବା ଖଞ୍ଜନାଟ ଚଢ଼ାଇ, ଶୋଭନ—ସୁନ୍ଦର କି ? ଶିବ ନେତ୍ରସରୁଁ—ସୁନ୍ଦର ଅକ୍ଷିରୂପ ପୋଖରୀରୁ, କଳା ସର୍ପିଣୀ—କାଳୀସାପ, କୃଷ୍ଣସର୍ପ । ଖେଳ ଚଳ—ଚଳ ଚଞ୍ଚଳ ହୋଇ, ବଳଅସିଲା ମଣି—ବଳବନ୍ତ ଅସିଲାପରି ଜଣାଯାଏ । ଶ୍ରୁତି ଶ୍ରୁତିବାକ୍ୟେ—କର୍ଣ୍ଣରୂପୀ ବେଦମନ୍ତ୍ରକୁ । ଦୂଷି—ଦୂଷିତ କରି । ନିଷେଧ—ନୁହେ ନୁହେ । କାମ—କନ୍ଦର୍ପ । ତ[illegible]ର୍ଜେ—ଚମକୁଅଛି, ଭୟଦେଖାଏ । ଅସି—ଖଣ୍ଡା ।

୩୫ । ଗୁରୁ—ସୁନ୍ଦର । ଅଗୁରୁ ପୋଡ଼ାକାଳ—ଅଗୁରୁ ଚନ୍ଦନକାଠ ପୋଡ଼ି କରାଯାଇଥିବା କାଳୀ । ଭୃଙ୍ଗଯୁଗ—ଭ୍ରମର ଯୁଗଳ । ତୋରି—ଶୋଭା । ପରସ୍ପର

Digitized by srujanika@gmail.com

ପରସ୍ପର ଅନୁଗତ ଯେ ।
ଶ୍ୟାମ କାମ ଅର୍ଦ୍ଧମାତ୍ରା ଭିତରେ ବୃନ୍ଦେ ଉପମିତ ହୋଏ ଜାତ ଯେ । ୩୫ ।
ପାଣି ପାଞ୍ଚଜନ୍ୟ ସାକ୍ଷାତେ ଗ୍ରୀବା । ଶ୍ରେଷ୍ଠ ପଞ୍ଚରତ୍ନେ ପୂଜା କରିବା ।
ଆଳି ଅଳୀ ଆଳୀ ଖଞ୍ଜିଲେ ନେତ୍ର । ଶତ୍ରୁ ଏମନ୍ତ ପ୍ରତୀତ ଯେମନ୍ତ ମେ ।
ସୁଗ୍ରୀବ ସୁଗ୍ରୀବ ଭଳି ଯେ ।
ବାଳୀ ବାଳୀ ବୋଲି ପଞ୍ଚବର୍ଣ୍ଣ ପାଣେ ହେଲେ କି ବାନ୍ଧବା ଭଳି ଯେ ।୩୬।
ସିତ ପୀତ ପିଙ୍ଗ ରଙ୍ଗ ଅସିତ । ଅତିଜ୍ୟୋତି ମଣି ଫୁଲ ଲୁଳିତ ।
ପୃଷ୍ଠରେ ପୃଷ୍ଠରେ ହୋଇଛନ୍ତି ଶୋଭା କି କାମ ହେମପ୍ରଭ୍ର ପଟା ଫଗ ମେ ।
ଭବା ଦେବା ପିଣ୍ଡ ବୋଲି ଯେ ।
ବଲ୍ଗୁ ଫଲ୍ଗୁ ମଧ୍ୟେ ପଞ୍ଚଜନ୍ୟା ପଞ୍ଚବର୍ଣ୍ଣେ ପୁଷ୍ପ ଯେଣ ମିଳା ନେ । ୩୭ ।

୩୭-୨—ଫୁଲ ଲମ୍ବିତ କ. ଖ, ଗ, ଘ, ଚ, ଜ; ଠ; ୩୭-୫—ଦେବ ପିଣ୍ଡ ଗ, ଘ, ଚ, ଛ, ଜ;

---

ଅନୁଗତ—ଅନ୍ୟୋନ୍ୟରେ ସଙ୍ଗତ; ଶ୍ୟାମ କାମ—ଶ୍ରୀକୃଷ୍ଣ ଓ କନ୍ଦର୍ପ ବା କଳା କନ୍ଦର୍ପ (କ୍ଲୀଁ ଓ କ୍ରୀଁ ବୀଜ); ଅର୍ଦ୍ଧମାତ୍ରା - ଚନ୍ଦ୍ରବିନ୍ଦୁର ତଳସ୍ଥିତ ଅର୍ଦ୍ଧଚନ୍ଦ୍ରାକାର ରେଖା ମଧ୍ୟରେ । (ଯୋଗମାୟା କୋଳରେ କାମରୂପୀ ଶ୍ରୀକୃଷ୍ଣ) ଉପମିତ—ଉପମା ସାଦୃଶ୍ୟ ।

୩୬ । ପାଣି—ବଣ୍ଟୁର କର । ପାଞ୍ଚଜନ୍ୟ—ବିଷ୍ଣୁଙ୍କ ଶଙ୍ଖ । ଗ୍ରୀବା—ବେକ । ଶ୍ରେଷ୍ଠ – ସୁବିହିତ, ଉତ୍ତମ । ପଞ୍ଚରତ୍ନେ—[ନୀଳା, ହୀରା, ପଦ୍ମରାଗ, ମୁକ୍ତା, ପୋହଳା ଏମାନେ ପଞ୍ଚରତ୍ନ; କେତେକଙ୍କ ମତରେ ସୁନା, ରୁପା, ମୁକ୍ତା, ରାଜାବର୍ତ୍ତ ନକୃଷ୍ଣ ଜାତୀୟ ହୀରା), ପୋହଳା; ଅନ୍ୟ କେତେକଙ୍କ ମତରେ ସୁନା, ହୀରା, ନୀଳା, ପଦ୍ମରାଗ ଓ ମୁକ୍ତା]=ପଞ୍ଚରତ୍ନ ମାଳରେ । ଆଳି—ସଖୀମାନେ । ପ୍ରତୀତ—ବିଶ୍ୱାସ । ସୁଗ୍ରୀବ—ସୁନ୍ଦର ବେକ । ସୁଗ୍ରୀବ—ବାଳି ଭାଇ ମର୍କଟ । ବାଳୀ– ବାଳା, ଶ୍ରୀରାଧା । ବାଳୀ—ମର୍କଟରାଜା । ପଞ୍ଚବର୍ଣ୍ଣ ପାଣେ—ପଞ୍ଚୁ ବନ ପାଣରେ, ପଞ୍ଚବର୍ଣ୍ଣ ମାଳୀ ପାଖରେ । ପାଣରେ—ବୃକ୍ଷରେ, ବାନ୍ଧବାବଳି ହେଲେ କି ଅର୍ଥାତ୍ ସୁଗ୍ରୀବ ବାଳୀ ଦୁହିଁଙ୍କ ଏକାଠେଇ ରଖିଲେ ।

୩୭ । ସିତ—ଧଳା, ପୀତ –ହଳଦିଆ; ପିଙ୍ଗ—ପିଙ୍ଗଳବର୍ଣ୍ଣ; ଅସିତ— କଳା । ଅତି ଜ୍ୟୋତି—ତେଜୀୟାନ୍ । ମଣିଫୁଲ—ମଣିମୟଫୁଲ । ଲୁଳିତ— ଲୋଚୁଅଛୁ । ପୃଷ୍ଠରେ—ପିଠିରେ । ପୃଷ୍ଠରେ—ବିଶେଷରୂପେ; ଶୁଭ - ଉଜ୍ଜ୍ୱଳ । କାମ—କନ୍ଦର୍ପର । ହେମପ୍ରଭ୍ର—ସୁନା ରଙ୍ଗର ଦେବତା ଅଭ୍ରକ ବର୍ଷିବା ପ୍ରଭ୍ର—

Digitized by srujanika@gmail.com

ବାହୁ ବାହୁଟୀରେ ରଞ୍ଜନ କଲେ । ତାହା ତତ୍‌କ୍ଷଣେ ପୁଣି ଖଞ୍ଜିଲେ ।
ସାଜୁଁ ବାଜୁବନ୍ଧ ହୋଇଲା ଶ୍ରୁତ । ହେମା କଷାଇବ ଯୁବାଙ୍କ ସ୍ଥିତ ସେ ।
ସମ୍ଭୂତ ଅଦ୍ଭୁତ ଅତି ଯେ ।
ବିଜୁଳି ଗିଳିଥିଲା କି ତାସ୍ୱ ବାନ୍ତି କଲେ ଶୋହେ ଉତ୍ପନ୍ନ ଯେ । ୩୮ ।
ଖରେ କରେ ଦେଲେ ମର୍କତଚୂଡ଼ି । ଦେଖି ଅଖି ମାଏ ଶୋଭାରେ ବୁଡ଼ି ।
ଶ୍ରୀବ ରବିପ୍ରିୟା କରପଦ୍ମକୁ । ତମ କ୍ଷେମ ଇଚ୍ଛି କି ମୃଣାଳକୁ ସେ ।
ତାର ଚରଣ ବିଭ୍ରମେ ଯେ ।
ଜଡ଼ ଗୁଡ଼ିଅର ହୋଇ ବନ୍ଧିଲା କି ଶରଣାଗତର କ୍ରମେ ଯେ । ୩୯ ।
ବର କରପଦ୍ମ ମୂଳରେ ନେଇ । ଯୋଡ଼ କଟଅଳି ଦେଲେ ଖଞ୍ଜାଇ ।
ସାଜେ ବାଜେଣି କଙ୍କଣ ତା ପଛେ । ଘଣ୍ଟି ପଲଞ୍ଚ ଅଗ୍ରେ ଶୋହେ ସ୍ୱଚ୍ଛେ ସେ ।
ଜଡ଼ା ନାନା ରତ୍ନେ ପରି ଯେ ।
ଖେଦେ କୋକନଦେ ବେଢ଼ି ନ ମାରନ୍ତି ନଖ ଚନ୍ଦ୍ରେ ଶଙ୍କି ତାରା ଯେ । ୪୦ ।

---

(ଦେବତାଙ୍କ ଜ୍ୟୋତିର୍ମଣ୍ଡଳ ବା ତାହା ସୃଷ୍ଟିକରିବା ପଦାର୍ଥ ବିଶେଷ); ଫଗୁ—ଫଗୁମାନେ । ପିଣ୍ଡ ଦେବା ହୋଇ—ପିଣ୍ଡଦାନ କରିବା ଉଦ୍ଦେଶ୍ୟରେ । ବଲ୍‌ଗୁ—ସୁନ୍ଦର । ଫଲ୍‌ଗୁ—ଗୟାର ନଦୀ ବିଶେଷ ।

୩୮ । ବାହୁଟିରେ—ଅଳଙ୍କାର ବିଶେଷରେ (ବଳୟରେ) ରଞ୍ଜନ କଲେ, ତତ୍‌କ୍ଷଣେ—ଶୀଘ୍ରରେ । ହେମା—ହେମ । ଅତି ଅଦ୍ଭୁତ—ଅତି ଆଶ୍ଚର୍ଯ୍ୟ । ସମ୍ଭୂତ—ଜାତ ହେଲା । ବିଜୁଳି ତାସମାନଙ୍କୁ ଗିଳିଥିଲା କି ବାନ୍ତି କଲେ । ଉତ୍ପନ୍ନ ଶୋହେ—ଏହିପରି ଶୋଭା ପାଇଲା ଅର୍ଥାତ୍ ବାଜୁବନ୍ଧ ସୁବର୍ଣ୍ଣ ହେମ ଉପରେ ହୋଇଥିବାରୁ କବି ଉତ୍ପ୍ରେକ୍ଷା କଲା ।

୩୯ । କରେ—ହାତରେ । ଖରେ—ବେଗରେ । କରପଦ୍ମକୁ—ରାଧାଙ୍କର କରପଦ୍ମକୁ । ରବିପ୍ରିୟା—ସୂର୍ଯ୍ୟଙ୍କ ଭାର୍ଯ୍ୟା ଛାୟା; ସୂର୍ଯ୍ୟଙ୍କ ପ୍ରୀତିପାତ୍ର । ତମ—ଅନ୍ଧକାର, କ୍ଷେମ ଇଚ୍ଛି—ମଙ୍ଗଳ ଇଚ୍ଛା କରି । ମୃଣାଳକୁ—ପଦ୍ମନାଳକୁ (ଭୁଜକୁ) । ତାର ଚରଣ ବିଭ୍ରମେ—ପାଦ ଭ୍ରମରେ, ରବିପ୍ରିୟାର (ପଦ୍ମର) ଚରଣ ଭ୍ରାନ୍ତିରେ, ଜଡ଼ ଗୁଡ଼ିଅର—ଜଡ଼ କନ୍ତି ଗୁଡ଼ାଇ । ଶରଣାଗତର—ଶରଣ ପଶିବା ଲୋକର । କ୍ରମେ—ପ୍ରକାରରେ ।

୪୦ । ବର—ଉତ୍କୃଷ୍ଟ । କରପଦ୍ମ—ହସ୍ତପଲ୍ଲବ । ସ୍ୱଚ୍ଛେ—ନିର୍ମଳରେ । ପଲଞ୍ଚ ନାନାରତ୍ନେ ଜଡ଼ା—ଜଡ଼ିତ । କୋକନଦେ—ରକ୍ତପଦ୍ମକୁ; ଖେଦେ ବେଢ଼ି—ଦୁଃଖରେ ବେଢ଼ି; ତାରା—ତାରକାମାନେ; ନଖଚନ୍ଦ୍ରେ—ନଖମାନଙ୍କୁ ଚନ୍ଦ୍ର ଶଙ୍କା କରି ମାରନ୍ତି ନାହିଁ ।

Digitized by srujanika@gmail.com

ମୃଦୁ ଉଦତ ଅଙ୍ଗୁଳିରେ କଲେ । ମୃଦୁ ସନ୍ଧି ମୃଦୁ କି ଅବା ଦେଲେ
ମାର ଶରସନ୍ଧା ମନେ ସମ୍ଭାର । ତାର ବରଣ କି କଲେ ଚତୁରୀ ସେ ।
କି ରାଗ ସରାଗ ସେନ ଯେ ।
ବେଢ଼ ଦେଲେ ଲେଢ଼ିବାକୁ ନ ଥିବଟି ସେ କାଳେ ଖଳ ମକର୍ମା ଯେ ।୪୧।
ଉଚ୍ଚ କୁଚଯୁଗ ମୃଗମଦରେ । ପତ୍ରକ ଶହ କଲେ ଅଙ୍କନରେ ।
ଊଣା ବାଣା ଭୂମୀ ଏହା ବାଧିକ । ଉରଜ କରକୁମ୍ଭ ମାଧୁରୀକ ସେ ।
ଅର୍ଘ୍ୟ କର୍ପୂର ଧୂଳିକ ଯେ ।
ଶମ୍ଭୁବଭୂତ ଲେପନ କି ଭୂଷିତ ଅସିତ-ଫୁଲ ମାଳକ ଯେ । ୪୨ ।
ମନମୋହନ ସ୍ଥଳ ସେ ନିଦାନ । ନେତ୍ର ପବନ୍ଧ ଚମତ୍କ ଘଟନ ।
ସୁରବାର ମୂର୍ଚ୍ଛା ହୋଇବେ ଦେଖି । କୃପାରେ କର୍ପାସକ ଦେଲେ ସଖୀ ସେ ।
ବନା ସୁନାକସି ବାସେ ଯେ ।
ଟିଲେ ବଜୁଳ ହେମଗିରି ଚହଟେ ଏହୁ ଅଦ୍ଭୁତ ଅଭାସେ ଯେ । ୪୩ ।

---

୪୧ । ଉଦତ—ପ୍ରକାଶିତ, ମଣ୍ଡିତ । ମୃଦୁ—ଅଳକ । ସନ୍ଧି—ସନ୍ଧିତ କଣ ।
ମୃଦୁ—ଚିଠି ବା ମୋହର, ଶରସନ୍ଧା—ଶର ସନ୍ଧିତ କରିବାକୁ । କନ୍ଦର୍ପ—କାମର
ସାଦୃଶ୍ୟ କରଣ—କନ୍ଦର୍ପର ପ୍ରତିଷ୍ଠା ବା ଆମନ୍ତ୍ରଣ । ଚତୁରୀ—ଶ୍ରୀରାଧା ବା
ଚତୁରୀମାନେ । ରାଗ—ଅନୁରାଗ ବା ରକ୍ତିମା, ସରାଗ—ଅନୁରାଗ ବା ଶ୍ରଦ୍ଧା । ସେନ
—ଧନ୍ଦ । ସେକାଳେ—ସମ୍ଭୋଗକାଳରେ । ଲେଢ଼ିବାକୁ ନ ଥିବଟି ମକର୍ମମାନେ
ଖଳ—ବେଢ଼ଦେଲେ—ଶୃଙ୍ଖଳାବଦ୍ଧ କଲେ । ମାରକୁ ଶୃଙ୍ଖଳାରେ ବାନ୍ଧିଲେ
କି ?

୪୨ । କୁଚଯୁଗ—ସ୍ତନ ଯୋଡ଼ିକ । ମୃଗମଦରେ—କସ୍ତୁରୀରେ । ଶହ
ପତ୍ରକ—ଶହ ପତ୍ରାବଳୀ ରଚନା । କଲେ—ଲେଖିଲେ । ଏହା ବାଧିକ—ଏ
ସ୍ତନ ଶୋଭାକୁ । ଖାଣା ଭୂମୀ—ଖାଣାର ଲାଜ । କରକୁମ୍ଭ ମାଧୁରୀକ—ହାତୀ ଗଣ୍ଡ-
ସ୍ଥଳ ଶୋଭାକୁ । କର୍ପୂର ଧୂଳି ଅର୍ଘ୍ୟ—କର୍ପୂର ଧୂଳି ପକାଇ ଦିଅନ୍ତେ । ଶମ୍ଭୁ—
ଶିବଲିଙ୍ଗ । ବଭୂତ ଲେପ—ପାର୍ଜିଣ ବୋଲାକି ? ଅସିତ ଫୁଲମାଳକ—କଳାଫୁଲ-
ମାଳାକୁ ଭୂଷିତ କଲେ । କୃଷ୍ଣ ଏହି ସ୍ତନରେ କଳାଫୁଲ ଷର ଭୂଷିତ ହେବେ ।

୪୩ । ସେ—ସ୍ତନ ଦ୍ୱୟ । ମନୋହର ସ୍ଥଳ—ମନମୋହନ ହେବାର ସ୍ଥାନ ।
ନିଦାନ—ନିଶ୍ଚୟ । ନେତ୍ର ପବନ୍ଧ—ଚକ୍ଷୁକୁ ପବନ୍ଧ କରିବାରେ । ଚମତ୍କ—ଆଶ୍ଚର୍ଯ୍ୟ-
ଜନକ । ଘଟନ—ସୁଗଠନ ବା ଚକ୍ଷୁ ପବନ୍ଧ କରିବାରେ ସୁନ୍ଦର ଉତ୍ତମ ଛନ୍ଦ ।

Digitized by srujanika@gmail.com

ରଣ-ରଣ ରଣ ଢାଳକୁ ତୂର । ସାଜେଣି ଭଲେ ବାଜେଣି ନୂପୁର ।
ତୁଳାକୋଟି ତୁଳା କୋଟିରେ ନାହିଁ । ହଂସକେ ହଂସକେ ବଳିବେ ତାହିଁ ସେ ।
ବାଦନ ନାଦ ଶୁଣିଲେ ଯେ ।
ଖଗେ ଖରେ ହଂସଗଞ୍ଜନ କରିବେ ହଂସଗତି ଗତି କଲେ ଯେ । ୪୪ ।
ବଳିକି ଦଳିବ ବଳକ ଏହୁ । ବଳା ଦେବା ବଳାରାତି କି ମୋହୁ ।
ସାର ପରଶଂସା କଂସାରେ ହେଜ । ଅବଳା ପ୍ରବଳା ବାଳା ଉତ୍ତାଜ ସେ ।
ଭଦ୍ର ସପ୍ତ ପାଦେ ଦେଲେ ଯେ ।
ଜ୍ୟୋତି ଜ୍ୟୋତିଷ ଶିବାଷ୍ଟକ ପଢ଼ି ବ ରତିରଣ ଅନୁକୂଳେ ଯେ । ୪୫ ।
ବରବରନା ଚକ୍ର-ଚକ୍ରବର୍ତ୍ତୀ । ଯେଣୁ ନେତ୍ର ନମିବାର ତ ନାଥ ।
ଝୁଣ୍ଟିଯ ଝୁଣ୍ଟିଅ ପ୍ରପଦ ଥିବ । କଣ୍ଠୀ ଝୁଣ୍ଟିବାର ଭଦ୍ରଦେବ ମେ ।

---

ସୁରବାର—ଦେବତାମାନେ । କୃପାରେ—ଦୟାରେ । କୂର୍ପାସକ—କାଞ୍ଚୁଳି । ସୁନାଜରି ବାସେ—ସୁନାଜରି ଲୁଗାରେ । ବଳା—ଢାଅର । ବିଜୁଳି ହେମଗିରି—ସୁନା ପର୍ବତକୁ ଗଲା—ଘୋଡ଼ାଇ ଦେଇ ଚଢ଼ଲେ—ସଂଠଲୁଛି ଏହି ଅଦ୍ଭୁତ ଉପମା, ଆଭାସେ—ପାଏ ।

୪୪ । ରଣରଣ ରଣ—କନ୍ଦର୍ପ ଯୁଦ୍ଧ ଅର୍ଥାତ୍ ସୁରତ । ତୂର—ତୂରବାଜା ହେବ ବୋଲି । ସାଜେଣି ଭଲେ—ପାଦରେ ଦେଲେ । ତୁଳା କୋଟି ତୁଳା—ନୂପୁରର ତୁଳନା । ହଂସକେ—ବାଜେଣିକଳାକୁ । ହଂସକେ—ହଂସମାନେ । ବାଦନ ନାଦ—ବାଜିବା ଶବ୍ଦ । ହଂସଗତି ଗତି କଲେ—ରାଧା ଗମନ କଲେ, ଖଗେ—ଆକାଶରେ । ଖରେ—ଶୀଘ୍ର । ହଂସ ଗଞ୍ଜନ କରିବେ—ହଂସ ଲଜ୍ଜିଯିବେ । ଲଜ୍ଜାରେ ରହିବେ ନାହିଁ ।

୪୫ । ଏହୁ ରାଧା ପାଦବଳା ବଳକ—ବଳ କହ ବଳକ—ବଳି ଅସୁରକୁ ଦଳିବ—ଥିଣିବ, ସପ୍ତ ପାତାଳ ପର୍ଯ୍ୟନ୍ତ ଧ୍ୱନି ଶୁଭିବ । ବଳା ଦେବା—ପାଦରେ ବଳା ଅଳଙ୍କାର ଦେବା; ବଳା ରାତିକ—ଇନ୍ଦ୍ରକୁ ମୋହିତ କରୁ । ସାର—ଉତ୍କୃଷ୍ଟ, ଅବଳା—ବଳହୀନା ସ୍ତ୍ରୀ ରାଧା । ପ୍ରବଳା—ବଳବତୀର । ଜ୍ୟୋତି ଜ୍ୟୋତିଷ—କଳାର ସଂଠକ ରୂପଟଣକ । ଶିବାଷ୍ଟକ—ମଙ୍ଗଳାଷ୍ଟକ । ରତିରଣ ଅନୁକୂଳେ—ସୁରତ ରୂପକ ଯୁଦ୍ଧକୁ ଅନୁକୂଳ କରିବା ବେଳରେ ।

୪୬ । ବର ବରନା ଚକ୍ରବର୍ତ୍ତୀ—ସ୍ତ୍ରୀଲୋକଙ୍କ ସମୂହରେ ସମ୍ରାଟ୍ ବା ସାମ୍ରାଜ୍ଞୀ । ଯେହୁ ହେତୁ ନମସ୍କାର କରିବାର ପ୍ରତ୍ୟକ୍ଷ ଯୋଗ୍ୟ । ପ୍ରପଦେ—ଅଗ୍ରଭାଗରେ, ପାଦର ଅଗ୍ରଭାଗରେ । କଣ୍ଠୀ—ପଗଡ଼ିଥିବା ଶରୀରରକ୍ଷକ । ଝୁଣ୍ଟିବାର—କୌଣସି ସ୍ଥାନରେ ଅଜ୍ଞାତସାରରେ ପାଦ ବାଜିବାର । ବା କ ରହି—କଣ କହି

Digitized by srujanika@gmail.com

ଅଛୁ ତ ବିଛିଆ ପୁଣି ଯେ ।
ମାନ ବିମୋଚନ ଧନ ବୋଲି ସଖୀ ମୁଦ ଦେବା ପରି ମଣି ଯେ । ୪୬ ।
ଗୁରୁ ପରୁ ଲାକ୍ଷାଲତା ଚନ୍ଦ୍ରବାର । ଦୁର୍ଗ ଦୁର୍ଗତିହର ବସିବାର ।
ପ୍ରାତ ପତଙ୍ଗଙ୍କ ରଙ୍ଗ ପରିଧି । କି ଶୃଙ୍ଗାର-ସୀମା ହେବ ବାଧି ସେ ।
ସ୍ୱର୍ଣ୍ଣ ଲେଖିଲେ କମଠ ଯେ ।
ଶରଣ ବାରଣ ଗତି ଭ୍ରମେ ହୋଇ ଶୋଭା କଲେ ପାଦପୃଷ୍ଠ ଯେ । ୪୭ ।
ଯତନ ଘନବରନ ବସନ । ପଡ଼ି ଘଡ଼ି ରଙ୍ଗ ଧଡ଼ି ଶୋଭନ ।
ନବଙ୍କ ବନ୍ଧ ପିନ୍ଧିଲା ପଣତେ । କି ଚପଳାଲୀଳା ଘନସଙ୍ଗତେ ସେ ।
ଜଳି ଜଳି ଅଗ୍ନି ଜ୍ୟୋତି ଯେ ।
ଦେଖି ଅଖି ଲକ୍ଷି ନ ପାରଇ ମୀନ ମୃଗବତ ରହି ପ୍ରୀତ ଯେ । ୪୮ ।

୪୬-୫—ବିଛୁଆ ପୁଣି ଗ, ଘ, ଚ, ଜ, ଠ । ୪୮-୪—ହେଲ ବାଧି ଙ, ଝ, ଠ ବ୍ୟତୀତ ସମସ୍ତ ପୋଥିରେ, ଏ ପାଠ ମଧ୍ୟ ସମୀଚୀନ.

---

ଝୁଣ୍ଟିବାର କହୁଦେବ । ବିଛୁଆ—ଅଳଙ୍କାର ବିଶେଷ (ବିଛା ଆକୃତିର ଗହଣା) । ମାନବିମୋଚନ ଧନ—ମାନ ଛାଡ଼ିବା ରୂପ ସମ୍ପତ୍ତି । ପଈ ପାଦ ଧଇଲେ ସ୍ତ୍ରୀମାନଙ୍କର ମାନ ଛାଡ଼ିଯାଏ, ଯେହେତୁ । ମୁଦ—ମୋହର । (ଗୁଣିକଣ୍ଠୀ—ମୁକୁଟକୁ ପ୍ରଣାମକାରୀଙ୍କର ବା ଶ୍ରୀକୃଷ୍ଣଙ୍କୁ, ମାନଭଞ୍ଜନ ପାଇଁ ପାଦତଳେ ପଡ଼ିଥିବାରୁ, ଝୁଣ୍ଟିବାର—ଦୂର କରିବାର, ଦୋଷ କଟିବାର) ।

୪୭ । ଗୁରୁ—ସୁନ୍ଦର । ଲାକ୍ଷାଲତା—ଅଳତାରେଖା । ଦୁର୍ଗତି ହର—ଦୁଃଖନାଶକ; ଦୁର୍ଗ—ଦୃଢ଼ସ୍ଥାନ, ଗଡ଼ । ପତଙ୍ଗ—ସୂର୍ଯ୍ୟଠାରେ । ରଙ୍ଗ ପରିଧି—ନାଲିଆ ମଣ୍ଡଳ । ଶୃଙ୍ଗାରସୀମା—ଅନୁରାଗ ଲୀଳାର ସୀମା । ବାଧି—ବ୍ୟାପାର । କମଠ—କଇଁଛ । ଅଳତାରେ କଇଁଛ ଲେଖିଲେ । ବାରଣ ଗତି ଭ୍ରମେ—ଗଜଗମନା ଶ୍ରୀରାଧାଙ୍କ ଗମନ ଦ୍ୱାରା ଗଜ ଭ୍ରମରେ । ଶରଣ ହୋଇ ପାଦପୃଷ୍ଠକୁ—ପାଦ ଉପରକୁ ଶୋଭା କଲେ । ରାଧାଙ୍କ ଗମନ ମନ୍ଥର ହେତୁ; ମନ୍ଥର ଯେ କମଠ ପାଦରେ ଶରଣ ପଶିଲେ କି ?

୪୮ । ଯତନ—ସୁନ୍ଦର । ଘନବରନ ବସନ—ମେଘ ପରି କଳା ଶାଢ଼ୀ; ନୂତନ ଘନବରନ ପାଠ ମଧ୍ୟ ସମୀଚୀନ । ପଡ଼ି—ଲୁଗା ଧଡ଼ିର ଅଂଶ ବିଶେଷ । ରଙ୍ଗଧଡ଼ି—ଲାଲଧଡ଼ି । ଶୋଭନ—ସୁନ୍ଦର । ବନ୍ଧ ପିନ୍ଧିଲା ପଣତେ ନବଙ୍କ—ନବବନ୍ଧ ବିଶିଷ୍ଟ ଛବି, ପଣନ୍ତରେ—କାନିରେ ଦିଆଯାଇଛି । ଚପଳା ଲୀଳା—ବିଜୁଳି ଖେଳ । ଘନ ସଙ୍ଗତେ—ମେଘ ସହିତରେ । ଜଳି—ଜଳୁଥିବା, ଜଳୁଛି

Digitized by srujanika@gmail.com

ବାହୁ ଝିଙ୍କୁ କୁଞ୍ଚି କଞ୍ଚି ସଜନୀ । ଧୀରେ ସମ୍ମୁଖରେ ରହିଥିଲେ ସେନି ।
ଛଳାଇ ବଳାଇ ଶ୍ରୀକରେ ଦେଇ । କଟି ବିମ୍ବୋଷ୍ଠୀ ବାସ ଲଗି ହେଲା ସେ ।
ଶୋଭା ପ୍ରଭା ନୋହେ କହି ଯେ ।
ଲଟକେ ବ୍ୟାକେ ଗ୍ରୀବା ମୋଡ଼ା ଓଷ୍ଠ ଭିଡ଼ା ଭଙ୍ଗୀ ପାବେ ଯୋଗୀ ମୋହି ଯେ ॥

ସଜାଡ଼ି ଶାଢ଼ୀ ଧଡି ଭିଡ଼ି ପିନ୍ଧେ । ଜଙ୍ଘା ଲହଙ୍ଗା ବାନ୍ଧି କରି ରୁନ୍ଧେ ।
ନିବଡ଼ ନୀବିବନ୍ଧନ ଯା ହେଲା । ଦୃଷ୍ଟି କୋଟି ମୃଗ ବାନ୍ଧିଲା ପାଶେ ।
ମଦନ ମାଦକ ପେଡ଼ି ଯେ ।
ରଙ୍ଗରେ ବଙ୍ଗାଳ ଗଣ୍ଡିରେ ହଳଙ୍ଗଳ ମୂଦ ଚର ଚଳେଣ ଥାଇ ଯେ । ୫୦ ।

ସୁତନୁ ତନୁ ଶୋଭା ହେବା ଶୋଭା । ସନକ-ଜନକ-ମୋହନ ପ୍ରଭା ।
ରତି ପଞ୍ଚକୋଳେ ମିଶିଲା ଡୋଳ । ଘନ ବିଜୁଳି କୋଳାକୋଳି ପରି ସେ ।
ଚେଳ ଚଞ୍ଚଳ ଜଘନେ ଯେ ।
କାମିରେ କଡ଼କା କରି କି ପଡ଼କା ବାନ୍ଧନ୍ତି କାମ ସଦନେ ଯେ । ୫୧ ।

୪୯-୫—ଜଳଜଳ ଅଗ୍ନି ଜ୍ୟୋତି କ, ଖ ଗ, ଚ, ଜ ।

---

କ ୨ ଅଗ୍ନି ଜ୍ୟୋତି—ଅଗ୍ନିର ତେଜ । ମୀନମୃଗବତ—ମାଛ ଓ ହରିଣ ପରି । ମାଛ ଓ ହରିଣ ଯେଉଁଙ୍କୁ ଭଲ ପାଆନ୍ତି । ପ୍ରୀତି—ସ୍ନେହ । ସେହିପରି ପ୍ରୀତି ଅଧିକ ହେଲା ।

୪୯ । ବାହୁ—ବାହୁକରି । ଝିଙ୍କୁ—ସାମଲେଇ । କୁଞ୍ଚି—କୁଞ୍ଚକରି । ଧୀରେ—ସ୍ଥିରେ । ସମ୍ମୁଖେ—ରାଧାଙ୍କ ଆଗରେ । ଛଳାଇ—ପରିହାସ କରି, ଭୁଲାଇ । ବଳାଇ—ବଳକାର କରି । ଶ୍ରୀକରେ—ରାଧାଙ୍କ ଶ୍ରୀହସ୍ତରେ । ବିମ୍ବୋଷ୍ଠୀ—ବିମ୍ବାଧରୀ ଶ୍ରୀରାଧା । ବାସ ଲଗିହେଲା—ଲୁଗା ପିନ୍ଧିଲା । ଶୋଭାପ୍ରଭା—ଶୋଭାର ଆତିଶଯ୍ୟ । ଲଟକେ ବ୍ୟାକେ—ଲଟକାରେ କପଟରେ । ଗ୍ରୀବା—ବେକ ।

୫୦ । ଜଘା—ଦୁଇଜଙ୍ଘକୁ । ଲହଙ୍ଗା ବାନ୍ଧି—ଲହଙ୍ଗା ପିନ୍ଧାକରି, କଚ୍ଛମାରି । ରୁନ୍ଧେ—ରୁନ୍ଧିଲା । ନିବଡ଼—ଦୃଢ଼ । ନୀବି—ବସ୍ତ୍ରଗ୍ରନ୍ଥି । ବନ୍ଧନ—ବନ୍ଧା । ଦୃଷ୍ଟି କୋଟିମୃଗ—ଆଖି ରୂପ ଅସଂଖ୍ୟ ମୃଗଙ୍କୁ । ପାଶେ—ପାଖରେ ଓ ଫାଶରେ । ମଦନ ମାଦକ ପେଡ଼ି—କନ୍ଦର୍ପ ଜନିତ ନିଶାର ପେଡ଼ି—ସ୍ଥାନ ବା କନ୍ଦର୍ପର ନିଶାର ସ୍ଥଳ ।

୫୧ । ସୁତନୁ ତନୁ—ସୁନ୍ଦରୀ ଶ୍ରୀରାଧାଙ୍କ ଦେହ । ସନକ ଜନକ ମୋହନ—ସନକ ମହର୍ଷି ଜନକ ରାଜର୍ଷିଙ୍କ ମୋହକାରକ । ପ୍ରଭା—ଶୋଭା, କାନ୍ତି । ରତି—କନ୍ଦର୍ପ ସ୍ତ୍ରୀ । ପଞ୍ଚକୋଳେ—କନ୍ଦର୍ପ କୋଳରେ, ଡୋଳ—ଶୋଭା । ଘନ—ମେଘ । କୋଳାକୋଳି—କୁଣ୍ଢାକୁଣ୍ଢି । ଚେଳ—ବସ୍ତ୍ର । ଚଞ୍ଚଳ—ହଲୁଥାଏ । ଜଘନେ—କଟିଦେଶରେ । କାମିରେ—କାମୁକ ଲୋକ ପକ୍ଷରେ । କଡ଼କା କରି—ଅହଙ୍କାର କରି, କଡ଼ାରେ । ପଡ଼କା—ପତାକା । କାମସଦନେ—କନ୍ଦର୍ପ ଗୃହରେ, ମର୍ମସ୍ଥାନରେ ଅର୍ଥାତ୍ ଯୋନିରେ ।

Digitized by srujanika@gmail.com

ରସନା ପ୍ରସନ୍ନାନନା କଟିରେ । ବାନ୍ଧିଲେ ନାହିଁ ବାନ୍ଧିଲେ ସୁବାରେ ।
ରସ ନାଗରଙ୍କୁ ବର ଅସ୍ୱତ୍ୱ । କଣିବ କିଙ୍କିଣୀ କ୍ଷୁଦ୍ର ଘଣ୍ଟି ତ ସେ ।
ରତ-ପତ ମହୋତ୍ସବେ ସେ ।
ସୁରପୁର ବରନାରୀ ସେବରନ୍ତ ଦୁଳଦୁଳି ପରି ହେବେ ଯେ । ୫୨ ।
ସୁବର୍ଣ୍ଣବର୍ଣ୍ଣ ନାଗବଲ୍ଲୀ ଭଙ୍ଗି । କବଙ୍ଗ ପୂଗ ଯୋଗରେ ଶୁଭ୍ରାଙ୍ଗୀ ।
ରଞ୍ଜାଏ ଭୁଞ୍ଜାଏ କଥା-ପ୍ରସଙ୍ଗେ । ସେମାନ୍ତପନ୍ତି ଦନ୍ତ ମାନଙ୍କ ରଙ୍ଗେ ସେ ।
ଓଷ୍ଠ ପୃଷ୍ଠ ବଳଗଲ୍ଲ ଯେ ।
ଝିଲମିଲ ରଙ୍ଗ ବସନେ ବନ୍ଧନ ହୀର ମାଣିକ୍ୟ କି ହେଲା ଯେ । ୫୩ ।
ରାଗ ହେମଲତା ରଙ୍ଗ ଓଢ଼ଣୀ । ଧଣ୍ଡରେ ପଡ଼ନ୍ତି ଛନ୍ଦ ସୁଶ୍ରେଣୀ ।
ଧର ସାଗର ମହାଜାଭିଷେକ । ଅଳୀ ଦେଲେ ଭଲ କ୍ଷେମଦାୟକ ସେ ।
ବାଳୀ କି ନଳିନୀ ଛଳେ ଯେ ।
ମିଳ ଗାନ୍ଧ ବର୍ଣ୍ଣ ବାସ ସ୍ନେହେ ଚାକି ଦେଉଥଲେ ଗଲବେଳେ ଯେ । ୫୪ ।

---

୫୨ । ରସନା—କଟିସୂତ୍ର, ମେଖଳା । ପ୍ରସନ୍ନାନନା—ପ୍ରସନ୍ନମୁଖୀ ଶ୍ରୀରାଧାଙ୍କ । କଟିରେ—ଅଣ୍ଟାରେ । ରସ ନାଗରଙ୍କୁ—ପ୍ରଧାନ ରସିକ ଶ୍ରୀକୃଷ୍ଣଙ୍କୁ । ଅସ୍ୱତ୍ୱ—ଅଧୀନ । କିଙ୍କିଣି କ୍ଷୁଦ୍ରଘଣ୍ଟିତ—କିଙ୍କିଣିରେ କଣି କଣି ହେବା ଶ୍ରେଷ୍ଠ ଘଣ୍ଟି ସ୍ୱଣରେ କଣିବ । ରତପତ ମହୋତ୍ସବେ—ସୁରତରେ । ସୁରପୁର ବରନାରୀ—ସ୍ୱର୍ଗ ଲୋକର ସୁନ୍ଦରୀ, ଅପ୍‌ସରା ବା ଦେବୀମାନେ । ସେ କ୍ଷୁଦ୍ର ଘଣ୍ଟି ନୁହନ୍ତି ସେ ସ୍ୱର୍ଗ ନାରୀ ।

୫୩ । ନାଗବଲ୍ଲୀ—ପାନ । ସୁବର୍ଣ୍ଣ ବର୍ଣ୍ଣ—ସୁନା ରଙ୍ଗର, ପାଚିଲା । ପୂଗ—ଗୁଆ । ଶୁଭ୍ରାଙ୍ଗୀ—ସୁନ୍ଦରୀ । ରଞ୍ଜାଏ—ମନ ରଞ୍ଜାଇ, କଥା ପ୍ରସଙ୍ଗେ—କଥାବାର୍ତ୍ତା ବେଳରେ, ଭୁଞ୍ଜାଏ—ଖୁଆଇ ଦିଏ । ରଙ୍ଗେ—ରକ୍ତବର୍ଣ୍ଣରେ । ଓଷ୍ଠ ପୃଷ୍ଠ—ଓଷ୍ଠ ଉପର । ବଳଗଲ୍ଲ—ବୋଲି ହୋଇଗଲା, ଯୁକ୍ତ ହେଲା । ହୀର ମାଣିକ୍ୟ—ଝିଲିମିଲିର ଲାଲ ଲୁଗାରେ ବନ୍ଧା ହେଲା କି ? ଦାନ୍ତ ଓ ଓଠରେ ପାନବୋଳ ଲାଗିବାରୁ କବିର ଏପରି ଉକ୍ତି ।

୫୪ । ରାଗ ହେମଲତା—ରଙ୍ଗ ହଳଦିଆ ନେଳୀ ମିଶିଥିବା ରଙ୍ଗରେ ଓଢ଼ଣୀ । ଛନ୍ଦ ସୁଶ୍ରେଣୀ—ଦୁଇ ଧାଡ଼ି । ଧର ସାଗର ମହାଜାଭିଷେକ—ପର୍ବତ, ସମୁଦ୍ର ଓ ପୃଥିବୀରୁ କ୍ରମରେ ଜାତ ପାର୍ବତୀ, ଲକ୍ଷ୍ମୀ, ସୀତାଙ୍କର ଅଭିଷେକରେ ରଞ୍ଜିତ ଓଢ଼ଣୀକୁ; ଅଳୀ—ସଖୀମାନେ, କ୍ଷେମଦାୟକ—ମଙ୍ଗଳପ୍ରଦ ବୋଲି ଦେଲେ, ବା ପାର୍ବତୀ, ଲକ୍ଷ୍ମୀ, ସୀତାଙ୍କ ଅଭିଷେକ କାଳରେ ଏହି ବର୍ଣ୍ଣ ଓଢ଼ଣୀ କ୍ଷେମଦାୟକ ହୋଇଥିଲା ଭଲ ଦେଲେ । ବାଳୀ କି—ରାଧାଙ୍କୁ, ନଳିନୀ ଛଳେ—

ଧୀରେ କରେ ସଖୀ ଦେଲେ ଦର୍ପଣ । ପଣ ପଣ କର ପାଉଛ ପଣ ।
ବିମ୍ବ ପ୍ରତିବିମ୍ବ ନୋହିଲା ବାର । ଝଁଳ ବଳିବାରୁ ମୁକୁର ହାର ସେ ।
ଇଚ୍ଛିଲା ସ୍ୱଚ୍ଛ ଶରଣ ଯେ ।
ଭଙ୍ଗି ଅଙ୍ଗୀକାର ପରସ୍ପରତାରୁଁ ମାଇଗଲା ତ କାରଣ ଯେ । ୫୫ ।

ଚୁମ୍ବ ପ୍ରତିବିମ୍ବ ଗୃହ୍ଣୁଁ କଲ୍ପିଲା । ସସ୍ମିତ ବିସ୍ମିତ ଆନନ ହେଲା ।
କୃଷ୍ଣ କୃଷ୍ଣତା ହୋଇବ ପ୍ରଗଳ୍ଭ । ସତେ ଏତେ ଭାଗ୍ୟ ଫଳିବ ମୋର ସେ ।
ଏମନ୍ତ ଚିନ୍ତରେ ଭାଳି ଯେ ।
ଶୋଭନୀୟ ଲୋଭ ବିଭ୍ରମକୁ ପାଇ ଧୈର୍ଯ୍ୟ ସୀମା ଗଲା ବଳି ଯେ । ୫୬ ।

କହିଲେ ସଖୀ ମନ ଜାଣି ଅଳୀ । ସ୍ୱଚ୍ଛରେ ତୁଚ୍ଛ ଆଦର୍ଶ ଭାଳି ।
ଅଳଙ୍କାର ଅଳଙ୍କାର ଦ୍ୱିବିଧ । ବିଧି ସିଦ୍ଧିଦାୟୀ ତୁ ରସନିଧି ସେ ।

---

ପଦ୍ମିନୀ ଛଳେ, ରାଧା ପଦ୍ମିନୀ ସ୍ତ୍ରୀ, ପଦ୍ମିନୀ—ପଦ୍ମଲତା ଛଳରେ ଶକ୍ତି ନପାଇ ତାଙ୍କ ବର୍ଣ୍ଣବାସ—ନିଜ ଦେହ ବର୍ଣ୍ଣ ଲୁଗା ରଙ୍ଗ ହଳଦିଆ ନେଲୀ ବର୍ଣ୍ଣ ନିଜ ଦେହପର ଲୁଗାକୁ ଅସ୍ତ୍ର ଦେବା ସମୟରେ ପ୍ରୀତିରେ ଘୋଡ଼ାଇ ଦେଇଗଲେ । ମିହିର—ସୂର୍ଯ୍ୟ ।

୫୫ । କରେ—ହସ୍ତରେ । ପଣପଣ କରି—ବହୁ ପରିମାଣରେ । ପଣ—ସ୍ତୁତି ବା ମୂଲ୍ୟ । ବିମ୍ବ—ଦର୍ପଣ । ପ୍ରତିବିମ୍ବ—ରାଧାମୁଖ । ଝଁଳ—କାନ୍ତିର ସ୍ୱଚ୍ଛତା । ମୁକୁର—ଦର୍ପଣ । ସ୍ୱଚ୍ଛ—ଅକଳୁଷ ଭାବରେ ବା ସ୍ୱଚ୍ଛ ନିର୍ମଳତା ବିଷୟରେ, ଶରଣ—ଶରଣ ରଖ ବୋଲି ଇଚ୍ଛା କଲା । ଭଙ୍ଗୀ ଅଙ୍ଗୀକାର ପରସ୍ପରତାରୁ—ଅନ୍ୟୋନ୍ୟରେ ଭଙ୍ଗୀ ପ୍ରଦର୍ଶନ କରିବାରୁ ଅର୍ଥାତ୍ ମୁଖଭଙ୍ଗୀ ଦର୍ପଣରେ ଦର୍ପଣର ଭଙ୍ଗୀ ଅର୍ଥାତ୍ ସ୍ୱରୂପ ମୁଖରେ ପ୍ରତିବିମ୍ବିବାରୁ । ତାରଣ—ଗତି । କି ରାଧା ମୁଖର ସମାନ ହୋଇଗଲା ବା ତାର ଭଙ୍ଗୀ ଅଙ୍ଗୀକାର ପରଶରୁ—ରାଧାଙ୍କ ଭଙ୍ଗୀ ସୁଯୋଗ ହେତୁ ଇତ୍ୟାଦି ପାଠ ମଧ୍ୟ ହୋଇପାରେ ।

୫୬ । ଦର୍ପଣରେ ପ୍ରତିବିମ୍ବ ଗୃହ୍ଣୁଁ—ନିଜ ମୁଖ ପ୍ରତିବିମ୍ବ ଦେଖି, ଚୁମ୍ବ କଲ୍ପିଲା—ଚୁମ୍ବନ ଭଙ୍ଗୀ ଜାତହେଲା । ଆନନ—ମୁଖ । ସସ୍ମିତ—ମନ୍ଦହାସ ଯୁକ୍ତ ହୋଇ ବିସ୍ମିତ—ଆଶ୍ଚର୍ଯ୍ୟ ହେଲା । କୃଷ୍ଣତୃଷ୍ଣତା—ଶ୍ରୀକୃଷ୍ଣଙ୍କର ଆଶା ବା ସ୍ପୃହା । କୃଷ୍ଣ ମୋ ମୁଖରେ ଚୁମ୍ବନ ଦେବେ ବା ମୁଁ ତାଙ୍କ ମୁଖରେ ଚୁମ୍ବନ ଦେବ । ଶୋଭନୀୟ ଲୋଭ—ସୌନ୍ଦର୍ଯ୍ୟର ଲୋଭ ହେତୁରୁ । ବିଭ୍ରମକୁ—ସନ୍ଦେହକୁ । ଧୈର୍ଯ୍ୟ ସୀମା ବଳିଗଲା—ଅଧୈର୍ଯ୍ୟ ହେଲା ।

୫୭ । ସଖୀମନ—ରାଧାଙ୍କ ମନ । ସ୍ୱଚ୍ଛରେ—ନିର୍ମଳତାରେ । ଆଦର୍ଶ—ଦର୍ପଣ । ତୁଚ୍ଛ—ଊଣା । ହେ ରସନିଧି—ହେ ରାଧେ । ଦ୍ୱିବିଧ—ଦୁଇ ପ୍ରକାର । ଅଳଙ୍କାର—କଟକ କଙ୍କଣାଦି ଭୂଷଣ ଓ ନାୟିକାମାନଙ୍କର ଯୌବନରେ ହାବ-

Digitized by srujanika@gmail.com

ଶୋଭା ପ୍ରଭାବବର୍ଦ୍ଧନୀ ଯେ ।
ଚିତ୍ତଲୁଣ୍ଠନରେ ବେଣୀଭାସ୍ୱଙ୍କର ପୁଣ୍ୟ ଧନ୍ୟ ହେଲ ଧନୀ ଯେ । ୫୭ ।
ସ୍ନେହ ସହ ଗର୍ବ ବିନୟ ଶୁଣି । ଜାତ ସ୍ମିତଯୁକ୍ତ ବାଙ୍କ ଗୃହିଣୀ ।
ଲପନ କମ୍ପନ ନାସା ଟୋଳନ । ଭ୍ରୂଭଙ୍ଗୀ ଭଙ୍ଗୀ ଭ୍ରୂକୁଟୀ ଚଳନ ସେ ।
ଲକ୍ଷ ବ୍ୟାଜ ହେତୁ ଜାତ ଯେ ।
କାମ ବାମ ଦେବା କ୍ଷମା ଯେ ତାହାଙ୍କୁ ଶଙ୍କ କି ସଖୀ ମୁଦିତ ଯେ । ୫୮ ।
ବେଣ ପେଶଳ ବିସ୍ମୟ ଛନ୍ଦ । ରସିକ-ଶିବ-ଶିରଭୂଷା ଚନ୍ଦ୍ର ।
ହେଲକୁ ବେଳ ସୁଖାବ୍ଧିବର୍ଦ୍ଧନ । ହୃତ ଚିତ୍ତ କୁମୁଦର ସାଧନ ସେ ।
ସାଧବେ ଉତ୍ସବେ ସେନ ଯେ ।
ରାଧା ସୁଧାସିନ୍ଧୁ ବେଣ ନିରବଧି ଗାବେ ଅଭିମନ୍ୟୁ ମନ ଯେ । ୫୯ ।

୫୮-୯—ଅଳଙ୍କାର କ ବିଷ୍ଣ ଗ, ଘ, ଚ, ଭ ।

---

ସ୍ୱବାଦ ଅଷ୍ଟାବିଂଶତିପ୍ରକାର ସାତ୍ତ୍ୱିକ ସ୍ୱବାଦ ବିଶେଷର । ଅଳଙ୍କାର—ଆଭରଣ ସ୍ୱରୂପା ଅର୍ଥାତ୍ ସେମାନଙ୍କର ଶୋଭାକାରିଣୀ । ବିଧିସିଦ୍ଧିଦାତ୍ରୀ—ବିଧାତାର ପ୍ରସିଦ୍ଧି-କାରିଣୀ ବା ମନ୍ତ୍ରବାଦମାନଙ୍କରେ ଯେଉଁ ବିଧି ଅଛି, ଶରୀର ଯୋଗରେ ସୁନ୍ଦର ଦୃଶ୍ୟ ହୁଅନ୍ତି ସେମାନଙ୍କର ସିଦ୍ଧିଦାତ୍ରୀ—ମୋକ୍ଷଫଳଦାୟୀ, ସେମାନଙ୍କର ସାର୍ଥ—କାରିଣୀ । ଶୋଭାପ୍ରଭାବବର୍ଦ୍ଧନୀ—ଶୋଭା ଓ କାନ୍ତିର ବୃଦ୍ଧିକାରିଣୀ । ଚିତ୍ତଲୁ-ଣ୍ଠନରେ—ମନକୁ ଲୁଟିବାରୁ । ପୁଣ୍ୟ—ସୁକୃତ । ଧନ୍ୟ—ପ୍ରଶଂସ୍ୟ ।

୫୮ । ସ୍ନେହସହଗର୍ବବିନୟ—ବିନୟଯୁକ୍ତ ସ୍ନେହବାକ୍ୟ । ସ୍ମିତଯୁକ୍ତ—ମନ୍ଦହାସଯୁକ୍ତ । ଲପନ କମ୍ପନ— ମୁଖ କମ୍ପାଇବା । ନାସାଟୋଳନ—ନାକଟେକିବା, ଭ୍ରୂଭଙ୍ଗୀ—ଭ୍ରୂଲତାର ବିଳାସ । ଭଙ୍ଗୀ—ଛଟା । ଭ୍ରୂକୁଟି—ଭ୍ରୂଲତାର ବକ୍ରତା । ବ୍ୟାଜ—କପଟଲକ୍ଷ ହେତୁରୁ । କାମ—କନ୍ଦର୍ପ । ବାମ—ପ୍ରତିକୂଳ । ତାହାଙ୍କୁ କ୍ଷମାଦେବା ଯେ କି ଶଙ୍କ—ସେମାଙ୍କର କ୍ଷମାଦେବା ଆଶ୍ଚର୍ଯ୍ୟ ନୁହେଁ । ସଖି ମୁଦିତ—ସଙ୍ଗୀ ଆନନ୍ଦ

୫୯ । ବେଣ ପେଶଳ—ବେଣ ବର୍ଣ୍ଣନଦ୍ୱାରା ସୁନ୍ଦର । ରସିକ ଶିବ – ରସିକ ଶୈବରୂପକ ମହାଦେବଙ୍କର, ଶିରଭୂଷା—ମସ୍ତକ ଅଳଙ୍କାର । ସୁଖାବ୍ଧିବର୍ଦ୍ଧନ—ଆନନ୍ଦ ରୂପ ସମୁଦ୍ର ବର୍ଦ୍ଧକ । ଚିତ୍ତକୁମୁଦର—ମନରୂପକ କଇଁର । ଉତ୍ସବେ—ଉତ୍ସବରେ, ପର୍ବରେ । ରାଧାସୁଧାସିନ୍ଧୁ—ଶ୍ରୀରାଧାରୂପ ଅମୃତ ସମୁଦ୍ରର, ନିରବଧି—ସର୍ବଦା ।

Digitized by srujanika@gmail.com

# ଷଷ୍ଠୀ ଛାନ୍ଦ

## ଶ୍ରୀ ରାଧାକୃଷ୍ଣ ଲୀଳା ସଖୀ ବାଞ୍ଛିତ

ରାଗ—ବସନ୍ତ ( ଅଷାଢ଼ ଶୁକ୍ଳବାଣୀ )

ଧୀରେ ଏ ଛାନ୍ଦ ପ୍ରେମ ରସସିନ୍ଧୁ । ବୁଦ୍ଧିମନ୍ଦର-ମନ୍ଥନରେ ସାଧୁ ।
ଲଭିଲେ ଭାବ ଦିବ୍ୟ ରତ୍ନାବଳୀ । ଅମୃତ ଯିବ ଅନାୟାସେ ମିଳି ।
ସୁଖ ଶ୍ରୀ ଲଭିବ ହେ । ଆନନ୍ଦ କଲ୍ଲୋଳରେ ମଗ୍ନ ହେବ । ୧ ।
ରାଧାକୃଷ୍ଣ ଭେଟ ହେବ ନିକଟେ । ଏମନ୍ତ ଜାଣି ସଜନୀ ଜଗିଛାଟେ ।
ନିଜ ନିଜ ଭାବ ଅବଲମ୍ବନେ । ଭାଳନ୍ତି ପରସ୍ପରେ ଅନୁମାନେ ।
ଥାଇଁ ଥାଇଁ ଘଟ ହେ । କେବେ ଦେଖାଯିବ ଯୁଗଳ ଭେଟ । ୨ ।
କଳ୍ପଲତା ତନୁ ସଜାଡ଼ ବେଶେ । ଅଭିସାର କି କରାଇବା ତୋଷେ ।
ଜୟ ଗାନ୍ଧର୍ବିକେ ମଣିମା କରୁ । ପଦଣ୍ଡ ମଣାଇବା ଭାଗ୍ୟ କାହିଁ ।
ପଟ୍ଟୋଆର ହେବା ହେ । ଗହଣେ ନାନା ଖଟଣି ଖଟିବା । ୩ ।

---

୧ । ଧୀରେ—ହେ ପଣ୍ଡିତମାନେ । ପ୍ରେମରସ ସିନ୍ଧୁ—ପ୍ରଣୟ ଜଳ ସମୁଦ୍ର ବୁଦ୍ଧି ରୂପ ମନ୍ଦର ପର୍ବତ ଦ୍ୱାରା ମନ୍ଥନରେ—ମନ୍ଥିବାରେ, ସାଧୁ—ଦକ୍ଷ । ଭାବଦିବ୍ୟ ରତ୍ନାବଳୀ—ରାଧାକୃଷ୍ଣଙ୍କ ବା ଅବସ୍ଥାରୂପ ଅତି ସୁନ୍ଦର ରତ୍ନସମୂହକୁ ପାଇଲେ । ଅନାୟାସେ—ଅକ୍ଲେଶରେ । ଅମୃତ—ସୁଧା ଓ ମୋକ୍ଷ ମିଳିଯିବ । ସୁଖ ଶ୍ରୀ—ବ୍ରହ୍ମାନନ୍ଦ ସୁଖରୂପସମ୍ପଦକୁ ପାଇବ । ଆନନ୍ଦ କଲ୍ଲୋଳରେ—ସଦାନନ୍ଦ ତରଙ୍ଗରେ ବୁଡ଼ିବ ।

୨ । ଭାବ ଅବଲମ୍ବନେ—ନିଜ ନିଜ ପ୍ରଣୟ ବା ବନ୍ଧୁ ଆଶ୍ରୟ କରି । ପରସ୍ପରେ—ଅନ୍ୟୋନ୍ୟରେ । ଅନୁମାନେ—ଅନ୍ୟାନ୍ୟ ପ୍ରକାରରେ । ଘଟ—ଦେହ ।

୩ । କଳ୍ପଲତା ତନୁ—ଶ୍ରୀରାଧାଙ୍କ ଶ୍ରୀଅଙ୍ଗ । ଅଭିସାର—ପ୍ରିୟ କୃଷ୍ଣଙ୍କ ସଂକେତକୁ ଗମନ କୁଞ୍ଜ ପ୍ରବେଶ କରାଇବା କି । ବା ଅଭିସାରକୀ—ଅଭିଧାରକା । ତୋଷେ—ସନ୍ତୋଷରେ । ଗାନ୍ଧର୍ବିକେ—ଗନ୍ଧର୍ବବାଦ୍ୟକାରିଣୀ ବା ମଧୁର ଗାୟିକେ । ପଦଣ୍ଡ ମଣାଇବା—ପାଦଚଳାଇବା । ପଟ୍ଟୋଆର—ସହଗାମିନୀ । ଗହଣେ—ସଙ୍ଗରେ, ଖଟଣି—ଖଟିବା, ନଯୋଗିଆ ହୋଇ ସେବାକରିବା ।

Digitized by srujanika@gmail.com

ମିଳି କାନନେ ନାନା ଯନ୍ତ୍ର ଧରି । ବାଇବା ଗାଇବା ଗନ୍ଧ ଉଚ୍ଚାରି ।
ପଦ୍ମ ପଦ୍ମକେ ହୋଇ ବହୁ ବହୁ । ପୂଜିବେ କେତେ ହୁରେ ବନ୍ଧୁ ବହୁ ।
ଦେଖି ପ୍ରେମାଳସ ହେ । କହିବା କେବେ ହେବା ପ୍ରବେଶ । ୪ ।
କେ ମାର୍ଗ ମାଜ୍ଜି ପାଏଡ଼ା ପାଡ଼ିବ । କେ ଚନ୍ଦ୍ର ଚନ୍ଦନ ପୁଷ୍ପ ସିଞ୍ଚିବ ।
କେ ଛନ୍ଦ ଅଡ଼ଣୀ ପଙ୍ଖା ଗ୍ରହିବ । ଧରିବ ହରିବ ମନ ଧନ୍ଦର ।
ହୋଇ ସୁଖଭୋଗୀ ଗୋ । କେ କରିଥିବ ବାଡ଼ଆ ବାଟି । ୫ ।
କେ ଜଳଝରି ଭରି ପଛେ ଥିବ । କେ ପିକପକ୍ଷୀଙ୍କୁ ଯୋଗାଇବ ।
କେ ହସି ଟୁପଚାଟିକି ଘଷିବ । କେ ଭଙ୍ଗୀ ଇଙ୍ଗିତରେ ବସାଇବ ।
ଥାଉଁ ଥାଉଁ ଜୀବ ହେ । ଏ ଭାଗ୍ୟ ପୁଣି ସତେ ଦେଖାଯିବ । ୬ ।
ମାଧବ କାଳେ ମାଧବ ସଙ୍ଗତେ । ମାଧବୀ କୁଞ୍ଜେ ମାଧବୀ ମିଳନ୍ତେ ।
ଶ୍ରୀମୁଖଚନ୍ଦ୍ର ଦେଖାଦେଖି ହେଲେ । ଆନନ୍ଦସିନ୍ଧୁ ଉଚ୍ଛୁଳିବ ବଳେ ।
ଜୀବଞ୍ଜୀବ ଆଖି ହେ । ଶୋଭା ସୁଧାପାନେ ହୋଇବ ସୁଖୀ । ୭ ।
ହୃଦକୁମୁଦ ପ୍ରମୋଦ ବଢ଼ିବ । ଚିନ୍ତା ତମସ କେଣେ ପଳାଇବ ।
ତନୁ ତାପ କ୍ଷେପ ହେବ ଝଟତି । ଉତ୍ପଳକୁ ବେଗେ ରସିବ ମତି ।
ଅଣ ଶଣଲେଖା ଗୋ । ଅହ୍ଲାଦ କର ସ୍ମରଣକୁ କରି । ୮ ।

୭-୨—ସାଧବୀ ଜମନ୍ତେ ଜ, ଝ ।

---

୪ । ଯନ୍ତ୍ର—ବାଦ୍ୟଯନ୍ତ୍ର । ବାଇବା—ବଜାଇବା । ପଦପଦ୍ମକେ—ପ୍ରତିପାଦ ସ୍ଥଳରେ ବା ପଦେ ଗାଇ ଆଉ ପଦେ ଗାଇଲାବେଳେ । ବନ୍ଧୁ—ପ୍ରିୟ କୃଷ୍ଣ । ପ୍ରେମାଳସ—ପ୍ରଣୟ ଦ୍ୱାରା ମନ୍ଥର ।

୫ । ମାର୍ଗ—ବାଟ । ମାଜ୍ଜି—ପରିଷ୍କାର କରି । ପାଏଡ଼ା ପାଡ଼ିବା—ପକାଇବା ଲୁଗା ପକାଇବା । ଚନ୍ଦ୍ର—କର୍ପୂର । ଛନ୍ଦ—ଛତା । ଅଡ଼ଣୀ—ଆଲଟ, ସୁଖଭୋଗି—ଆନନ୍ଦ ଲଭି । ବାଡ଼ଆ—ପାନବାଡ଼ଆ ।

୬ । ଝରି—ଗଡୁ । ପିକପକ୍ଷୀ—ପିକଦାନୀ । ଭଙ୍ଗିଇଙ୍ଗିତରେ—ଅଙ୍ଗ ପରିହାସରେ, ବସାଇବ—ମନଖୁସି କରାଇବ ।

୭ । ମାଧବକାଳେ—ବସନ୍ତସମୟରେ । ମାଧବ—ଶ୍ରୀକୃଷ୍ଣ । ମାଧବୀକୁଞ୍ଜେ—ମାଧବୀଲତା ଗୃହରେ । ମାଧବୀ—ଶ୍ରୀରାଧା । ଆନନ୍ଦସିନ୍ଧୁ—ଆନନ୍ଦରୂପ ସମୁଦ୍ର । ବଳେ—ଆପେଆପେ । ଜୀବଞ୍ଜୀବଆଖି—ଚକୋରପକ୍ଷୀରୂପ ଆଖି । ଶୋଭାସୁଧାପାନେ—ସୌନ୍ଦର୍ଯ୍ୟରୂପ ଅମୃତ ଆସ୍ୱାଦନରେ ।

୮ । ହୃଦକୁମୁଦ—ମନରୂପ କଇଁ । ପ୍ରମୋଦ—ହର୍ଷ, ଆନନ୍ଦ । ଚିନ୍ତାତମସ—ଭାବନାରୂପକ ଅନ୍ଧକାର; ତନୁତାପ—ଶରୀରଦାହ, ଦେହସନ୍ତାପ । ଝଟତି—

Digitized by srujanika@gmail.com

କୋମଳଅଙ୍ଗୀ ଭଙ୍ଗୀ ଅଙ୍ଗୀକାର । ରାଗ ସରାଗ ବନ୍ଧୁକ ଅଧର ।
ମନ୍ଦ ମଧୁର ହାସ ମୁକ୍ତାଶୋଭିତା । ତ୍ରପା କୃପା ମିଶା ନେତ୍ର ଭ୍ରୂଲତା ।
ଭ୍ରୂବଙ୍କୀ ଗୁରୁତ୍ୱ ଗୋ । ତ ମାନ ସନମାନ ଠରାଠର । ୯ ।
ନାସା ପୁଟଫୁଲ୍ଲେ ସ୍ୱୀକାର ବିକାର । ତାହେ ମତାଏ ସ୍ୱ ମାର ବୈଶ୍ୱାନର ।
ମଣ୍ଡନ ଗଣ୍ଡପାଳିରେ ପୁଲକ । ରତି ସମ୍ପତ୍ତି ଆନନ୍ଦଦାୟକ ।
ଝଲକା ଚଳନ ହେ । ଅଣ ସାହସ ଉଦ୍ଦୀପନ ସ୍ଥାନ । ୧୦ ।
ଶ୍ରୀମୁଖ ବଙ୍କିମା କର ଯା ତାଳେ । ପ୍ରେମାମୃତ କି ଗୋଳିଦେଇ ତାଳେ ।
ଏ ଲାବଣ୍ୟ ଲୀଳା ଭଙ୍ଗୀ ଲୋକନେ । ଲୋଭୀ ଅର୍ଣ୍ଣ ସ୍ତୁଣୀ ପୀୟୂଷ ସ୍ନାନେ ।
ରସରାଜ ଭାବ ଯେ । କୋଳ ମେଳକୁ କି ମାନିବ ଛବ । ୧୧ ।
ଶ୍ୟାମଳ ମଣ୍ଡଳ ଘନେ ବିଜୁଳୀ । ପରାୟେ ଲକ୍ଷିବ ନବଛବିଳୀ ।
ଅନା ଅନା ଭଙ୍ଗୀ ସଙ୍ଗୀ ହୋଇବ । ଶ୍ୟାମଳାନୁସିଂହାସନେ ବସିବ ।

---

ଶୀଘ୍ର । ଉଜ୍ଜ୍ୱଳକୁ—ଅଲୌକିକକୁ ଓ ଶୃଙ୍ଗାର ରସକୁ; ରସିବ ମତି—ମନ ବଳିବ । ଆଶ ଶଣଲେଶ୍ରୀ—ଅଶାରୂପ ଠେଙ୍ଗୁଅ ଲୋଭଯୁକ୍ତ ହେବ । କର—କିରଣ ଓ ହାତ ସ୍ପର୍ଶ—ଯୋଗ । ଅହ୍ଲାଦ—ଆନନ୍ଦ, ଶୀତଳ ହେବ ।

୯ । କୋମଳଅଙ୍ଗୀ—ଶ୍ରୀରାଧା । ଭଙ୍ଗୀଅଙ୍ଗୀକାର—ବିଳାସ ଚେଷ୍ଟା ପ୍ରକାଶ କରିବା । ରାଗସରାଗ—ଅନୁରାଗ ଓ ରକ୍ତିମା; ଶ୍ରଦ୍ଧା ବା ସ୍ନେହରେ; ଅଧର ବନ୍ଧୁକ—ଓଷ୍ଠଗୃଳକ । ମନ୍ଦମଧୁରହାସ—ମିଠା ମୁରୁକିହସ । ତ୍ରପା—ଲଜ୍ଜା, କୃପା—ଦୟା । ଅକ୍ଷିରେ ଲଜ୍ଜା ଓ ଭ୍ରୂରୁରେ ଦୟା; ଭ୍ରୂବଙ୍କୀ ଗୁରୁତ୍ୱ—ଭ୍ରୂଲତାବଙ୍କୀ, ଭ୍ରୂରୁର ନାଠ । ମାନ—ଅହଂମର୍ଯ୍ୟାଦା । ସମ୍ମାନ—ପରପ୍ରତି ଗୌରବ ଦର୍ଶନ; ଠରାଠର—ସ୍ପଷ୍ଟସମ୍ଭାଷଣ ।

୧୦ । ନାସାପୁଟେ—ନାକପୁଡ଼ା ଫୁଲିବାଦ୍ୱାରା । ସ୍ୱୀକାର ବିକାର—କାମବିକାର ବା ଭାବ ପ୍ରକାଶ କରିବା । ମାର—କନ୍ଦର୍ପ । ରୂପ—ବୈଶ୍ୱାନର, ଅଗ୍ନି । ତାହେ—ତାହଥାଏ । ମତାଏ—ପ୍ରଜ୍ୱଳିତକରେ । ମଣ୍ଡନ—ଶୋଭନ । ଗଣ୍ଡପାଳିରେ—ଗାଲପ୍ରଦେଶରେ, ପୁଲକ—ରୋମାଞ୍ଚ । ରତିସମ୍ପତ୍ତି—ସୁରତିରୂପ ଧନ । ଆନନ୍ଦଦାୟକ—ସୁଖପ୍ରଦ । ଝଲକା—କର୍ଣ୍ଣାଳଙ୍କାର । ଅଣସାହସର—ଅସାରୂପ ସାହସର । ଉଦ୍ଦୀପନ—ଉତ୍ତେଜନାର ।

୧୧ । ବଙ୍କିମାହର—ବକ୍ରକର । ପ୍ରେମାମୃତ—ପ୍ରଣୟରୂପ ଅମୃତକୁ । ଲାବଣ୍ୟଲୀଳାଭଙ୍ଗୀ ଲୋକନେ—ଚଞ୍ଚଳକାନ୍ତିପୁଞ୍ଜପୂର୍ଣ୍ଣ ବିଳାସଚେଷ୍ଟା ଦେଖିବାଦ୍ୱାରା । ପୀୟୂଷସ୍ନାନେ—ଅମୃତରେ ଗାଧୋଇବାଦ୍ୱାରା । ରସରାଜ—ରସିକଶ୍ରେଷ୍ଠ ଶ୍ରୀକୃଷ୍ଣ । କୋଳମେଳକୁ—ଆଲିଙ୍ଗନକୁ । ଛବ—ଶୋଭା ।

Digitized by srujanika@gmail.com

କି ଶୋଭା ଦିଶିବ ଗୋ । ନେତ୍ର ସଫଳ ସନେ ଦେଖି ହେବ ।୧୨।
କୁସୁମବତୀ ବାସନ୍ତୀ ବ୍ରତତୀ । ଲଳିତ ହୋଇଥିବେ ଚଉଦିଗ ।
ମନ୍ଦ ମନ୍ଦ ଗନ୍ଧବାହ ବହୁଥିବ । ମତ୍ତରେ ଭୃଙ୍ଗ ଝଙ୍କାର କରିବ ।
କୃଷ୍ଣ କୋଳେ ବସି ଗୋ । ଚମକି ଉଛୁସିବେ ରସାଳସୀ । ୧୩ ।
ଦେଖି ଆନନ୍ଦେ ବ୍ରଜଯୁବରାଜ । ଓଷ୍ଠ ଦେବ ଚୁମ୍ବନଲୋଭେ ଗୋଜ ।
ଜାଣି ଲଜ୍ଜା ସ୍ମିତ ମୁଖୀ କଣୋଗ୍ରୀ । ଶ୍ରୀମୁଖ ମୋଡ଼ି ଦେବେ ଝଙ୍କରି ।
ସେ ଢାଳ ଗୃହୁଣୀ ଗୋ । ଦେଖିବା ଭାଗ୍ୟ ନେତ୍ର ଥିବ କର ।୧୪।
କୃଷ୍ଣ ଶ୍ୟାମଳ କମଳ ଆନନେ । ଅଲକ୍ଷ ଲକ୍ଷ ମଦନ ମୋହନେ ।
ଧନୀ ପ୍ରଫୁଲ୍ଲ ହାସାବଲୋକନେ । ଭର କଟି ଗ୍ରୀବା ଛନ୍ଦି ବାଧାନେ ।
ବାଢ଼ିଥା ଭୂଷାଜ ଗୋ । ଦେଖାଯିବ କି ଲୀଳ ଥାଇଁ ଥାଇଁ । ୧୫ ।
ବାକ୍ୟଚାତୁରୀ କେଳିକୁତୂହଳ ଯୁଦ୍ଧେ । ହୃଦୟ ହେବ ଭ୍ରମ ସଖେ କ୍ରୋଧେ-
ହଟା ହୃପା ବ୍ୟଙ୍ଗେକନେ ନବାସ । ସ୍ମିତ କମ୍ପନ ଅଧରେ ପ୍ରକାଶ ।
ଗାଢ଼ ଗୃଢ଼ ଭୁଞ୍ଜୁ ଯେ । ଭଙ୍ଗିର ଭଙ୍ଗୀ ଠରଠର ଗୂଢ଼ । ୧୬ ।
୧୨-୧୩—ନାନା ଅନାରଙ୍ଗୀ-କ, ଗ, ଝ, ଠ ।

---

୧୨ । ଶ୍ୟାମଳ ଅଙ୍ଗ ଲ ସନେ—କଳା ସୁନ୍ଦର ମେଘରେ । ନବଛଇଳୀ—ରାଧା । ଅନା ଅନା ରଙ୍ଗୀ—ଗୃହିଁ ଗୃହିଁ ଲୀଳା; ନାନାପ୍ରକାର ଲୀଳା । ଶ୍ୟାମ ଜାନୁ ସିଂହାସନେ—ଶ୍ରୀକୃଷ୍ଣଙ୍କ ଜଙ୍ଘରୂପ ଉଚ୍ଚାସନରେ ।

୧୩ । କୁସୁମବତୀ—ଫୁଲ ଫୁଟିଥିବା । ବାସନ୍ତୀବ୍ରତତୀ—ମାଳତୀଲତା । ଲଳିତ—ଓହଳ । ଗନ୍ଧବାହ—ପବନ । ଭୃଙ୍ଗ—ଭ୍ରମର । ମତ୍ତରେ—ଉନ୍ମତ୍ତ ହୋଇ । ରସାଳସୀ—ରସବତୀ ଶ୍ରୀରାଧା । ଉଛୁସିବେ—ଅଣ୍ଟଉଠିବେ ।

୧୪ । ବ୍ରଜ ଯୁବରାଜ—ଗୋପପୁର ରାଜକୁମର ଶ୍ରୀକୃଷ୍ଣ । ଚୁମ୍ବ ଲୋଭେ—ଚୁମ୍ବନ ଦେବା ଲୋଭରେ । ଲଜ୍ଜାସ୍ମିତମୁଖୀ—ଲଜ୍ଜ ଓ ମନ୍ଦହାସଯୁକ୍ତ ମୁଖୀ । କଣୋଗ୍ରୀ—ରାଧା । ଝଙ୍କି କରି—ବଙ୍କାକରି । ଗୃହୁଣୀ - ଭଙ୍ଗୀ ।

୧୫ । କୃଷ୍ଣଶ୍ୟାମଳ କମଳ ଆନନେ—କୃଷ୍ଣ କଳାପଦ୍ମରୂପ ମୁଖରେ । ମଦନ—କାମଦେବ; ମୋହନେ—ମୋହନ କରିବାରେ । ଅଲକ୍ଷ ଲକ୍ଷ—ତୁଳା ନୁହେଁ; ଅନୁପମ । ଶ୍ରୀକୃଷ୍ଣଙ୍କ ମୁଖ କାମକୁ ମୋହନ କରିବାରେ ଅନୁପମ । କୃଷ୍ଣଙ୍କ ମୁଖକୁ କଳାପଦ୍ମ ସଦୃଶ ନୁହେଁ, ସେ ମୁଖ କାମକୁ ମୋହିବାରେ ସମର୍ଥ । ହାସାବଲୋକନେ—ହାସ ଦେଖି । ଧନୀ—ଶ୍ରୀରାଧା । ପ୍ରଫୁଲ୍ଲ—ଆନନ୍ଦିତା । କଟି—ଅଣ୍ଟା । ଗ୍ରୀବା—ବେକ । ଛନ୍ଦିବାଧାନେ—ବଙ୍କାକରି ।

୧୬ । ବାକ୍‌ଚାତୁରୀ—କହିବା ଭଙ୍ଗୀ । କେଳିକୁତୂହଳଯୁଦ୍ଧେ—ପରିହାସ କୌତୁକ କଳହରେ । ସଖେ—ଶୃଙ୍ଗାରେ; କ୍ରୋଧେ—କ୍ରୋଧରେ । ହଟା—

Digitized by srujanika@gmail.com

ବ୍ୟାଜ ଗାମ୍ଭୀର୍ଯ୍ୟ ଛଳ ଶ୍ଳେଷ ଭାଷା । ଅଣ ନାଗର ହୋଇଥାଇ ମିଶା ।
ମାନ ସମ୍ମାନ ନତାନନେ ଦଶେ । ହଙ୍କାର ସ୍ୱୀକାର ପ୍ରଫୁଲ୍ଲ ନାସେ ।
ଏ ଚରିତ୍ର କେଳି ଗୋ । ରାଗ ସରାଗ ଲୀଳା ବଳାବଳି । ୧୭ ।

ନୟନ ମନ ଲଗ୍ନ ମଗ୍ନ କରି । ତୋଳ କରି ମୁଖ ଚୁମ୍ବନେ ହରି ।
ହୃଷ୍ଟ ରୁଷ୍ଟ ଓଷ୍ଠଦେଶେ ଜନ୍ମିବ । ଛଦ୍ମେ ଶୀକର ମୁଖେ ଯୋଡ଼ାଯିବ ।
ବସି କରେ ଅର୍ପି ଗୋ । ତାହାଙ୍କ ପର ମିଛେ ହେବ ସଖୀ । ୧୮ ।

ରସ-ରୋଷ-ମିଶା ଗଦ୍‌ଗଦ ଗିର । ଭ୍ରୂକୁଟି କୁଟିଳ ଚ୍ଛ ମନେ ହର ।
ପୁଲକଇ ଗଣ୍ଡପାଳି ପ୍ରେମାଳୀ । ଚିବୁକ ସଙ୍ଗୀ ତର୍ଜନୀ ଅଙ୍ଗୁଳି ।
ଭ୍ରୂଲତା-ଚାପରେ ଗୋ । ଦୃଷ୍ଟି-ଶରବୃଷ୍ଟି ବିମ୍ବୋଷ୍ଠୀ କରେ । ୧୯ ।

---

ଲଜ୍ଜା । କୃପା—ଅନୁକମ୍ପା । ବିଲୋକନେ—ଦୃଷ୍ଟିରେ । ନିବାସ—ଅବସ୍ଥିତ, ରହିଛି ।

୧୭ । ବ୍ୟାଜ—କପଟ । ଗାମ୍ଭୀର୍ଯ୍ୟ—ଗମ୍ଭୀରତା । ଛଳ—ଥଟ୍ଟା । ଶ୍ଳେଷ—ଦୁଇ ଅର୍ଥଯୁକ୍ତ । ଭାଷା—ବଚନ । ଅଣ—ସମ୍ଭୋଗାଣ । ନାଗର—ସମ୍ଭୋଗୋତ୍ସବ । ମାନସମ୍ମାନ—ଅଭିମାନ ଅର୍ଥାତ୍ ରୁଷା ଓ ସହାର । ନତାନନେ—ନମ୍ରମୁଖରେ । ହଙ୍କାର ସ୍ୱୀକାର—ହଁ ନାହିଁ ସ୍ୱର ବା ମନର ହଙ୍କାର ପ୍ରକାଶ କରେ । ପ୍ରଫୁଲ୍ଲନାସେ—ଫୁଲିଥିବା ନାକପୁଡ଼ାରେ ଦଶେ । ଚରିତ୍ର କେଳି—ଆଶ୍ଚର୍ଯ୍ୟଜନକ କ୍ରୀଡ଼ା । ରାଗ—ଅନୁରାଗ । ସରାଗ—ଈର୍ଷା ବା ଦର୍ପ । ଲୀଳା—ମନ୍ଦହାସ ଓ ବିଳାସ । ବଳାବଳି—ଅନ୍ୟୋନ୍ୟରେ ପ୍ରବଳ ।

୧୮ । ନୟନମନ ଲଗ୍ନମଗ୍ନ କରି—ଆଖି ଓ ମନକୁ ଲଗାଇ ଓ ବୁଡ଼ାଇ, ସେ ଦୁହିଁଙ୍କ ରାଧାଙ୍କ ରୂପରେ ଲଗାଇ ଓ ରସରେ ମନକୁ ବୁଡ଼ାଇ । ହରି—କୃଷ୍ଣ । ହୃଷ୍ଟ—ହର୍ଷ । ରୁଷ୍ଟ—କ୍ରୋଧ । ଛଦ୍ମେ—ମିଛରେ । ଶୀକର—ଶୀହସ୍ତରେ । କରେ—ହାତରେ ।

୧୯ । ରସରୋଷ ମିଶା—ଅନୁରାଗ ଓ କ୍ରୋଧ ମିଳାମିଶା । ଗିର—କଥା । ଗଦ୍‌ଗଦ ହେବ—ଗରଗର ଅସ୍ପଷ୍ଟ ହେବ । ଭ୍ରୂକୁଟି—ଭ୍ରୂଭଙ୍ଗୀ, କୁଟିଳ—ବଙ୍କା । ଗଣ୍ଡପାଳିପ୍ରେମାଳୀ—ଗାଲରେ ପ୍ରେମସମ୍ବନ୍ଧ । ପୁଲକଇ—ଟାଙ୍କୁରଇ । ଚିବୁକ ସଙ୍ଗୀ—ମୁଖ ତଳ ସୀମାରେ ଦଉ । ତର୍ଜନୀ ଅଙ୍ଗୁଳି—ବୁଢ଼ା ଆଙ୍ଗୁଠି ପାଖ ଆଙ୍ଗୁଠି । ଭ୍ରୂଲତା ଚାପରେ—ଭୂରୁ ରୂପକ ଧନୁରେ । ଦୃଷ୍ଟିଶର ବୃଷ୍ଟି—ଚାହାଣି ରୂପକ କାଣ୍ଡବର୍ଷଣ । ବିମ୍ବୋଷ୍ଠୀ—ବିମ୍ବାଧରା ଶ୍ରୀରାଧା ।

Digitized by srujanika@gmail.com

ନାନାଳଙ୍କାର ମିଶା ଭୂଷା ଶୋଭା । କାମମୋହନ ନେତ୍ର ମନ ଲୋଭା ।
ଏମନ୍ତ ଲୀଳା ହେବ ବୃନ୍ଦାବନେ । ସତେ କି ଗୋ ଅମ୍ଭେ ଦେଖିବା ନୟନେ
ଅମ୍ଭ ପୁଣ୍ୟ କେତେ ଗୋ । ପ୍ରାପ୍ତି କି ଜନ୍ମ ହେବ ଲଭ ଏତେ ।୨୦
ନଟବରବେଶେ ରାସ ଆରମ୍ଭେ । ରାଧାସ୍କନ୍ଧେ ବାମ ଭୁଜାବଲମ୍ବେ ।
ଶ୍ରୀମୁଖ ଚୁମ୍ବି ହାସାବଲୋକନେ । ତ୍ରିଭଙ୍ଗେ ରହି ଆନନ୍ଦମନେ ।
ରାଗ ଆଳାପନେ ଗୋ । ଶ୍ରୀପଦ ଚଳନେ ନୂପୁର ତାନେ । ୨୧ ।
ଆବୃତ କଳମ୍ବିତ ହୋଇ ସଖୀ । ଗାୟନ ଆରମ୍ଭିବେ ହୋଇ ସୁଖୀ ।
ନାନା ଯନ୍ତ୍ରମାନ କରି ବାଦନ । କଳା ଅଭିନୟ ସୁତାନ ମାନ ।
ତୌର୍ଯ୍ୟତ୍ରିକ ମତେ ଗୋ । ସଙ୍ଗୀତ ଭଙ୍ଗୀ ଅଙ୍ଗୀକାର ଶବ୍ଦେ । ୨୨ ।
ସେ ରାସମଣ୍ଡଳୀ ଧୂଳିକି ତୋଳି । ହୃଦସ୍ଥଳୀ ମଣ୍ଡିଲେ ବୋଲି ।
ଭକ୍ତେ ରାଧାକୃଷ୍ଣ ଗୁଣ ଗାଇବା । ଆନନ୍ଦେ ବିହ୍ୱଳ ହୋଇ ନାଚିବା ।
ଲଜ ଭୟ ତେଜି ଗୋ । ହା ବନ୍ଧୁ ବୋଲିବା କି ଚକ୍ଷୁ ବୁଜି । ୨୩ ।
ହେମ ମର୍କତ ଅତୁଳା ପିତୁଳା । ଲଭି ରାସାନ୍ତ ଶ୍ରାନ୍ତ ସ୍ୱେଦମାଳା ।
ଉଭୟ ପ୍ରଫୁଲ୍ଲ ପଙ୍କଜାନନ । ଅପାଙ୍ଗ ପ୍ରସାଦ ଭୂଷଣ ମଣ୍ଡନ ।
ଲଳିତାଙ୍ଗୀକାରେ ଗୋ । ବାନ୍ଧିଦେବା କି ସେ କାଳରେ ଥରେ ।୨୪।

---

୨୦ । ନାନାଳଙ୍କାର ମିଶା ଭୂଷାଶୋଭା—ଅନେକ ପ୍ରକାର ସାତ୍ତ୍ୱିକ ହାବଭାବାଦି । ଭୂଷାଶୋଭା—ଆଭରଣ ଶୋଭା । କାମମୋହନ—କନ୍ଦର୍ପ ମୋହଜନକ ।

୨୧ । ଭୁଜାବଲମ୍ବେ—ବାହୁ ପକାଇ । ହାସାବଲୋକନ—ହାସ ଦେଖି । ରାଗ-ଆଳାପନେ—ରାଗର ଆଳାପ କରିବା ବେଳରେ । ନୂପୁର ତାନେ—ନୂପୁର ଧ୍ୱନିରେ । ଶ୍ରୀପଦ—ଶ୍ରୀକୃଷ୍ଣଙ୍କ ପାଦ । ଚଳନେ—ଚଳିବ ।

୨୨ । ଆବୃତ—ବେଷ୍ଟିତ । କଳମ୍ବିତ—ମିଳିତ । ତୌର୍ଯ୍ୟତ୍ରିକମତେ—ନୃତ୍ୟ, ଗୀତ, ବାଦ୍ୟ ପ୍ରକାରରେ । ସଙ୍ଗୀତ ଭଙ୍ଗୀ—ଗୀତ ଚତୁରତା । ଅଙ୍ଗୀକାର—ସ୍ୱୀକାର ।

୨୩ । ମଉଳି—ମସ୍ତକ । ବିହ୍ୱଳ—ବ୍ୟାକୁଳ । ୨୪ । ହେମ—ସୁନା ମର୍କତ—ନୀଳମଣି । ଅତୁଳା—ଅନୁପମା । ରସାନ୍ତ—ରାସଶେଷ । ଶ୍ରାନ୍ତ—ଶ୍ରମ । ସ୍ୱେଦମାଳା—ଝାଳ ବିନ୍ଦୁସବୁ । ଉଭୟ—ଦୁଇ । ପ୍ରଫୁଲ୍ଲ—ଫୁଟିଥିବା । ପଙ୍କଜାନନ—ପଦ୍ମମୁଖ । ଅପାଙ୍ଗ—ନେତ୍ରପ୍ରାନ୍ତ । ପ୍ରସାଦ ଭୂଷଣମଣ୍ଡନ—ଅନୁଗ୍ରହରୂପ ଅଳଙ୍କାରରେ ଭୂଷିତ । ଲଳିତାଙ୍ଗୀକାରେ—ଲଳିତା ସଖୀଙ୍କ ସ୍ୱୀକାରେ ବା ସୁକୁମାର ସ୍ୱଭାବରେ ଅଙ୍ଗ ବିନ୍ୟାସ ରୂପ ଭଙ୍ଗୀବିଶେଷର ଗ୍ରହଣରେ ।

Digitized by srujanika@gmail.com

ସୁବାସ ବାରି ଝରି ଭରି କର । ଜଗି ଯୋଗାଉଥିବା ଅନୁସରି ।
ମାଗିବା ବେଳେ କରେଣାର କରେଣାସ୍ରି । ଧୃଦେବୀ ଦେବେ ନୟନରେ ଠାରି
ଯୁଗଳ ଲପନ ଗୋ । ଧିଅଉ ତାର ହେବ କଣ୍ଠି ଧନ । ୨୫ ।
ଚନ୍ଦ୍ର ଚନ୍ଦନ ପନୀର ଗୋଳିବା । ଶ୍ରୀଅଙ୍ଗେ ଶ୍ୟାମା ଶ୍ୟାମର ବୋଳିବା ।
ଜାତି ସେବତୀ ପାଖୁଡ଼ା ତୋଳିବା । ଶଯ୍ୟା ବିରଚି ଯତ୍ନେ ସାମଳିବା ।
ଜଣାଇ ମଣାଇ ଗୋ । ଶ୍ରାନ୍ତ ହରିବା ଦୁହିଁ ପହୁଡ଼ାଇ । ୨୬ ।
ଯୁଗଳ ପାଦପଦ୍ମ ହୃଦେ ଥୋଇ । ମଞ୍ଜାଳିବା ଗଣ୍ଡସ୍ଥଳ ଲଗାଇ ।
ଝୁଣ୍ଟନ କରିବା କର ଅଙ୍ଗୁଳି । ଶ୍ରୀଅଙ୍ଗ ଆଳସକୁ ଦେବା ଦଳି ।
ଏ ସେବା ଦୁର୍ଲ୍ଲଭ ଗୋ । ହୋଇବ କେବେହେଁ ଧନ ଏ ସୁଲଭ । ୨୭ ।
ବଂଶୀବଟ-ତଟ ନଟ-ବିଳାସ । କାଳନ୍ଦୀକଲ୍ଲୋଳେ କେଳି ଉଲ୍ଲାସ ।
କଦମ୍ବ ଅବଲମ୍ବନ ତ୍ରିଭଙ୍ଗୀ । ନଟବରବେଶେ ରଙ୍ଗିଣୀ ସଙ୍ଗୀ ।
ମୁରଲୀଗାୟନ ଗୋ । ଦେଖିବା ଶୁଣିବା କି କଣ୍ଠି ଧନ । ୨୮ ।
ଘାଟ ମଗା ହଟ କୁତୁକ ବଚନେ । ବାଟ ଜଗା ଲୁଟ ସୁରସ ଦାନେ ।
କମ୍ପାଇ ମୁଖ କଟାକ୍ଷ ନୟନ । ଧମା କରିବେ ତର୍ଜନ ଗର୍ଜନ ।

---

୨୫ । ସୁବାସ ବାରି—ବାସନା ଥିବା ପାଣି । ଧୃଦେବୀ—ଜଣେ ସଖୀ । ଯୁଗଳ ଲପନ—ଦୁଇ ମୁଖ ।

୨୬ । ଚନ୍ଦ୍ର—କର୍ପୂର । ପନୀର—ସୁବାସିତ ଜଳ । ଶ୍ୟାମା—ରାଧା, ଶ୍ୟାମ—ଶ୍ରୀକୃଷ୍ଣ । ଜାତି—ଜାଇ ଫୁଲ । ଶାମଳିବା—ଆଉଁଷିବା । ଶ୍ରାନ୍ତ—କ୍ଳାନ୍ତ । ପହୁଡ଼ାଇ—ଶୁଆଇ ।

୨୭ । ଯୁଗଳ ପାଦପଦ୍ମ—ରାଧାକୃଷ୍ଣଙ୍କ ପାଦପଦ୍ମକୁ । ଗଣ୍ଡସ୍ଥଳ—ଗାଲ । ମଞ୍ଜାଳିବା—ଘଷିବା । ଝୁଣ୍ଟନକରିବା—ଫୁଟାଇବା । ଆଳସକୁ ଦେବା ଦଳି—ଶ୍ରୀରାଧାଙ୍କ ଆଳସ୍ୟକୁ ଦୂର କରିଦେବା । ଦୁର୍ଲ୍ଲଭ—ସହଜରେ ମିଳେ ନାହିଁ । ସୁଲଭ—ସୁଖରେ ମିଳିବା ।

୨୮ । ତଟ—ପାଖ । ନଟ ବିଳାସ—ନାଟଲୀଳା ବା ପ୍ରମୋଦ । କାଳନ୍ଦୀ କଲ୍ଲୋଳେ—ଯମୁନା ଲହଡ଼ିରେ । କେଳିଉଲ୍ଲାସ—ଜଳକ୍ରୀଡ଼ା ଆନନ୍ଦ । କଦମ୍ବ ଅବଲମ୍ବନ—କଦମ୍ବ ଗଛ ଆଶ୍ରୟ । ନଟବର ବେଶେ—ବଡ଼ ନାଟୁଆ ରୂପରେ । ରଙ୍ଗିଣୀସଙ୍ଗୀ—କୁତୁକିନୀ ଶ୍ରୀରାଧା ସହିତ ବା ସଙ୍ଗୀ ହୋଇ; ରଙ୍ଗିଣୀ—କ୍ରୀଡ଼ା କରିବା ।

୨୯ । ଘାଟ ମଗା—କର ମାଗିବା । ହଟକୁତୁକ—କପଟ କୌତୁକ । ସୁରସ ଦାନେ—ଦୁଗ୍ଧ ଦେବା ଓ ସୁରତି ପାଇଁ । ବାଟଜଗା ଲୁଟ—ବାଟରେ ଜଗି

Digitized by srujanika@gmail.com

ଏ ଗର୍ବିତ ବାଣୀ ଗୋ । ଭର୍ତ୍ସ ପଣ୍ଡବ ହେବ ସଭେ ଶୁଣି । ୨୯ ।
ଉଭୟ କୁଣ୍ଡରେ ଯୁଗଳ କେଳି । ନାବଚାରଣ ଛଳ ଭାଷାବଳୀ ।
ପଶା ବିନୋଦ ହସ ଜିଣା ବଳି । ବସନ୍ତକାଳେ ଦୋଳା ଫଗୁଖେଳି ।
ସୂର୍ଯ୍ୟ ପୂଜା ଭାବ ଗୋ । ଏ ଚର୍ମନେତ୍ରେ କି ଦେଖାଯିବ । ୩୦ ।
ମଧୁପାନ ମତ୍ତ ଅଟ୍ଟହାସେ । ଘୂର୍ଣ୍ଣିତ ନେତ୍ର ଭଙ୍ଗିମା ଅଳସେ ।
କୁଣ୍ଡତଟ ନବ ବିଳାସ ବସି । ସୁମନେ ବେଶ ବନାଇବେ ବସି ।
ତା ଯେବେ ଦେଖିବା ଗୋ ! ବ୍ରହ୍ମାନନ୍ଦ ପଦ ତୁଚ୍ଛ ଲେଖିବା ।୩୧।
ଲୁଚିଲୁଚି ଖେଳ ଭଲ ଉଚ୍ଛନେ । ହେ ବନ୍ଧୁ ଡାକ ଦେବେ ସନସନେ ।
ପାଇ ପାଇଲି ଜୀବନ ବୋଲିବେ । ଗାଢ଼ ଆଲିଙ୍ଗନେ ମଜ୍ଜି ରହିବେ ।
ମାଧୁର୍ଯ୍ୟ ମାଧୁରୀ ଗୋ । ଥୋଇବା କେବେ ଗୋ ନୟନେ ଭରି ।୩୨।
ଧନୀ କରିଥିବେ ପ୍ରଣୟମାନ । ବାମଜାନୁରେ ବସାଇ ମୋହନ ।
ଚିବୁକ ଧରି ଚୁମ୍ବି ଚନ୍ଦ୍ରାନନ । ପଟୁ ଚାଟୁରେ ହରୁଥିବେ ମନ ।
ତୁଳ ତୋଷ ବେଳେ ଗୋ । ଦେଖିବା ଆମ୍ଭେମାନେ କୁଞ୍ଜକାଳେ ।୩୩।

---

ଅଳ କରିବା । କଟାକ୍ଷ ନୟନରେ—ଆଖି ଠାରିବାରେ; ମୁହଁ ହଲାଇବା । ତର୍ଜନ—ଚଦେବା, ତର୍ଜନା । ଭର୍ତ୍ସନା—ଗାଳିଦେବା । ଗର୍ବିତ ବାଣୀ—ବଢ଼େଇ କଥା, ଗର୍ବଯୁକ୍ତ କଥା ।

୩୦ । ଉଭୟ କୁଣ୍ଡରେ—ରାଧାକୁଣ୍ଡ ଓ ଶ୍ୟାମ କୁଣ୍ଡରେ । ଯୁଗଳ କେଳି—ରାଧା କୃଷ୍ଣଙ୍କ ଜଳକ୍ରୀଡ଼ା । ନାବଚାରଣ—ନାହା ପାଣ୍ଡ । ଛଳଭାଷାବଳୀ—ଥଟ୍ଟା କଥାବାର୍ତ୍ତାସବୁ । ପଶା ବିନୋଦ—ପଶା ଖେଳର ଆନନ୍ଦରେ ।

୩୧ । ମଧୁପାନ ମତ୍ତ—ମଦପାନରେ ଉନ୍ମତ୍ତ । ଅଟ୍ଟହାସେ—ଅତି ଉଚ୍ଚ ହସରେ । ଘୂର୍ଣ୍ଣିତ ନେତ୍ର—ଘୂର୍ଣ୍ଣିତ ନେତ୍ର, ଢାଳି ପଡ଼ୁଥିବା ଆଖି । ଭଙ୍ଗିମା ଆଳସେ—ଅଳସଭଙ୍ଗୀରେ । କୁଣ୍ଡ ତଟ ନବବିଳାସ—କୁଣ୍ଡ ପାଖରେ ଥିବା ନୂତନ ଆମୋଦ ପ୍ରମୋଦ । ସୁମନେ—ଫୁଲରେ । ବ୍ରହ୍ମାନନ୍ଦ ପଦ—ପରମାତ୍ମା ଲାଭଜନିତ ସୁଖ ବିଷୟ ବା ସ୍ଥାନକୁ । ତୁଚ୍ଛ—ନିକୃଷ୍ଟ ।

୩୨ । ଭଲ ଉଚ୍ଛନେ—ଅଲଗା ହେବାରୁ ଉଦ୍‌ବେଗରେ । ମାଧୁର୍ଯ୍ୟମାଧୁରୀ—ସୌନ୍ଦର୍ଯ୍ୟର ମଧୁରତା ଭରି—ପୂର୍ଣ୍ଣ କରି ।

୩୩ । ପ୍ରଣୟମାନ—ପ୍ରୀତିରେ କୋପ । ମୋହନ—କୃଷ୍ଣ । ଚିବୁକ—ଓଷ୍ଠତଳ । ଚନ୍ଦ୍ରାନନ—ରାଧାଙ୍କ ଚନ୍ଦ୍ରମୁଖ । ପଟୁ ଚାଟୁରେ—ଉତ୍କୃଷ୍ଟ ତୋଷାମୋଦ କଥାରେ । ତୋଷ—ସନ୍ତୋଷ ।

Digitized by srujanika@gmail.com

ଗୋରଚନା କସ୍ତୁରୀ ବୋଲି ଶ୍ରୀଅଙ୍ଗେ । ରୂପ ସୁବେଶ ପାଲଟାଇ ରଙ୍ଗେ ।
ନିଭଙ୍ଗେ ଧନୀ ବଜାଇଁ ମୁରଲୀ । ଧ୍ୱନି ଶୁଣିଲେକେ ଯିବ ଉଛୁଳି ।
ତଦାତ୍ମିକ ଜ୍ଞାନେ ଗୋ । ଭାବ ସାତ୍ତ୍ୱିକ ବଢ଼ିଯିବ ମନେ । ୩୪ ।
ଚାତୁରୀ ଭୁଞ୍ଜାଇଁ ସେ ଭାବେ ହରି । ହସି ହସି ବୋଲ କରି କିଶୋରୀ ।
ସ୍ମର ଅପସ୍ମାର ବିକାରମତେ । କମ୍ପି ବନମାଳୀ ମୃଗ ଗୁମ୍ଫନ୍ତେ ।
ସତେ କି ଦେଖିବା ଗୋ । ଆଖିରେ ଲେଖି ଲୁଗୁଇ ରଖିବା । ୩୫ ।
ଈର୍ଷାମାନିନୀ ହେଲେ ସୁମୁଖୀ । ବିଚ୍ଛେଦଛନ୍ଦେ କୃଷ୍ଣ ହୋଇ ଦୁଃଖୀ ।
ଦୈନ୍ୟରେ ଧରିବେ ଅମ୍ବର କର । ତୁମ୍ଭ ସଙ୍ଗିନୀ ସଙ୍ଗୀ ମୋତେ କର ।
ଏ ଭାରତୀ ଭୂତି ଗୋ । ଅଳ୍ପ ଭାଗ୍ୟରେ କି ଲଭିବ ଶ୍ରୁତି । ୩୬ ।
ନାରୀବେଶାଭିସାରିକା ହରି । ପୁଂସବେଶାଭିସାରିକା କିଶୋରୀ ।
ଏ ରୂପ କରି କରାଇ ମିଳନ । ସାର୍ଥ କରିବା ଦିନ କେଉଁଦିନ ।
ଥାଇଁ ଥାଇଁ ପ୍ରାଣେ ଗୋ । ସୁଖ ଦେବା କି ପଦଦାସୀ ପଣେ । ୩୭ ।
ଶ୍ରୀକରଗୁନ୍ଥା ପୁଷ୍ପମାଳା ଦେଇ । ଧନୀ ବୋଲିବେ ବେଗେ ଯାଅ ନେଇ
ମୋ ପ୍ରାଣବନ୍ଧୁ ସନ୍ନିଧିରେ ଦେଇ । ସଙ୍କେତ କୁଞ୍ଜାଠାରେ ଫେରିବ ।

୩୭-୨—ପ୍ରତିଦାସ ଛ, ଙ୍ଗ ବ୍ୟତୀତ ସମସ୍ତ ପୋଥିରେ ।

---

୩୪ । ଗୋରଚନା—ଗୋରୋଚନା । ରୂପ—ଆକାର ବର୍ଣ୍ଣ । ସୁବେଶ—ପୁରୁଷ ଓ ସ୍ତ୍ରୀ ବେଶଭୂଷା । ପାଲଟାଇ—ବଦଳାଇ । ରଙ୍ଗେ—କୌତୁକରେ । ଧନୀ—ଶ୍ରୀକୃଷ୍ଣରୂପିଣୀ ଶ୍ରୀରାଧା । ତଦାତ୍ମିକ ଜ୍ଞାନେ—ନିଜକୁ କୃଷ୍ଣରୂପ ଜ୍ଞାନରେ । ସାତ୍ତ୍ୱିକଭାବ—ସ୍ୱେଦାଦି ବିକାର ।

୩୫ । ସେ ଭାବେ—କିଶୋରୀ ଭାବରେ । ସ୍ମର ଅପସ୍ମାର ବିକାର ମତେ—କନ୍ଦର୍ପରୂପ ଅପସ୍ମାର ଜନିତ ବିକାର ଅନୁସାରେ କମ୍ପି କମ୍ପି ।

୩୬ । ଈର୍ଷା ମାନିନୀ— ପତିଙ୍କ ଅନ୍ୟ ସ୍ତ୍ରୀ ( ଚନ୍ଦ୍ରାବଳୀ ) ସଙ୍ଗ ଜନିତ କୋପରେ ରୁଷିବା । ସୁମୁଖୀ—ରାଧା । ବିଚ୍ଛେଦ ଛନ୍ଦେ—ବିରହ ଉଦ୍‌ବେଗରେ । ଦୈନ୍ୟରେ—ଦୀନହୀନ ଭାବରେ । ଭାରତୀଭୂତି—ବଚନ ସମ୍ପତ୍ତି । ଶ୍ରୁତି—କାନ ।

୩୭ । ନାରୀବେଶାଭିସାରିକା—ସ୍ତ୍ରୀ ବେଶ ଧରି ସଙ୍କେତ ସ୍ଥାନକୁ ଯିବା । ପୁଂସବେଶାଭିସାରିକା—ପୁରୁଷ ବେଶ ଧରି ସଙ୍କେତ ସ୍ଥାନକୁ ଯିବା । ସାର୍ଥ—ସଫଳ । ପଦଦାସୀ—ଛଟାଇ ବୃନ୍ଦା ଦୂତୀ ।

Digitized by srujanika@gmail.com

ଶୁଣି ଏ ବଚନ ଗୋ । ଶ୍ରୁତ କୃତାର୍ଥ ହେବ ବର୍ଣ୍ଣି ଘନ । ୩୮ ।
ଅଭିସାର କଲୁ କଲୁ କଣ୍ଠୋଷ୍ଠ । ତନ୍ମୟ ଭାବରେ ହୋଇ ଅଭୁଷ୍ଟ ।
ତମାଳ ପରେ କେକୀ ନୃତ୍ୟ ଦେଖି । କୃଷ୍ଣ ଭ୍ରମେ କଲୁ ସ୍ତବ୍ଧତ ଅଙ୍ଗି ।
ଏ କି ଖେଳ ପୁଣ ଗୋ । ଛଳ ଛଇଳୀଙ୍କ ସଙ୍ଗେ ଭଣ୍ଡିବା । ୩୯ ।
ନୀଳାକମଳ ଦେଖି ଅଶ୍ରୁମୁଖୀ । ନବଘନାଚ୍ଛନ୍ନ ଦର୍ଶନେ ସୁଖୀ ।
ଚମ୍ପା କେତକେ ସୁମନ ମଣ୍ଡନ । କଞ୍ଜ ଖଞ୍ଜନ ଦର୍ଶନ ରଞ୍ଜନ ।
ଏ ଯୁଗଳ ଭାବ ଗୋ । ଦେଖି ଠଗଠର ହେବାର ହେବ । ୪୦ ।
ବଣା ହୋଇ ଫୁଲତୋଳା କାନନେ । ଖୋଜି ନ ପାଇ ଭାଙ୍ଗିବା ଲଞ୍ଛନେ ।
ବନ୍ଦେ ଗୋବନ୍ଦ କୃଷ୍ଣ ଘନଶ୍ୟାମ । କାମମୋହନ କାମିକଳ୍ପଦ୍ରୁମ ।
ଗିରିବରଧର ହେ । ଯଶୋଦା-ଗର୍ଭସିନ୍ଧୁ କଳାକର । ୪୧ ।
ତ୍ରିଭଙ୍ଗି ନଟନାଗରଶେଖର । ନାଗଗ୍ରୀନସ୍ତ୍ରିନ ନୃତନ ମାର ।
ନନ୍ଦନନ୍ଦନ ଜଗତବନ୍ଦନ । ସନ୍ତାପିନୀହୃଦ ଚନ୍ଦ୍ରବଦନ ।
ଛଇଳୀବିନୋଦ ହେ । ରସାନନ୍ଦ ଗୋପଜନସମ୍ପଦ । ୪୨ ।
କାମଦ୍ୱିଜ ଲକ୍ଷ୍ମ ପୂଜାପ୍ରତିମା । ପ୍ରେମବର୍ଦ୍ଧନ-ଭଳୀ-ସ୍ଥଳୀ-ସୀମା ।
ବ୍ରାଳୀ-ମଉଳୀ-ଗୁଚ୍ଛ ଫୁଲମାଳୀ । କ୍ଷେତ୍ରୀମୁଖାମ୍ବୁଜ-ମଉଅଳ ।
ପ୍ରେମନଟ-ଇନ୍ଦ୍ର ହେ । ଚେତନାଗ୍ନି-ଭୃଙ୍ଗ-ସିନ୍ଦୂରବିନ୍ଦୁ । ୪୩ ।

---

୩୮ । ଧନୀ—ରାଧା । ପ୍ରାଣବନ୍ଧୁ—କୃଷ୍ଣ । ସନ୍ନିଧିରେ—ନିକଟରେ, ପାଖରେ । ସଙ୍କେତ—ଠିକଣାଥାନ । ଫଖଳିବ—କହିବ, ପଗୃହିବ । ଶ୍ରୁତ—କାନ । କୃତାର୍ଥ—ସଫଳ ।

୩୯ । ଅଭିସାର—ସଙ୍କେତ ସ୍ଥାନକୁ ଗମନ । ତନ୍ମୟ ଭାବରେ—ଶ୍ରୀକୃଷ୍ଣମୟଭାବରେ । କେକୀ—ମୟୂର । ସ୍ତବ୍ଧତ—ନିର୍ନିମେଷ, ଟାଟକା । ଛଳ—ପରିହାସ କର । ଛଇଳୀକି—ସୁନ୍ଦରୀ ରାଧାକୁ ।

୪୦ । ନୀଳାକମଳ—ନୀଳପଦ୍ମ, ଇନ୍ଦୀବର । ଅଶ୍ରୁମୁଖୀ—ଲୁହମୁହିଁ, କାନ୍ଦଇ । ନବଘନାଚ୍ଛନ୍ନ ଦର୍ଶନେ—ନୂଆ ମେଘ ଘୋଡ଼ାଇବା ଦେଖି । କେତକ ସୁମନ—କେତକୀ ଫୁଲ । ମଣ୍ଡନ—ମଣ୍ଡିହେବା । କଞ୍ଜ—ପଦ୍ମ । ଖଞ୍ଜନ—ବକୁଲପାଛିଆ ଚଢ଼େଇ । ଦର୍ଶନରଞ୍ଜନ—ଦେଖିବାରେ ଅନୁରକ୍ତ । ଯୁଗଳଭାବ—ଦୁହିଁଙ୍କର ସାଦୃଶ୍ୟ ବିନୋଦ । କଞ୍ଜରେ ଖଞ୍ଜନ ବସିବା ମଙ୍ଗଳକର ।

୪୧ । କାନନେ—ବନରେ । କାମମୋହନ—ମଦନକୁ ମୋହକାରୀ । କାମୀକଳ୍ପଦ୍ରୁମ—କାମନା ପୋଷିଥିବା ଲୋକର ଇଚ୍ଛା ପୂରଣକାରୀ । ଗିରିବରଧର—ଗୋବର୍ଦ୍ଧନଧାରୀ । ଯଶୋଦା ଗର୍ଭ-ସିନ୍ଧୁ କଳାକର—ଯଶୋଦାଙ୍କ ଗର୍ଭରୂପ

Digitized by srujanika@gmail.com

ରସାମୃତସିନ୍ଧୁ-ଲୀଳାଲହରୀ । ରସିକଜନୀହୃଦ-ପଞ୍ଜରସାରୀ ।
ଭଙ୍ଗିରତନ-ରସସର-କୁଞ୍ଜି । ରାଗପୁଷ୍ଟି-ସରଜନା ବିରଞ୍ଚି ।
ଏଣୁ ନାମ ଧରି ଗୋ । ଡାକ ଡାକୁ ବା କେବେ ଭଜି କରି । ୪୪ ।
ଅୟେ ରାଧିକେ ବୃଷଭାନୁଜେମା । ରାଗସାର-ମାରମୋହପ୍ରତିମା ।
କଟଣାଶ୍ରି ବ୍ରଜେଶ୍ୱରୀ ବସନ୍ତ । ପ୍ରେମଅର୍ଥୀ କୃତାର୍ଥିନୀ ଶ୍ରୀମତୀ ।
ପ୍ରଣୟସାଗରୀ ଗୋ । ମହାତ୍ରିମୋହିନୀ ନବନାଗରୀ । ୪୫ ।
ଗୋବିନ୍ଦ-ନୟନ-ମୀନ-ବଡ଼ଶୀ । ଶ୍ୟାମ-ମାନସମୃଗ ମୋହ-ପାଶୀ ।
ବିଚିତ୍ର କୃଷ୍ଣ-ରଚନାଭିଷେକା । ରସାନନ୍ଦ-ପ୍ରେମପ୍ରଧୂମାଦିକା ।
ଭବବିନୋଦିନୀ ଗୋ । ଆନନ୍ଦ-ସୁଖଦାନୀ ପ୍ରହ୍ଲାଦିନୀ । ୪୬ ।

---

ସମୁଦ୍ରରୁ ଜାତ ଚନ୍ଦ୍ରମା ସଦୃଶ । ୪୨ । ନଟନାଗରଶେଖର—ନାଟରସିକଙ୍କ ଚୂଡ଼ା ଭୂଷଣ, ଉତ୍କୃଷ୍ଟ ରସିକ ନଟବର । ନାଗରୀ ନୟନ ନୂତନ ମାର—ରସିକା ଅକ୍ଷିକୁ ନୂଆ କନ୍ଦର୍ପ । ସନ୍ତାପିନୀ—ଦୁଃଖିନୀ । ଚନ୍ଦ୍ର—କର୍ପୂର । ଛଇଳୀବିନୋଦ—ଛଟକିନୀ ନାରୀଙ୍କର ଚତୁର ଆନନ୍ଦଦାତା । ରସାନନ୍ଦ—ମଧୁର (ଶୃଙ୍ଗାର) ରସରେ ଆନନ୍ଦମୟ ବା ପୂର୍ଣ୍ଣ ।

୪୩ । କାମଦ୍ୱିଜ ଇଷ୍ଟପୂଜା ପ୍ରତିମା—କନ୍ଦର୍ପରୂପ ବ୍ରାହ୍ମଣର ଆରାଧ୍ୟ ଦେବମୂର୍ତ୍ତି, କନ୍ଦର୍ପମୋହନ । ପ୍ରେମବନ୍ଦନ ତଳୀସ୍ଥଳୀ ସୀମା—ସ୍ନେହ ବନ୍ଦନତଳୀ ବେଶିବା, କେଦାର—ପ୍ରେମାଧାର । ବାଳୀମଣ୍ଡଳ ଶିରୁଫୁଲମାଳୀ—ସ୍ତ୍ରୀମାନଙ୍କର ମସ୍ତକର ସୁନ୍ଦରଫୁଲମାଳା, ସ୍ତ୍ରୀ ପୂଜ୍ୟ । ବଲ୍ଲବୀ ମୁଖାମ୍ବୁଜ ମତ୍ତ ଅଳି—ଗଉଡ଼ୁଣୀଙ୍କ ମୁଖପଦ୍ମରେ ମତ୍ତ ଭ୍ରମର—ଗୋପୀ ରସିକ । ପ୍ରେମନଭଇନ୍ଦୁ—ପ୍ରେମ ରୂପ ଆକାଶର ଚନ୍ଦ୍ର । ନବନାରୀ—କୁଳସିନ୍ଦୂରବିନ୍ଦୁ—ସୁରଙ୍ଗ ରୂପ ସ୍ତ୍ରୀ ମସ୍ତକର ସିନ୍ଦୂରଟୋପା ସଦୃଶ, ରଞ୍ଜନମଣ । ୪୪ । ରସାମୃତସିନ୍ଧୁ ଲୀଳାଲହରୀ—ମଧୁରରସ ହେଲା ଅମୃତ (ସୁଧା ବା ଜଳ) ମୟ ସମୁଦ୍ରରେ ନାଚନ୍ତି ତରଙ୍ଗ । ରସିକଜନୀ ହୃଦପଞ୍ଜରୀ—ସାରୀ ରସିକାଙ୍କ ହୃଦରୂପ ପିଞ୍ଜରାରେ ବାସ କରୁଥିବା ପକ୍ଷୀ ବିଶେଷ, ଗୋପୀ ହୃଦୟ ମନାଗ । ଭଙ୍ଗୀରତନ—ରସଘର କୁଞ୍ଜି—ଲୀଳା ରୂପ ରତ୍ନମାନଙ୍କର ଭଣ୍ଡାରର ଚାବିକାଠି; ଲୀଳାର ଆଧାରଭୂତ । ରାଗ ସୃଷ୍ଟି ସରଜନା ବିରଞ୍ଚି—ଅନୁରାଗ ରୂପ ସଂସାର ନିର୍ମାଣରେ ବିଧାତା ଅନୁରାଗମୟ । ୪୫ । ରାଗସାର—ଅନୁରାଗର ସାର ସ୍ୱରୂପା । ମାରମୋହ ପ୍ରତିମା—କନ୍ଦର୍ପକୁ ମୁଗ୍ଧ କରିବା ମୂର୍ତ୍ତି । ପ୍ରେମଅର୍ଥୀ କୃତାର୍ଥିନୀ—ପ୍ରେମ ପ୍ରାର୍ଥନାକାରୀ ଲୋକଙ୍କର କୃତାର୍ଥତାକାରିଣୀ । ଶ୍ରୀମତୀ—ରାଧା । ପ୍ରଣୟସାଗରୀ—ପ୍ରେମ ସମୁଦ୍ରରୂପା । ମହାତ୍ରିମୋହିନୀ—ତ୍ରିଲୋକ ମୋହନକାରିଣୀ । ୪୬ । ଗୋବିନ୍ଦ ନୟନମୀନ ବଡ଼ଶୀ—ଶ୍ରୀକୃଷ୍ଣଙ୍କ ନେତ୍ରରୂପ ମାଛର

Digitized by srujanika@gmail.com

ସୁରଚ୍ଛଳକୁଶଳା ଦାସ ବତ୍ସଳା । ହରିହୃଦୟ-ନବରତ୍ନମାଳା ।
କାମୀ କାମଧେନୁ କଳ୍ପଲତା । ବିଶ୍ୱପାବନ ମଦନବନ୍ଦିତା ।'
ଏହି ନାମମାନ ଗୋ । ଭେବେ ହୋଇବ ତାଇରେ ଗାୟନ । ୪୭ ।
ସ୍ନେହୋତ୍କଣ୍ଠିତାଭାବେ ସଖୀମାନେ । ମାନସ ମଗ୍ନ ଲୀଳା ଅସ୍ୱାଦନେ ।
ପ୍ରେମ ଚମ୍ପିକେ ଗ୍ରାହକେ ବାଗ୍ଭୂର । ସଦା ଏ ଜୀବନେ କର ସଞ୍ଚାର ।
ସାଧୁସାଧ୍ୱେ ଦେଖି ଦେହ । ଯାହିଁ ନାହିଁ ଏଥୁଁ ଅଧିକ ସୁଖ । ୪୮ ।
ଜୟ ବୃନ୍ଦାଦେବୀ ନାଟ୍ୟସାଧବୀ । ଲଳିତେ ବିଶାଖିଏ ରଙ୍ଗଦେବୀ ।
ଚନ୍ଦେ ଚମ୍ପକଲତିକା ସୁଦେବୀ । ଚିତ୍ରା ତୁଙ୍ଗବିଦ୍ୟା ପିଞ୍ଛା ସେବି ।
ଜଣାଉଛୁ ଏତେ ଗୋ । ଅଙ୍ଗୀକାର କର କରୁଣାଚିତ୍ତେ । ୪୯ ।
ଶ୍ରୀରୂପମଞ୍ଜରୀ ରସମଞ୍ଜରୀ । ଅନଙ୍ଗମଞ୍ଜରୀ ଗୁଣମଞ୍ଜରୀ ।
କସ୍ତୁରୀ ତୁଳସୀ ପ୍ରେମସାଗରୀ । କି କର ଏ ଦୀନ ହେବ କିଙ୍କରୀ ।
କରୁଣା ବିସ୍ତାର ଗୋ । ଏ ପ୍ରାଣବାଳକ ତୁମ୍ଭର ଭର । ୫୦ ।

---

ବଦଶୀ ସ୍ୱରୂପା, ନେତ୍ରାକର୍ଷଣକାରିଣୀ । ଶ୍ୟାମ ମାନସମୃଗ ମୋହପାଶୀ-- ଶ୍ରୀକୃଷ୍ଣଙ୍କ ମନରୂପ ମାଛକୁ ମୋହ କରିବା ପାଶ ସ୍ୱରୂପା । ବିଜନ ନୃତ୍ତ ରଚନାଉତ୍ସେକା— ମନୋହର ନୀଳମଣିରେ ଅଭିଷେକା (ରାଜସିଂହାସନରେ ବସି ରହିବେ ମଣ୍ଡିତ ହେବା—ଏଠାରେ ନୀଳରତ୍ନମଣ୍ଡିତ ହେବା) ରସାନନ୍ଦ ପ୍ରେମମଧୁ ମାଦନୀ ମଧୁର ରସ (ଶୃଙ୍ଗାର) ଜନିତ ଅନନ୍ଦମୟ ପ୍ରେମରୂପକ ମଦ୍ୟ ଦ୍ୱାରା ଉନ୍ମାଦନୀ ବା କୃଷ୍ଣ ପ୍ରେମରୂପ ମଦ୍ୟରେ ଉନ୍ମାଦନୀ । ସ୍ତବ ବନ୍ଦନାଦନୀ—ବନ୍ଦିସ୍ତବ ପଣ୍ଡିତେ ।

୪୭ । ସୁରଚ୍ଛଳକୁଶଳା—ରଞ୍ଜନନିପୁଣା । ହରିହୃଦୟ ନବରତ୍ନମାଳା— କୃଷ୍ଣଙ୍କ ଉରର ନୂତନ ( ବା ନବରତ୍ନ ନିର୍ମିତ ) ରତ୍ନମାଳାସ୍ୱରୂପା, କୃଷ୍ଣ ହୃଦୟ-ବିଳାସିନୀ । କାମୀ—କାମନାକାରୀ ଲୋକର କାମଧେନୁ—କାମନା ମନ୍ତ୍ରପୂରଣ-କାରିଣୀ ଗାଈ । କଳ୍ପଲତା—ଇଚ୍ଛାପୂରଣ କରିବା ଲତାବିଶେଷ, ଅଭୀଷ୍ଟ ପ୍ରଦାନକାରିଣୀ । ବିଶ୍ୱପାବନ—ବ୍ରହ୍ମାଣ୍ଡପାବନୀ । ମଦନବନ୍ଦିତା—କନ୍ଦର୍ପପୂଜିତା ।

୪୮ । ସ୍ନେହୋତ୍କଣ୍ଠିତା ଭାବେ—ସ୍ନେହରେ ଉତ୍କଣ୍ଠା ପ୍ରକାରରେ । ମାନସମଗ୍ନ—ମନ ବୁଡ଼ିଯାଇଛି । ଲୀଳାଅସ୍ୱାଦନେ—ରାଧାକୃଷ୍ଣଙ୍କ ଲୀଳା ଅନୁଭବ ବିଷୟରେ । ସଞ୍ଚାର—ପ୍ରବେଶ । ସାଧୁଶାଧ୍ୱେ—ପରମାର୍ଥ ଜ୍ଞାନରେ ବା ସାଧୁ ସାଧୁଚରଣ ଦାସଙ୍କ ଜ୍ଞାନରେ । ୪୯-୫୦ । ଅଙ୍ଗୀକାର—ଅନୁମୋଦନକାରିଣୀ, ସେବିକା । ଦୀନ—ଗରିବ । କିଙ୍କରୀ—ଚାକରାଣୀ । ପ୍ରାଣବାଳକ—ଯେ ନିଜ ଜୀବନକୁ ତୁମ୍ଭଠାରେ ବାନ୍ଧିଛି ।

Digitized by srujanika@gmail.com

ଶ୍ରୀବୃନ୍ଦାବନେ ଶ୍ରୀରାସମଣ୍ଡଳେ । ପ୍ରେମତନ୍ମୟ ଶୁଦ୍ଧଭାବସ୍ଥଳେ ।
ହା ରାଧାମୋହନ ଡାକେ ହଜାର । ସେତେ କି ଏ ଜୀବ ଯିବ ବାହାର ।
ଅବଧାନ୍ୟ କର ହେ ! ବାଞ୍ଛା ପୂରାଅ ବ୍ରଜଦେବ ହେଳେ । ୫୧ ।

---

## ଏକପଦୀ ଛାନ୍ଦ

## ଶ୍ରୀ କିଶୋରୀଙ୍କର ସୂର୍ଯ୍ୟପୂଜା ଅଭିସାର

( ଶ୍ରୀକୃଷ୍ଣ ବରଣ ମିଳନାଦ )

ରାଗ—ବଣବାଟଜ

ରବି ଉଦିତେ ଯେବେ ଏ ରୂପ । ରାଧା ବେଶ କରିଥିଲେ ଶେଷ ।
ରମଣୀମଣି ଅତୁର ମଣି ଉପହାର ସଜ କଲେ ସଖୀଗଣ ।
ଚଳମନା । ସୂର୍ଯ୍ୟ ପୂଜାଛଳେ ହେଲେ ନବାଙ୍ଗନା । ୧ ।
କୁନ୍ଦଲତା ମନ୍ଦହାସେ ଭାଷି । କଠ ମଠ କି କେ ମଦାଳସି ।
ତରଣିମିତ୍ର ଦେଖି ଅଣି ହେବ ସୁଖୀ ଲକ୍ଷି ଅଲକ୍ଷିତ ପୁଣ୍ୟରାଶି ।
ବନଜନୀ । ଆଜ ହେବ ହରି ବରସୁଖଦାନୀ । ୨ ।

---

*୧ । ପ୍ରେମତନ୍ମୟ ଶୁଦ୍ଧ ଭାବସ୍ଥଳେ—ଶ୍ରୀରାଧାକୃଷ୍ଣ ପ୍ରେମରେ ବୁଡ଼ିଯାଇ ପରିଶୁଦ୍ଧ ଭକ୍ତିର ଅପୂର୍ବ ଅବସ୍ଥାରେ । ବ୍ରଜଦେବ ଦେବ—ହେ ସାଧକେ ।

---

୧ । ରମଣୀମଣି—ଶ୍ରୀରାଧା । ଅତୁର—ଉତ୍କଣ୍ଠା । ସଖୀଗଣ—ସଖୀସମୂହ । ଉପହାର—ସୂର୍ଯ୍ୟପୂଜାର ଉପହାର, ଦ୍ରବ୍ୟବିଶେଷ । ସଜକଲେ—ପ୍ରସ୍ତୁତ କଲେ । ଚଳମନା—ଯିବାକୁ ଉତ୍ସୁକା । ସୂର୍ଯ୍ୟପୂଜା ଛଳେ—ସୂର୍ଯ୍ୟପୂଜାର ନାମରେ । ନବାଙ୍ଗନା—ନୂତନ ସ୍ତ୍ରୀ ଶ୍ରୀରାଧା ।

୨ । ତରଣିମିତ୍ର—ବହ୍ନସ୍ତ୍ରକର ସୂର୍ଯ୍ୟ ଓ ଆଶ୍ଚର୍ଯ୍ୟ ମିତ୍ରରୂପ ଶ୍ରୀକୃଷ୍ଣ । ଲକ୍ଷି—ଅନୁମାନ କରିଯାଏ । ଅଲକ୍ଷିତ—ଅବଳନୀୟ । ପୁଣ୍ୟରାଶି—ସୁକୃତସମୂହ । ବନଜନୀ—ପଦ୍ମଲତା ଓ ପଦ୍ମନାଭକନ୍ୟା ରାଧା । ହନ୍ତ—ସୂର୍ଯ୍ୟ ଓ ଶ୍ରୀକୃଷ୍ଣ । ବର-ସୁଖଦାନୀ—ଅତି ଉତ୍କୃଷ୍ଟ ସୁଖଦାତା ।

Digitized by srujanika@gmail.com

ଶୁଣି ଗୁଣିଲେ ରମଣୀବର । ସତେ ଏତେ ଭାଗ୍ୟ ଥିବ ମୋର ।
ଲକ୍ଷଣ ସେକ୍ଷଣ ସ୍ଫୁରିଲା ଲକ୍ଷଣ କ୍ଷୀଣଅଙ୍ଗୀ ଶନ୍ତ ମୁଦଭର ।
ବାମଅଙ୍ଗ । ବାହୁ ଜଘନ ରଚଲେ ସେହୁ ରଙ୍ଗ । ୩ ।

ଯଞ୍ଜିବାକେ ଅନୁକୂଳ ବିଧି । ଯେହ୍ନ କାଳେ ଅନୁକୂଳ ବିଧି ।
ଜୟ ଜୟ ବାଣୀ ବିଜୟ ବେଳରେ ପଞ୍ଚସ୍ୱରାବଳୀ କଲା ସିଦ୍ଧି ।
ଅଣାବୃଦ୍ଧି । ଦାଣ୍ଡେ ଥାଇଣ ଡାକିଲେ ଦଧି ଦଧି । ୪ ।

ଦାସୀ ଆସି ଭାଳେ ମତ୍ସ୍ୟ ମତ୍ସ୍ୟ । କମ୍ବୁ ଶମ୍ଭୁଅଳେ ସ୍ଫୁରେ ସ୍ୱଚ୍ଛ ।
ମନ୍ଦ ମନ୍ଦ ଗନ୍ଧବହ ବହୁଅଛୁ ଅଚ୍ଛିଦ୍ର ଭଦ୍ର ଏ ନୋହେ ମିଛ ।
ଦେଖି ସୁଖୀ । ଅବସ୍ୱାଛେ, ଉଡ଼ିଗଲା ନୀଳପକ୍ଷୀ । ୫ ।

ନକୁଳକୁଳ ପୁରତେ ଗୃହି । ଶତ୍ରୁ ଜଷତର ସୀମା ନାହିଁ ।
ବାମେ ଶିବା ଶବ କୁମ୍ଭ ଦେଖି ଦମ୍ଭ କୁମ୍ଭିକୁମ୍ଭସ୍ତନୀ ହୃଦେ ବହି ।
ଦକ୍ଷିଣରେ । ଦ୍ୱିଜ ଗଜ ଗୋମିଥୁନ ମୃଗ ଚରେ । ୬ ।

ଗୃଧ୍ରପକ୍ଷୀ ଦେଖି ଚନ୍ଦ୍ରମୁଖୀ । ବେଳକୁ ବେଳ ଅଧିକ ସୁଖୀ ।

---

୩ । ରମଣୀବର—ସ୍ତ୍ରୀଶ୍ରେଷ୍ଠା ରାଧା । ଲକ୍ଷଣ ବାମଚକ୍ଷୁ । ସ୍ଫୁରିଲା—ଥରିଲା । କ୍ଷୀଣଅଙ୍ଗୀ—କୃଶୋଦରୀ ରାଧା । ଲକ୍ଷଣ—ଶୁଭଲକ୍ଷଣ; ମୁଦଭର—ଆନନ୍ଦପୂର୍ଣ୍ଣ । ସେହୁ ରଙ୍ଗ ରଚଲେ—ସେହି ଭାବ ଧରିଲେ ଅର୍ଥାତ୍ ଥରିଲେ ।

୪ । ଅନୁକୂଳ ବିଧି—ଯାହା ଅନୁକୂଳ କାର୍ଯ୍ୟ । ଅନୁକୂଳ ଶୁଭପ୍ରଦ ବା ସପକ୍ଷ । ବାଣୀ—ବଚନ । ସିଦ୍ଧି—କାର୍ଯ୍ୟ ସଫଳତା ସୂଚକ । ଅଣା ବୃଦ୍ଧି—ଅଣା ହେଲା । ଥାଇଣ—ଗଉଡୁଣୀ ।

୫ । ଦାସୀ—କେଉଟୁଣୀ । କମ୍ବୁ—ଶଙ୍ଖ । ଶମ୍ଭୁଅଳେ—ମହାଦେବ ମନ୍ଦିରରେ । ସ୍ୱଚ୍ଛ—ସ୍ପଷ୍ଟ । ଗନ୍ଧବହ—ପବନ । ଅଚ୍ଛିଦ୍ର—ଅଖଣ୍ଡିତ । ଭଦ୍ର—ଶୁଭ । ନୀଳପକ୍ଷୀ—ଭଦଭଦଳିଆ ଚଢ଼େଇ ।

୬ । ନକୁଳକୁଳ—ନେଉଳସମୂହ । ପୁରତେ—ଆଗରେ । ଉତ୍ସବତର—ଆନନ୍ଦର । ବାମ—ବାଁ ପାଖରେ । ଶିବା—ଶିଆଳ, ବିଲୁଆ । ଶବ—ମୂର୍ଦ୍ଦାର । କୁମ୍ଭ—ମାଠିଆ । ଦମ୍ଭ—ଗର୍ବ । କୁମ୍ଭିକୁମ୍ଭସ୍ତନୀ—ହାତୀମୁଣ୍ଡତୁଲ୍ୟ କୁଚଯୁକ୍ତା । ଦ୍ୱିଜ—ବ୍ରାହ୍ମଣ । ଗଜ—ହାତୀ । ଗୋ ମିଥୁନ—ଗାଈ ଓ ଷଣ୍ଢ । 'ବାମେ ଶବଶିବା-କୁମ୍ଭାଃ ଦକ୍ଷିଣେ ଗୋଦ୍ୱିଜମୃଗାଃ; ନକୁଳ ସର୍ବକାର୍ଯ୍ୟେଷୁ ଅଗ୍ରତଃ ସର୍ବଦ ବାଧତେ' ।

Digitized by srujanika@gmail.com

ନୀଳକମଳରେ ଖଞ୍ଜନ ଲୋକନେ ଗୋବିନ୍ଦ ଆନନ ଅଣି ଲକ୍ଷି ।
ପ୍ରେମପ୍ରେରଲେ । କୃଷ୍ଣ ବର୍ଣ୍ଣାଶ୍ରୟ ସ୍ଫୁର୍ତ୍ତି ସୁତମାଲେ । ୭ ।
ସଖୀଙ୍କ କହିଲେ ପ୍ରେମାବେଶେ । ବନ କି ମନମୋହନ ଦିଶେ ।
ସୁମନ ରଞ୍ଜନ ବସନ୍ତବାସ କି ଏକାନ୍ତ ହେବାକୁ ଭାବ ରସେ ।
ଶ୍ୟାମଘନ । ବିଦେହକୁ କମ୍ପାଉଛି ଘନ ଘନ । ୮ ।
ଠକ ହସି କୁନ୍ଦଲତା ଭାଷେ । ଛନ୍ଦର କନ୍ଦରପର ଦିଶେ ।
ଭାବର ମିତ କି ଭାବରମିତ କି ନ ଦେଖାଏ ସ୍ୱରୂ ଦଣେ ଦଣେ ।
ଅନୁରାଗ । କରାଇବ କେତେ ଜାତି ନାଟରଙ୍ଗ । ୯ ।
ଧୀରସ୍ୱଭା ଅନଅନୁଭବା । ତ୍ରପା କମ୍ପାଇଲା ଶମାଛବି ।
ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ଭଙ୍ଗୀ ଉତ୍କଣ୍ଠାରେ ପଶୁଥିଲେ କେତେ ଦୂରେ ଲବ ।
ସଖୀ କହି । ବାଟ ଜାଳକ ହେଳକ ଅପି ସେହି । ୧୦ ।
ବୃନ୍ଦା କହନ୍ତି ନାଟ୍ୟଦେବୀଶ୍ରେଣୀ । ଭେଟିଲେ ଅସି କିଶୋରୀମଣି ।

---

୭ । ନୀଳକମଳରେ—ନୀଳପଦ୍ମରେ । ଖଞ୍ଜନ—କଜଳପାତି । ଲୋକନେ—ଦେଖିବାରେ । ଆନନ—ମୁଖ । ଲକ୍ଷି—ତୁଳନା କରେ । ବର୍ଣ୍ଣାଶ୍ରୟ ସ୍ଫୁର୍ତ୍ତି—ବର୍ଣ୍ଣସାଦୃଶ୍ୟର ବିକାଶ । ସୁତମାଲେ—ସୁନ୍ଦର ତମାଳ ବୃକ୍ଷରେ ।

୮ । ସୁମନରଞ୍ଜନ—ପୁଷ୍ପଶୋଭିତ, ଉତ୍ତମ ଲୋକଙ୍କ ମନକୁ ରଞ୍ଜନ କରନ୍ତି ଯେ ଶ୍ରୀକୃଷ୍ଣ । ବସନ୍ତବାସ—ବସନ୍ତ କାଳର ଅବସ୍ଥିତି । ହଳଦିଆ ଲୁଗା ପିନ୍ଧିଥିବା ଶ୍ରୀକୃଷ୍ଣ । ଏକାନ୍ତ ହେବାକୁ—ରତିକ୍ରୀଡ଼ାକୁ । ଭାବରସେ—ମନ ଦିଏ । ଶ୍ୟାମଘନ—କଳାମେଘ ସ୍ୱରୂପ ଶ୍ରୀକୃଷ୍ଣ, କଳାମେଘ । ବିଦେହକୁ—ବିଶିଷ୍ଟ ଦେହକୁ ବା କନ୍ଦର୍ପକୁ । ଘନଘନ—ଅତି ବେଗରେ କମ୍ପାଉଛି ।

୯ । କୁନ୍ଦଲତା—ସଖୀ । କନ୍ଦରପର—କାମର । ଛନ୍ଦର—ଲୀଳା । ଭାବରମିତ—ଭାବକାନ୍ତିରେ । ଭବମିତ—ଉତ୍କୃଷ୍ଟ ମିତ୍ର ବା ପ୍ରିୟ ମିତ୍ର ଶ୍ରୀକୃଷ୍ଣ । ଭାବରମିତ—ଅନୁରାଗରେ ରମଣ । ଦଣେ ଦଣେ—ପ୍ରତି ଦଣ୍ଡରେ ଦେଖାଯାଏ । ଅନୁରାଗ—ସ୍ନେହ । କେତେ ଜାତି—କେତେ ପ୍ରକାର । ନାଟରଙ୍ଗ—ତମାସା ।

୧୦ । ଧୀର ସ୍ୱଭା—ଧୈର୍ଯ୍ୟବତୀ ଶ୍ରେଷ୍ଠା ଶ୍ରୀରାଧା । ଅନଅନୁଭବା—ପ୍ରେମରସ ଅନୁଭବୀ ନୁହେ । ତ୍ରପା—ଲଜ୍ଜା । ଶମା ଛବିକ—ବଜ୍ରକାନ୍ତି ବିଶିଷ୍ଟ ଶ୍ରୀରାଧାଙ୍କ ଦେହକୁ ବା ବଜ୍ରକାନ୍ତି ରାଧାଙ୍କୁ । ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ—ମହତ୍ତ୍ୱ ଓ ଗମ୍ଭୀରତା । ଉତ୍କଣ୍ଠରେ ଭଙ୍ଗି ଅତ୍ୟୁତ୍କଣ୍ଠିତା ହେଲେ । ଲବ—ମୂର୍ତ୍ତି ।

୧୧ । ନାଟ୍ୟଦେବୀଶ୍ରେଣୀ—ଅପ୍ସରା । ନାଟ୍ୟ ଦେଖିବାକାଙ୍କ୍ଷୀ ଦେବୀବୃନ୍ଦ । କିଶୋରୀମଣି—ରାଧା । ସୁସାର—ଅତ୍ୟୁତ୍କୃଷ୍ଟ । ଅଭିସାରବିଧି—ସଙ୍କେତ ସ୍ଥାନ ଗମନ

Digitized by srujanika@gmail.com

ବ୍ୟାପାର ସମ୍ଭାର ଅପାର ବାଧି ସମ୍ଭାର ସଂଘଣା କଲେ ପୁଣି ।
ଧଣୀ କରେ । ନେହବୃଦ୍ଧି ନୀଳାମ୍ବୁଜ ଦେଲେ ଖରେ । ୧୧ ।
ପ୍ରେମନିଧାନୀ ନାଗଶ୍ରବର । ନେତ୍ରବାର ହେଲା ଅନିବାର ।
ଓଷ୍ଠ ହୋଇ ମଳ ବଳେ ହେଲ ରୋମ ପୁଲକ ଭୂଲ କି ପ୍ରେମାଙ୍କୁର ।
ଅନୁରାଗ । ଦୋଳ ଇଚ୍ଛାରେ ଉତ୍ସାହୀ ବାହୁଯୁଗ । ୧୨ ।
ଜାଣି ମିଳଣୀ ସୁବେଣୀ ମତ । ଦଲେ ଅଭିସାର ଗଜଗାତ ।
ଘମ୍ବରେ ଲଳିତ ତାମ୍ବୂଳ ଭରି ପ୍ରସଙ୍ଗେ ଖଞ୍ଜିଲେ ।
ବାୟୁ ଭାଗେ । ଗନ୍ଧ ଘେନି ଶ୍ୟାମଳା ଖଞ୍ଜଣୀ ଯୋଗେ । ୧୩ ।
ଉତ୍ତରେ ଶ୍ରୀମତୀ ଧନ୍ୟାଶ୍ରିତ । ଶ୍ଯାମର ଗ୍ରହଣେ ବ୍ୟଗ୍ରହସ୍ତ ।
ନାନା ଭୂଷା ଧରି ଐଶାନ୍ୟେ ଶ୍ରୀହରି ପ୍ରିୟା ଅନୁସରି ଅନୁରକ୍ତ ।
ସୁବେଶିକା । ପୂର୍ବଭାଗେ ପରିହାସୀ ସଖୀ ଶିକା । ୧୪ ।
ପୃଷ୍ଠ ଘେନି ସୈରିବ୍ୟା ଅଗ୍ନି ଦଗେ । କଳା ଘେନି କଳା ପୃଷ୍ଠଭାଗେ ।
ଜଳଝରୀ ଧରି ପଛ ପଟେ ଆସି ରଙ୍ଗଦେବୀ ମୃଦୁବାଦ୍ୟ ବଳେ ।
ବାଳୁଣୀରେ । ସୂଚ ସଙ୍ଗ ଧନିଷ୍ଠା କ ମଧ୍ୟରେ । ୧୫ ।

---

ବ୍ୟାପାର । ସମ୍ଭାର—ସାମଗ୍ରୀ ବା ଉପକରଣ ବା ସମ୍ଭାର ସଂଘଣା—ଆଡ଼ମ୍ବର ଜନିତ । ନେହ ବୃଦ୍ଧି ପାଇଁ—ଶ୍ରୀକୃଷ୍ଣଙ୍କଠାରେ ଲାଳସା ଜନ୍ମିବା ନିମିତ୍ତ । ଧଣୀକରେ—ରାଧାଙ୍କ ହସ୍ତରେ । ନୀଳ ମ୍ବୁଜ—ନୀଳପଦ୍ମ ଦେଲେ । ଖରେ—ଶୀଘ୍ର ।

୧୨ । ପ୍ରେମନିଧାନୀ—ପ୍ରେମପାତ୍ରି, ପ୍ରେମସ୍ଥଳୀ । ନାଗଶ୍ରବର—ନାଗଶ୍ରେଷ୍ଠା ରାଧା । ନେତ୍ରବାର—ଚକ୍ଷୁରୁ ଅଶ୍ରୁପାତ । ଅନିବାର—ଅନିବାର୍ଯ୍ୟ, ବିଶେଷ ରୂପରେ ହେଲା । ପୁଲକ—ରୋମ ଟାଙ୍କୁରିବା । ଭୂଲ—ଧର୍ମ । ପ୍ରେମାଙ୍କୁର—ସ୍ନେହ ଗଜା । ଅନୁରାଗ—ପ୍ରେମ । ଉତ୍ସାହୀ—ଉଦ୍ଯୋଗୀ । ବାହୁଯୁଗ—ଦୁଇ ବାହୁ ।

୧୩ । ସୁବେଣୀ—ଉତ୍ତମ ବେଣୀଧାରିଣୀ ଶ୍ରୀରାଧାଙ୍କ । ମତ—ମନ । ଅଭିସାର ଗଜଗାତ—ସଙ୍କେତସ୍ଥାନ ଗମନରେ ଗଜଯୋଗ୍ୟ ଉପଗ୍ରହ । ତାମ୍ବୂଳ—ପାନ । ଲଳିତପ୍ରସଙ୍ଗେ—ବିଳାସ କାର୍ଯ୍ୟରେ, ମଧୁର ଭାବରେ । ବାୟୁଭାଗେ—ବାୟବ୍ୟ କୋଣରେ । ଗନ୍ଧ—ସୁବାସ ବା ଚନ୍ଦନ । ଖଞ୍ଜଣୀ—ସେବା ନିଯୋଗ ।

୧୪ । ଶ୍ରୀମତୀ—ରାଧା । ଧନ୍ୟାଶ୍ରିତ—ଧନ୍ୟା ସଖୀସହିତ ହୋଇ । ବ୍ୟଗ୍ରହସ୍ତ—ଚଞ୍ଚଳ ହାତ । ଐଶାନ୍ୟେ—ଉତ୍ତର ପୂର୍ବ ଦିଗରେ । ହରିପ୍ରିୟା—ସଖୀ । ଅନୁରକ୍ତ—ଆସକ୍ତ, ଅନୁଗତ । ସୁବେଶିକା—ସୁପଣ୍ଡିତା ।

୧୫ । ସୈରିବ୍ୟା—ସୈରିବ୍ୟାସଖୀ । ଅଗ୍ନି ଦିଗେ—ଦକ୍ଷିଣ ପୂର୍ବ କୋଣରେ । କଳାବତୀ—ସଖୀ । କଳା—କଜ୍ଜଳ । ପୃଷ୍ଠଭାଗେ—ପଛଆଡ଼େ । ରଙ୍ଗେ—

Digitized by srujanika@gmail.com

ଚନ୍ଦ୍ରା ରବା ଧରି ପ୍ରଖର । ଶଶିରେଖାରେ ମୁରଜସାର ।
ବୀଣାବାଦକୀ ପ୍ରବୀଣା ଭୃଙ୍ଗବିଦ୍ୟା ଧୂକଣ୍ଠୀ ଗାୟନ କି ମଧୁର ।
ଲୀଳାବତୀ । ମଞ୍ଜୁ ମଞ୍ଜିର ବାଦନ କରୁଛନ୍ତି । ୧୬ ।

ଡମ୍ବୁର ତାଳ ତାଳୀ ଖଞ୍ଜରୀ ଜଳତରଙ୍ଗ ମୋଚଙ୍ଗ ଧରି ।
ବିମଳା ପରିମଳା ସ୍ୱର୍ଣ୍ଣକୁନ୍ତଳା ମଦକଳା ମଦାଳସୀ ଶିରୀ ।
ବାଜୁଛନ୍ତି । ରାଗ ଅନୁରାଗ ବଢ଼ି ଗାଉଛନ୍ତି । ୧୭ ।

ମେଧା ସୁମେଧା ସୁନୃତ୍ୟକାରୀ । ନାଚୁଛନ୍ତି ଅଭିନୟ କରି ।
ପ୍ରେମମଞ୍ଜରୀ କରେ ସାରୀପଞ୍ଜରୀ କାଞ୍ଚନଲତା ଦର୍ପଣ ଧରି ।
ଧୂପଝାଟି । ଶତା ବିଶତା ଶଙ୍ଖ ଆମୋଦ ଉଠି । ୧୮ ।

କସ୍ତୁରୀ ପାଏଡ଼ା ସଜାଡ଼ିଲେ । ଛେଦ ପସ୍ୱେଦ ମାଳତୀ କଲେ ।
କର୍ପୂର ଚନ୍ଦନ ସୁମନ ସେବନ ସୁରସମଞ୍ଜରୀ ଆଚରିଲେ ।
ଛନ୍ଦାଭଣି । ଶିଖ୍ୟା କ୍ରିୟା ସେନ ଘଟିଛନ୍ତି ପୁଣି । ୧୯ ।

୧୭-୫—ରାଗ ଅନୁରାଗବନ୍ତି ଓ ଅନୁରାଗବନ୍ତୀ—ଛ;
୧୮-୨—ଗାଉଛନ୍ତି ଅଭିନୟ କରି କ, ଖ, ବାଜୁଛନ୍ତି ଜ; ୨୦-୧—
ବୃନ୍ଦାଙ୍କ କରେ କ, ଖ, ଘ, ଙ, ଠ । ୨୨-୨—ଦେଖ ପରବେଶ ।
କ, ଖ, ଘ ଙ, ଠ ।

---

କୌତୁକରେ । ପଟୋଥାସ—ପଛରେ ରହିଥିବା । ବାରୁଣୀରେ—ପଶ୍ଚିମଦିଗରେ । ଧନିଷ୍ଠା—ସଖୀ ବିଶେଷ ।

୧୬ । ଚନ୍ଦ୍ରା— ସଖୀ । ରବା—ବାଦ୍ୟଯନ୍ତ୍ର ବିଶେଷ (ରବାବ୍) ପ୍ରଖର—ଶୀଘ୍ର । ମୁରଜ—ମୃଦଙ୍ଗ । ବୀଣାବାଦକୀ—ବୀଣାବାଦ୍ୟକାରିଣୀ । ପ୍ରବୀଣା—ନିପୁଣା । ଭୃଙ୍ଗବିଦ୍ୟା—ସଖୀବିଶେଷ । ଧୂକଣ୍ଠୀ—ସଖୀ । ଲୀଳାବତୀ—ସଖୀ । ମଞ୍ଜୁ—ସୁନ୍ଦର ଭାବରେ । ମଞ୍ଜିର—ମନ୍ଦିର ।

୧୭ । ଡମ୍ବୁର—ଡମ୍ବୁରୁ । ତାଳତାଳୀ—ଝାଞ୍ଜ ଓ କୁରୁଡ଼ । ଖଞ୍ଜରୀ—ଖଞ୍ଜଣି । ଜଳତରଙ୍ଗ ଓ ମୋଚଙ୍ଗ—ଉଭୟ ବାଦ୍ୟବିଶେଷ । ବାଜୁଛନ୍ତି—ବଜାଉଅଛନ୍ତି । ରାଗ – ସ୍ୱର । ଅନୁରାଗ—ପ୍ରେମ ।

୧୯ । କସ୍ତୁରୀ—ସଖୀ । ପାଏଡ଼ା—ଲୁଗାପଟା । ଛେଦ ପସ୍ୱେଦ—ଚନ୍ଦନବିନ୍ଦୁ ଛିଟା ପକାଇବା । ସୁମନ ସେବନ—ପୁଷ୍ପଲଗି ।

Digitized by srujanika@gmail.com

କରପଲ୍ଲବ ବୃନ୍ଦାଙ୍କ ପରେ । ବାମକର କୁନ୍ଦଲତା ଧରେ ।
ଅନଙ୍ଗମଞ୍ଜରୀ ଫୁଲଲଙ୍କା ଧରି ଚମ୍ପାଲତା ପୁଷ୍ପବୃଷ୍ଟି କରେ ।
ବନଦେବୀ । ଅନ୍ୟ ସାମଗ୍ରୀ ଘେନି ଅଛନ୍ତି ସେବି । ୨୦ ।
ଜୟ ଜୟ ବୃନ୍ଦାବନେଶ୍ୱରୀ । ଜୟ କୃଷ୍ଣମନାକର୍ଷକାରୀ ।
ଜୟ ଶ୍ରୀରାଧିକେ ଜୟ ଗାନ୍ଧର୍ବିକେ ମଣିମା ବୋଲେ ରୂପମଞ୍ଜରୀ ।
ଗଲାକାଳେ । ରଙ୍ଗେ ପ୍ରସଙ୍ଗେ ପଦାଙ୍କ ମଣାଇଲେ । ୨୧ ।
ଏ କାଳେ ଶ୍ରୀକୃଷ୍ଣ ଅଙ୍ଗବାସ । ବାତ ଯୋଗେ ହେଲା ପରକାଶ ।
ପ୍ରମତ୍ତ ଭ୍ରମରୀ ପରାୟେ କିଶୋରୀମଣି ହେଲେ ଘ୍ରାଣେ ବୃଦ୍ଧିଆଶ ।
ପ୍ରଭରଙ୍ଗେ । କୃଷ୍ଣଦର୍ଶନେ ଗୃହାନ୍ତ ଉଦବେଗେ । ୨୨ ।
ମନ୍ଦାରଅଧର ଚଳିବାରେ । ମିତ ଇଙ୍ଗିତ ଉଦ୍ଧିକ କରେ ।
ଘନରସବୃଷ୍ଟି-ସୂଚକ ବାମୋଷ୍ଠି ଦେଖି ଦେଖି କମ୍ପ ହେଲା ଖରେ ।
ପୟୋଧର । ବୃନ୍ଦ ଅମ୍ବରାଚ୍ଛନେ କି ମନୋହର । ୨୩ ।
କ୍ଷଣେ ଧନୀ ମନ୍ଦଗତି କଲେ । ଅଧିକ ହୋଇଲା ମିତ ବୋଲେ ।
ଗୁରୁ ମୋଡ଼ ନାକେ ଚଳିଲେ ଅଧିକେ, ଧନୀ ଲଜ୍ଜିତ ବଢାଇବାକେ ।
ଅଳୀ ଭ୍ରମେ । ଅତ ସନ୍ଦେହ ବଢ଼ିଲା ନାହିଁ ଲେଶେ । ୨୪ ।

୨୪-ଙ—ଧନୀ ଲଜ୍ଜିତ, ପାଠ ମଧ୍ୟ ସମୀଚୀନ, କ, ଖ, ଗ, ଚ, ଜ ।

---

୨୦ । କରପଲ୍ଲବ—ହାତପାପୁଲି । ଫୁଲଲଙ୍କା—ଫୁଲଡାଲା । ୨୧ । କୃଷ୍ଣମନାକର୍ଷକାରୀ—ଶ୍ରୀକୃଷ୍ଣଙ୍କ ମନ ଆକର୍ଷଣକାରିଣୀ । ଗଲାକାଳେ—ଯିବ ବେଳେ । ରଙ୍ଗେ—କୌତୁକରେ । ପ୍ରସଙ୍ଗେ—ବନ୍ଧୁକ୍ରମରେ । ପଦାଙ୍କ ମଣାଇଲେ—ପାଦ ଲଗାଇ ନେଲେ ।

୨୨ । ଅଙ୍ଗବାସ—ଦେହର ସୁବାସ । ବାତ—ପବନ । ପ୍ରମତ୍ତଭ୍ରମରୀ—ମତ୍ତଅଳି ଭ୍ରମର ସ୍ତ୍ରୀ । ଘ୍ରାଣେ—ଶୁଙ୍ଘିବାରେ । ବୃଦ୍ଧିଆଶ—ଆଶା ବଢ଼ାଇଲେ ।

୨୩ । ମନ୍ଦାର ଅଧର ଚଳିବାରେ—ମନ୍ଦାରଫୁଲପରି ଓଷ୍ଠ ହଲିବାରେ । ମିତ—କୌଣସି ସଖୀ । ଇଙ୍ଗିତ—ପରିହାସ । ମନ—ଶନ । ଖର—ମଙ୍ଗଳ ଚଳିବାରେ । ଘନରସ ବୃଷ୍ଟି—ମେଘଜଳ ବର୍ଷା ଓ ଶୃଙ୍ଗାରରସ ବୃଷ୍ଟି ସୂଚକରୁ; ହେ ବାମୋଷ୍ଠି—ବାମାଧର ଶ୍ରୀଧେ ଦେଖିଦେଖି, ଖରେ—ଶୀଘ୍ର । ପୟୋଧର—ମେଘ ଓ ସ୍ତନ; ଅମ୍ବରାଚ୍ଛନ୍ନେ—ଆକାଶାଚ୍ଛାଦନେ ଓ ଲୁଗା ଘୋଡ଼ାଇବାରେ କି ସୁନ୍ଦର ବୃନ୍ଦ ।

୨୪ । ଧନୀ—ଶ୍ରୀରାଧା । ମନ୍ଦଗତି କଲେ—ଅଳ୍ପେ ଯତ୍ନେ ଚାଲିଲେ । ଅଧିକ—ବେଣୀ । ଗୁରୁମୋଡ଼—ଅଣ୍ଟା ଓ ଜଘନ । ମୋଡ଼—ମୁଣ୍ଡା (ବୃହତ୍ ହେବାର

Digitized by srujanika@gmail.com

ରାଧା ରୂପା ଅଙ୍ଗକାନ୍ତି ଦେଖି । ଭଙ୍ଗୀଭାଷା ବୋଲେ ଲଳିତା ସଖୀ ।
ଘନଶ୍ୟାମ ଅଙ୍ଗେ ଚଞ୍ଚଳା ଚମକି ଦେଖିଲେ ହୋଇବା ସିନା ସୁଖୀ ।
ରସାମୃତ । ଦାନେ ଦର୍ପକର ତାପ ହେବ ହତ । ୨୫ ।
ସେ ବୋଲେ ରସ ପ୍ରବଳଭାବ । ସୁମନାବାସ ତ ନ ରହିବ ।
ସେ ବୋଇଲେ ଭାଷ ମଧୁପର ତୋଷ ଏମନ୍ତ ହେଲେ କି ନ ହୋଇବ ।
ରାଧା ଖରେ । ଧରେ ପୁଲକ କଦମ୍ବ ସୁମନରେ । ୨୬ ।
ଝୁଣ୍ଟ ଜୋଡ଼ିବା ଶାଢ଼ୀ ଦେଖି । ପରିହାସ କଲ ଲଳିତା ସଖୀ ।
ଘନରସ ବୃଦ୍ଧି ଆଗମେ ସୁମୁଖୀ ବାଲିବନ୍ଧ କି ହୋଇବ ରଖି ।
କେତେ ବୋଲେ । କାନ୍ତ ସୁରତରଙ୍ଗିଣୀ କି ନୋହିଲେ । ୨୭ ।
ସେ ବୋଲେ ଏ ବିପରୀତ ଶୈନ । ଅମ୍ବରେ ତ ପୟୋଧରାଚ୍ଛନ୍ନ ।
ଲଟପାଟ ଜାତ ଦେଖ ତ କହୁତ କି ଦଣ୍ଡ ପଡ଼ିବ ଅଜ ଧନ ।
କେତେ କହୁ । ତେଣୁ ଚକ୍ଷୁ-ଖଞ୍ଜନପରସ୍ପେ ସେହୁ । ୨୮ ।

୨୫-୩—ପ୍ରସଙ୍ଗ ଚମଲା ୫;

---

ମୁକ୍ତା) । ନାକେ ଚନ୍ଦ୍ରକେ—ନାସିକାରେ ଓ ଆକାଶରେ । ଦକାରବଳେ—ବାମବଳରେ । ଆଳୀ—ସଖୀ ।

୨୫ । ରୂପା—ଲଜ୍ଜାରେ; ଅଙ୍ଗକମ୍ପା—ଦେହ ଥରିବା । ଭଙ୍ଗୀଭାଷା—ମନ୍ଦହାସ କଥା । ଘନଶ୍ୟାମ ଅଙ୍ଗେ—ମେଘର କଳା ଦେହରେ ଓ ଶ୍ରୀକୃଷ୍ଣଙ୍କ ଦେହରେ । ଚଞ୍ଚଳା ଚମକେ—ବିଜୁଳି ଚମକିବା, ରାଧାଙ୍କ ଶୋଭା ପାଇବା । ରସା-ମୃତ—ଜଳରୂପକ ଓ ଶୃଙ୍ଗାରରସରୂପକ ଅମୃତ ଦାନଦ୍ୱାରା । ଦର୍ପକର ତାପ—ସୂର୍ଯ୍ୟ କିରଣ ତାପ ଓ କନ୍ଦର୍ପର ପୀଡ଼ା ।

୨୬ । ରସ ପ୍ରବଳ ଭାବ—ଜଳର ଅଧିକ ଭାବ ଓ ଶୃଙ୍ଗାର ରସ ପ୍ରାବଲ୍ୟ । ସୁମନାବାସ—ଫୁଲର ବାସନା ଓ ଶ୍ରୀରାଧାର ବସ୍ତ୍ର । ଭାଷ—ବଚନ । ମଧୁପର ତୋଷ—ଭ୍ରମରର ସନ୍ତୋଷ ଓ ଶ୍ରୀକୃଷ୍ଣଙ୍କ ସନ୍ତୋଷ । ଖରେ—ବେଗରେ । ପୁଲକ କଦମ୍ବ ସୁମନରେ—କଦମ୍ବ ଫୁଲ ପରି ରୋମାଞ୍ଚ ।

୨୭ । ଘନରସ ବୃଦ୍ଧି ଆଗମେ—ଜଳ ବଢ଼ି ଆସିଲେ ଓ ନିବିଡ଼ ଶୃଙ୍ଗାର ରସ ବଢ଼ି ଆସିଲେ । ସୁମୁଖୀ—ଶ୍ରୀରାଧା; ବାଲିବନ୍ଧ ପରି ନୀବୀ ବନ୍ଧନରେ । କାନ୍ତ—କାମନାଯୁକ୍ତ ଓ ପତିର । ସୁରତରଙ୍ଗିଣୀ—ଗଙ୍ଗା ଓ ରତି କୁତୂହଳୀ ।

୨୮ । ବିପରୀତ—ଓଲଟା କଥା । ଅମ୍ବରେ—ବସ୍ତ୍ରରୂପକ ଆକାଶଦ୍ୱାରା । ପୟୋଧରାଚ୍ଛନ୍ନ—ସ୍ତନରୂପକ ମେଘ ଘୋଡ଼ା ହୋଇଅଛି । ଚକ୍ଷୁ ଖଞ୍ଜନ—ଚଞ୍ଚଳ ଆଖି ଖେଳାଇବା ।

Digitized by srujanika@gmail.com

ଯେ ବୋଇଲ ନଖାପୁଂଧେ ହରି । ହିରଣ୍ୟତନୁକୁ ଦେବେ ଶରି ।
ତ ବ୍ଲେଷ ହେବ ଅଙ୍ଗଦେଶ ଜରଜେ ଗୈକ ଜୁର ହେବ ଅଗଡର ।
କୁନ୍ତଳରେ । ନ ବହିବ ତ ସୁମନ ଉତ୍କଳରେ । ୨୯ ।
ମାଳବରେ ଛିନ୍ନଭିନ୍ନ ହେବେ । ବେଗ ହୋଇ ସେ ଯେ ପଳାଇବେ ।
କାଞ୍ଚୀଦେଶରେ ତ ଶବଦ ବହିବ କେବଳ ଜୁଲ୍ଲା ବନ୍ଧ ଥିବେ ।
ପରସ୍ପରେ । ବଳାବଳିକି ବହିବେ ଶ୍ରୀପଦରେ । ୩୦ ।
ରାଧା ତନୁବାସ ପାଇ ହରି । ମାଦଳୀ ଭ୍ରମକୁ ଥିଲେ ଧରି ।
ଏକାଳେ ଶୁଣି ବଳାତ କଙ୍କିଣୀ ସଞ୍ଚିମୃଗପରି କର୍ଣ୍ଣ ଡେରି ।
ତଲେ ଗତି । ମିତ ବାରିତ ବାରି ତ ଦେଲ ପ୍ରୀତି । ୩୧ ।
କଶୋସ୍ୱୟୂଥକୁ ହରି ଦେଖି । କନକବଲ୍ଲିସ୍ୱପନ ଲେଖି ।
ତଥି ମଧ୍ୟେ ଜେଲି ଅପୂର୍ବ ବିଜୁଳି ଘନକାନ୍ତରେ ମିଶିବ ଲକ୍ଷି ।
ବାହୁପୂର । ବୋଲ ବର୍ଣ୍ଣି ସଜ ହୋଏ ବେଗ ବେଗ । ୩୨ ।

---

୨୯ । ନଖାପୁଂଧେ—ନଖରୂପକ ହତିଆରରେ । ହରି—ନରସିଂହ ଓ ଶ୍ରୀକୃଷ୍ଣ । ହିରଣ୍ୟ ତନୁକୁ—ହିରଣ୍ୟ କଶିପୁ ଦେହକୁ ଓ ସୁନାପରି ଶ୍ରୀଅଙ୍ଗକୁ । ଅଙ୍ଗଦେଶ —ଦେଶ ବିଶେଷ ଓ ଶ୍ରୀଅଙ୍ଗରୂପକ ପ୍ରଦେଶ । ଜରଜେ—ବୈଶ୍ୟଙ୍କୁ ଓ ସ୍ତନରେ । ଗୈକ—ଦେଶବିଶେଷ ଓ ବସ୍ତ୍ର । ଜୁର—ନଷ୍ଟ । କୁନ୍ତଳରେ—ଦେଶବିଶେଷରେ ଓ କେଶରେ । ସୁମନ—ପ୍ରସନ୍ନ ମନ ଓ ଫୁଲ । ଉତ୍କଳରେ—ଉତ୍କଳରେ ।

୩୦ । ମାଳବରେ—ଦେଶବିଶେଷରେ, ମାଳାଶ୍ରେଷ୍ଠରେ । ଛିନ୍ନଭିନ୍ନ—ଛତ୍ରଭଙ୍ଗ; ଖଣ୍ଡ ଗୋଟି ଗୋଟି ହୋଇ ପଡ଼ିବ । ସେ ଯେ—ସେ ସବୁ, ସେସବୁ । ପଳାଇବେ—ଶଯ୍ୟାରୁ ପଡ଼ି ତଳେ ପଡ଼ିବେ । କାଞ୍ଚୀ ଦେଶରେ—କାଞ୍ଚୀ ନାମକ ପ୍ରଦେଶରେ ଓ କଟିସୂତ୍ର ସ୍ଥାନରେ । ଶବଦ —ଧ୍ୱନି । କେବଳ ବନ୍ଧ—ସ୍ୱଭାଶା ବା ଶିବିର ଓ ବଳୟ ଅର୍ଥାତ୍ ହସ୍ତାବରଣ । ବଳାବଳି ତ—ବଳାବଳି କଥ ଓ ବଳା ଅର୍ଥାତ୍ ପାଦାଳଙ୍କାର ବଳକ ବଳ । ଶ୍ରୀପଦରେ—ଦେଶବିଶେଷରେ (ଶ୍ରୀନଗର ?) ଓ ଶ୍ରୀଯୁକ୍ତ ପାଦରେ ।

୩୧ । ତନୁବାସ—ଶ୍ରୀଅଙ୍ଗ ବାସନା । ମାଦଳୀ ଭ୍ରମକୁ—ବାତୁଳ ଭ୍ରମକୁ । ମିତ ବାରିତ—ମିତର ନିବାରଣ । ପ୍ରୀତି ବାରିତ ଦେଲ—ପ୍ରୀତି ନିଷେଧ କଲ ଅର୍ଥାତ୍ ଶୀଘ୍ର ଗତି କଲେ ।

୩୨ । କଶୋସ୍ୱ ଯୂଥକୁ—ନବଯୌବନା ମେଳକୁ । କନକବଲ୍ଲିସ୍ୱପନ—ସୁନା ଲତାସ୍ୱପ୍ନ । ଲେଖି—ଧରି । ବିଜୁଳି—ବିଜୁଳି, ବିଜୁଳି କଣ୍ଠିର ରାଧା । ଘନକାନ୍ତରେ—ମେଘ ଶୋଭାରେ ଓ ମେଘପରି ଶୋଭାବନ୍ତ ଶ୍ରୀକୃଷ୍ଣଙ୍କଠାରେ ।

Digitized by srujanika@gmail.com

ପୁଣି ବିଗ୍ରହରେ ଯୂଥ ଯୂଥ । ଅପୂର୍ବ କି ଏ କନକ ରଥ ।
ମଧ୍ୟେ ରତି ବିକେ ହଜାପତି ଖୋଜେ ଏବେ ମନମଥ ହେବ ସାର୍ଥ ।
ଛବି ପ୍ରୀତି । ବରାଙ୍ଗନା ଯୂଥେ ଖେଳେ ଧରି ମୂର୍ତ୍ତି । ୩୩ ।
ଲାବଣ୍ୟ ଲହରୀ ଭରେ ଗତି । ଅହ୍ଲାଦ କି ବିଶେଷ ତ ମୂର୍ତ୍ତି ।
ଯେଉଁ ମୁକତିକି ଋଦ୍ଧି ସିଦ୍ଧି ଏ କି ମୋ କତିକି ଧରି ଯଣ୍ଟିଛନ୍ତି ।
ହେବି ଧନ୍ୟ । ଅସି ଦଶିବି କି ଜନ୍ମାନ୍ତର ପୁଣ୍ୟ । ୩୪ ।
ଶ୍ୟାମ ବିଲୋକନେ ରସବତୀ । ମଣିଲେ ଏ କି ଶୃଙ୍ଗାରମୂର୍ତ୍ତି ?
ଅମୃତସନ୍ଦୋହ ଆନନ୍ଦବିଗ୍ରହ କଲ୍ପ କି ନୂତନ ପ୍ରଜାପତି ।
ଗୁହପୋଷେ । ରସ ବରଷିଲ ପରି ଦଶିଅସେ । ୩୫ ।
ପ୍ରେମତନୁସୂତା ଛନ୍ନମନେ । ଜ୍ଞପ ହୋଇଥିଲେ ବେନିଜନେ ।
ମିଥ୍ୟା ସତ୍ୟ ମଣି ଥିବାରୁ ସେ ପୁଣି ସତ୍ୟ ମିଥ୍ୟା ଅଭ୍ରସିଲ ମନେ ।
ଆଲିଙ୍ଗନ । ଭରିବାର ବାରଲି ତ ଲଜ୍ଜାମାନ । ୩୬ ।

୩୪-୩—ଯେଉଁ ମୁକତିକି କ, ଖ, ଝ, ଠ; ଧରି ଅସୁଛନ୍ତି ଛ, ଝ ବ୍ୟତୀତ ସମସ୍ତ ପୋଥିରେ ।

୩୩ । ଯୂଥ ଯୂଥ—ଦଳ ଦଳ । କନକରଥ—ସୁନାରଥ । ରତି—କନ୍ଦର୍ପ ସ୍ତ୍ରୀ । ହଜାପତି—ହଜିଥିବା, ନଷ୍ଟ ହୋଇଥିବା ପ୍ରିୟ କନ୍ଦର୍ପଙ୍କୁ । ମନମଥ—କନ୍ଦର୍ପ । ସାର୍ଥ—ସଫଳ ବା କୃତକୃତ୍ୟ । ବରାଙ୍ଗନା ଯୂଥେ—ଉତ୍ତମ ସ୍ତ୍ରୀ ଦଳରେ । ମୂର୍ତ୍ତି—ଦେହ ।

୩୪ । ଲାବଣ୍ୟଲହରୀ—ସୌନ୍ଦର୍ଯ୍ୟ ଶୋଭାର ତେଜ । ଗତି—ଗମନ । ଅହ୍ଲାଦ—ପୁଲକଯୁକ୍ତ ଆନନ୍ଦ । ବିଶେଷତ ମୂର୍ତ୍ତି—ଦେହ ବିଶିଷ୍ଟ । ଋଦ୍ଧି—ଅଷ୍ଟ ବା ନବନିଧି ଓ ସିଦ୍ଧି - ଅଣିମା, ଲଘିମାଦି ଅଷ୍ଟ ସିଦ୍ଧି । ମୁକ୍ତି—ସାଲୋକ୍ୟ, ସାରୂପ୍ୟ, ସାଯୁଜ୍ୟ, ସାମୀପ୍ୟ ଓ ସାର୍ଷ୍ଟିରୂପକ ମୁକ୍ତି ବେଢ଼ି । ଜନ୍ମାନ୍ତର—ଅନ୍ୟ ଜନ୍ମର ।

୩୫ । ଶ୍ୟାମ ବିଲୋକନେ—ଶ୍ରୀକୃଷ୍ଣଙ୍କୁ ଦେଖି । ରସବତୀ—ନାୟିକା ରାଧା । ଶୃଙ୍ଗାର ମୂର୍ତ୍ତି—ଶୃଙ୍ଗାର ରସ ଦେହଧାରୀ । ଅମୃତ ସନ୍ଦୋହ—ଅମୃତରାଶି ବା ଜଳରାଶି । ଆନନ୍ଦବିଗ୍ରହ—ଆନନ୍ଦମୟ ଦେହ ବା ଆନନ୍ଦପ୍ରଦ ଦେହ । ନୂତନ ପ୍ରଜାପତି—ନୂଆ ବିଧାତା ( ଅମୃତ ଓ ଆନନ୍ଦମୟ ମୂର୍ତ୍ତି—କୃଷ୍ଣ ) ବା ବ୍ରହ୍ମା ନୂତନ ମୂର୍ତ୍ତି କଲ୍ପ କି ? ରସ—ଜଳ ଶୃଙ୍ଗାର ରସ ।

୩୬ । ପ୍ରେମ ତନୁସୂତାଛନ୍ନ ମନେ ପ୍ରେମରେ ତନ୍ମୟ ହେବାରୁ ଉଦ୍‌ବିଗ୍ନ ମନରେ । ରାଧା ଓ କୃଷ୍ଣ ବେନି ଜନେ । ଅଭ୍ରସିଲ—ଜଣାଗଲା । ଲଜ୍ଜା ମାନ—ଲାଜ ଓ ଅଭିମାନ ।

Digitized by srujanika@gmail.com

ବେନି କାନ୍ତିପଣ୍ଡ ମିଶିବାର । ତ ବର୍ଣ୍ଣିପାରିବ କବି ଛାର ।
କି ଘନ ବିଜୁଳି ଅବାର ଗୃହଣୀ ଦିବସ ରଜନୀ ପରସ୍ପର ।
ମିଶାମିଶି । ବନଭୂଇଁ ପୀତ ଶ୍ୟାମ ଗଲ୍ଲ ଦିଶି । ୩୭ ।

କି ଲୁଟ ହୋଏ ଥନଦହାଟ । କି ମଧ୍ୟେ ପିଠିଛୁ ମୂର୍ତ୍ତିବାଟ ।
ହେମ ମରକତ ଦର୍ପଣ ଯେମନ୍ତ ପରସ୍ପରେ ପ୍ରତିବିମ୍ବ ସ୍ଫୁଟ ।
ଉମା ହର । ମୂର୍ତ୍ତି-ସ୍ଫୁର୍ତ୍ତି କରିଲେ ଦୁହିଁଙ୍କର । ୩୮ ।

ନୟନଖଞ୍ଜନ ଖେଳାଗଲେ । ସୁଷମାପାଶରେ ବନ୍ଦୀ ହେଲେ ।
ପଳେଲେ ଯହିଁରେ ବୁଡ଼ିଲେ ତହିଁରେ ମୀନ ପତନ କି ସିନ୍ଧୁଜଳେ ।
ସନ୍ଧ ସନ୍ଧି । ପୁଣି ଶର ମରମକୁ ବାନ୍ଧାବାନ୍ଧି । ୩୯ ।

ଶ୍ରୀମୁଖ ଚନ୍ଦ୍ରମା ଭ୍ରମ ହେଲା । ଚକୋରଲକ୍ଷଣ ପାଇଗଲା ।
ଅମୃତପାନରେ ଉଲ୍ଲାସମନରେ ସନ୍ତୋଷ କେବେହେଁ ନ ଭଜିଲା ।
ଓଷ୍ଠ ରବି । ମୁଦାମୁଦ କି କୁମୁଦ କଞ୍ଜ ଛବି । ୪୦ ।

---

୩୭ । କାନ୍ତିପୁଞ୍ଜ—ଲାବଣ୍ୟ ପୁଞ୍ଜ । ଘନ—ମେଘ । ଜ୍ୟୋତ୍ସ୍ନା—ଚନ୍ଦ୍ରକିରଣ । ଦିବସ ରଜନୀ—ଦିନରାତି । ବନଭୂଇଁ—ବନଭୂମି । ପୀତ—ଶ୍ୟାମ —ହଳଦିଆ କଳା ।

୩୮ । ହେମ—ସୁନା । ମରକତ—ନୀଳମଣି । ସ୍ଫୁଟ—ବ୍ୟକ୍ତ । ଉମାହର —ପାର୍ବତୀ ଶିବ । ସ୍ଫୁର୍ତ୍ତି—ପ୍ରକାଶ ।

୩୯ । ନୟନ ଖଞ୍ଜନ—ଦୁହିଁଙ୍କ ଆଖିରୂପ କଜ୍ଜଳପାଖୀ ଖେଳିଲେ । ସୁଷମା ପାଶରେ—ଉଭୟଙ୍କ ପରମ ଶୋଭା ରୂପ ଫାଶରେ । ବନ୍ଦୀ ହେଲେ—ଲାଖି ହୋଇ ରହିଲେ । ମୀନ—ମାଛ । ପତନ—ପଡ଼ିବା । ସିନ୍ଧୁଜଳେ—ସମୁଦ୍ରପାଣିରେ । ସନ୍ଧାସନ୍ଧି—ଯୋଖାଯୋଖି ।

୪୦ । ଶ୍ରୀ ମୁଖରେ ଚନ୍ଦ୍ରମା ଭ୍ରମ । ଚକ୍ଷୁ ଚକୋର ଲକ୍ଷଣେ—ଚକୋର ସ୍ୱରୂପକୁ ଅମୃତ ପାନରେ—ଚକୋର ଚନ୍ଦ୍ରକିରଣ ପାନ କରେ, ଏଠାରେ ମୁଖର ଶୋଭା ପାନ କଲା ଚକ୍ଷୁ । ଉଲ୍ଲାସମନରେ—ଆନନ୍ଦ ମନରେ । ଓଷ୍ଠ ହେଲା ସୂର୍ଯ୍ୟ । ମୁଦାମୁଦ—ଆନନ୍ଦ ଓ ନିରାନନ୍ଦ । କୁମୁଦ—କଇଁ । କଞ୍ଜ—ପଦ୍ମ । ଓଷ୍ଠରୂପ ସୂର୍ଯ୍ୟକୁ ଦେଖି କୁମୁଦ ରୂପ ହାସ । ଅମୁଦ ( ନିରାନନ୍ଦ, ଅଦୃଶ୍ୟ ) ମୁଖରୂପ ପଦ୍ମ ( ମୁଦ—ଆନନ୍ଦ, ଦୃଶ୍ୟ ) ଅସ୍ପଷ୍ଟ ଭାବ ପ୍ରାପ୍ତ ହେଲେ ।

Digitized by srujanika@gmail.com

ଭୁଲି ଭୁଲି ଯିବା ଶୋଭା ରନ୍ଧି । ସାରଣୀ ଉପମା ଦେବା ବେଦ୍ଧ ।
ଶ୍ୟେନ କି ନୟନ ପିଙ୍ଗିବାରେ ମନ-ପକ୍ଷୀଙ୍କ ଉଚ୍ଛନ୍ନ କଲେ ଚହ୍ନି ।
ସେ ନଷ୍ଟରେ । ତନ ମନ ଧନ ଦାନ ଦେଲେ ଖରେ । ୪୧ ।
ଉତ୍ସାହ ସିନ୍ଧୁ ଉଚ୍ଛୁଳି ଗଲା । ଧୀର ଧୈର୍ଯ୍ୟସୃଷ୍ଟି ବୁଡ଼ାଇଲା ।
ବୋଇଲେ ବଚନ କାମଦେବାର୍ଚ୍ଚନ ଦେବତା ବିଜୟ ଦେଖାଇଲା ।
ମିଛ କହ । ଏ କି ସେ ତମାଳତରୁ ଯହିଁ ମୋହ । ୪୨ ।
ମିତ କହେ ଏହି ଶ୍ୟାମଘନ । ତୋ ଚିତ୍ତଚାତକ ତୋଷସ୍ଥାନ ।
କଳା ଅଭିଳାଷୀ କଳାପଦ୍ମାବେଣୀ ନୀଳାମ୍ବରେ ବସିଥାଏ ମନ ।
ଯାହାପାଇଁ । ଦେଖ ଏହିଟି ଦେଖ ସୁରସଦାୟୀ । ୪୩ ।
ବରଣ କରି ଶରଣ ପଣ । ଭଜି ଅଙ୍ଗୁଁ ଉପଶମକ୍ଲେଶ ।
ଏତେ କହୁ ମିତ ଦିବ୍ୟପାରିଜାତ-ମାଳା କରେ ଦେଲେ ହୋଇ ତୋଷ ।
ରାଧାମନେ । ବଳାବଳି ଲଭ ସ୍ନେହ ଅନୁଅନେ । ୪୪ ।

---

୪୧ । ସାରଣୀ—ପିଲାଙ୍କ ଖେଳନା, ନୃତ୍ୟରେ ଯାହାକୁ ନଚାନ୍ତି । ଦେବା ବେଦ୍ଧ—ଉପନ୍ଥ ଦେବା ଅର୍ଥାତ୍ ଅନୁପମ । ଶ୍ୟେନ—କୃଷ୍ଣରୂପ ନୟନ (ଦୁହିଁଙ୍କରି) ପିଙ୍ଗିବାରେ—ଶିକାରକରିବାରେ । ମନରୂପ ପକ୍ଷୀକି । ଉଚ୍ଛନ୍ନ—ଉଦ୍ବିଗ୍ନ । ନଷ୍ଟରେ— ନାଟରେ । ତନମନଧନ ଦାନ—ତନ୍ମୟତା ବା ତନ୍ମନସ୍କତା ରୂପ ଧନ ବା ଦାନ—ଦେଇ, ମନରୂପା ଖରେ—ଶୀଘ୍ର ।

୪୨ । ଉତ୍ସାହସିନ୍ଧୁ—ଆନନ୍ଦରୂପ ସମୁଦ୍ର । ଉଚ୍ଛୁଳିଗଲା— ବଢ଼ିଗଲା । ଧୀର ଧୈର୍ଯ୍ୟ ସୃଷ୍ଟି—ବୁଦ୍ଧିର ଧୀରତାଯାକ । ବୁଡ଼ାଇଲା—ଲୋପ କଲା । କାମ ଦେବାର୍ଚ୍ଚନ ଦେବତା ବିଜୟ—କନ୍ଦର୍ପଙ୍କ ପୂଜା ଦେବତା ବିଜେ ହେବା । ଯହିଁ ମୋହ—ଯାହାକୁ ଦେଖିଲେ ମୋର ମୋହ ହୁଏ, ଏ କି ସେହି ତମାଳ ଗଛ ?

୪୩ । ଶ୍ୟାମଘନ—କଳା ମେଘ ଓ କୃଷ୍ଣ । ଚିତ୍ତଚାତକ—ଚିତ୍ତରୂପକ ଚାତକ ପକ୍ଷୀର । ତୋଷସ୍ଥାନ—ସନ୍ତୋଷ ପାଇ । କଳାଅଭିଳାଷୀ—କଳା ଜିନିଷରେ ବା ନାନା କଳାବିଦ୍ୟାରେ ଇଚ୍ଛାବତୀ । କଳାପଦ୍ମାବେଣୀ—କଳାପଦ୍ମରେ ଅଚ୍ଛନ୍ନବତୀ । ନୀଳାମ୍ବରେ—କଳା ଲୁଗାରେ । ସୁରସଦାୟୀ—ଉତ୍ତମ ରସ ସ୍ନେହଦାତା ।

୪୪ । ଉପଶମ କ୍ଲେଶ—କନ୍ଦର୍ପ ପୀଡ଼ା । ଦିବ୍ୟ ପାରିଜାତ—ସ୍ୱର୍ଗୀୟ କଳ୍ପଦ୍ରୁମଫୁଲ । କରେ—ହାତରେ । ଅନୁଅନେ— ପରସ୍ପର ମଧ୍ୟରେ ।

Digitized by srujanika@gmail.com

ଲଙ୍କ ବ୍ୟାଜ ଓଜ ଗାମ୍ଭୀର୍ଯ୍ୟରେ । ସ୍ମିତ ବିସ୍ଫୁରିତ ବିମ୍ବାଧରେ ।
କାନ୍ତକୁ ଚାହିଁ ନ ଚାହିଁ ମଣ୍ଡି ଚାହିଁ ଛନ୍ଦରେ ମନ୍ଦଗମନ କରେ ।
କେତେ ଅନା । ଭଙ୍ଗୀସଙ୍ଗୀ କରୁଅଛି ପ୍ରୀତସେନା । ୪୫ ।
ମର୍ଯ୍ୟାଦାକୁ ସ୍ନେହ ବଳିଗଲା । କୃଷ୍ଣଗଲେ ମାଳା ଦିଅଇଲା ।
ବଶ୍ୱକଲେ ହର ଅଙ୍ଗ କି କଣୋଶ୍ୱ ରପିଚଙ୍ଗସାରେ ଲଦ୍ର କଳ୍ପ ।
କବି ଚିନ୍ତା । ଚିନ୍ତାମଣିକି ଭେଟିଛି କଳ୍ପଲତା । ୪୬ ।
ସେହିକାଳେ ଦେବବାଳୀ ମିଳି । ଅଳୀସହ ଦେଲେ ହୁଳହୁଳି ।
ଜୟ ଶ୍ରୀରାଧିକେ ଜୟ ଗାନ୍ଧର୍ବିକେ ଜୟ ନାଗରେନ୍ଦ୍ର ଦେଲେ ବୋଲି ।
ବଡାଗନା ।। ପୁଷ୍ପବୃଷ୍ଟି କଲେ ଦିବ୍ୟ ବରାଙ୍ଗନା । ୪୭ ।
କୁଚ ସୁଧାକୁମ୍ଭ ବେନି ସେନି । ମାର ଅଗେ ଛଦ୍ମ କି ମୋହିନୀ ।
ଲକ୍ଷ୍ମୀ ନାରାୟଣ କି ବଳି ମଦନ ବିବାହଉତ୍ସବ ପରି ଯେଣି ।
ଲକ୍ଷ ନାହିଁ । ତାଙ୍କୁ ପଟାନ୍ତର ସିନା ଏହା ସେହି । ୪୮ ।
ମନମୀନ ମଗ୍ନ ଶୋଭାମୃତେ । ନେତ୍ରଚ୍ଛଦେ ଅସ୍ୱାଦନ ହିତେ ।
ଅନଙ୍ଗ ବିହ୍ୱଳ ସ୍ତମ୍ଭ କରିବାକୁ ଦେହ ବୁଝି ନାହିଁ ପ୍ରେମାମୃତେ ।
ପଲକିତ ।। ତା ରସପାନେଁ ଉତ୍କଳିତ ଜପମିତ । ୪୯ ।

---

୪୫ । ଲଙ୍କ—ଲଜ୍ଜା । ବ୍ୟାଜ—କପଟ । ଓଜ—ଟାଣପଣ । ଗାମ୍ଭୀର୍ଯ୍ୟ—ଗମ୍ଭୀରତା । ସ୍ମିତ—ମନ୍ଦହାସ । ବିସ୍ଫୁରିତ—ପ୍ରକାଶ ପାଇଲା । ବିମ୍ବାଧରେ—ବିମ୍ବ ସଦୃଶ ଓଷ୍ଠରେ । ଛନ୍ଦରେ—କପଟରେ । କେତେ ଅନାଭଙ୍ଗୀ—ଦୃଷ୍ଟି ବିଳାସ, ବା ନାନା ବିଳାସ, ପ୍ରୀତସେନା—ସ୍ନେହକଣାକୁ ସଙ୍ଗୀ କରୁଅଛି ।

୪୬ । ମର୍ଯ୍ୟାଦା—ଲଜ୍ଜାର ସୀମାକୁ । ସ୍ନେହ—ପ୍ରୀତି । ସ୍ନେହ କୁଳଧର୍ମ ରଖିଲା ନାହିଁ । କବି ଚିନ୍ତାକଲେ । ଚିନ୍ତାମଣିକ—ଅଭିଳାଷ ପୂରଣକାରୀ ମଣି-ବିଶେଷକୁ, ଶ୍ରୀକୃଷ୍ଣଙ୍କୁ; କଳ୍ପଲତା—ଇଚ୍ଛା ପୂରଣକାରିଣୀ ଲତା, ଶ୍ରୀରାଧା ।

୪୭ । ଦେବବାଳୀ—ଦେବ ସ୍ତ୍ରୀ ବା ଦେବକନ୍ୟା—ଗୋପୀ ରୂପରେ ଲୀଳାକାରିଣୀ । ଅଳୀ ସହ—ରାଧାଙ୍କ ସଖୀମାନଙ୍କ ସହିତ । ଦିବ୍ୟ ବରାଙ୍ଗନା—ସ୍ୱର୍ଗର ଉତ୍କୃଷ୍ଟ ସ୍ତ୍ରୀମାନେ ।

୪୮ । କୁଚ ସୁଧାକୁମ୍ଭ—ସ୍ତନରୂପକ ଅମୃତ ମାଠିଆ । ମାର—କନ୍ଦର୍ପ । ମୋହିନୀ—ବିଷ୍ଣୁଙ୍କ ମୋହିନୀ ଅବତାର ।

୪୯ । ମନମୀନ—ମନରୂପକ ମାଛ । ଶୋଭାମୃତେ—ଶୋଭାରୂପ ଜଳରେ । ନେତ୍ର—ଚକ୍ଷୁ । ଅସ୍ୱାଦନହିତେ—ସୁଖାନୁଭବ ପାଇଁ । ମୁଦେ

Digitized by srujanika@gmail.com

ପ୍ରେମୋତ୍କଣ୍ଠ ହୋଇ ମନଦନ୍ତୀ । ପଦ୍ମିନୀ ତ ଆକର୍ଷଣେ ମତ ।
ବିବେକ ମାହୁନ୍ତ ଲଜ୍ଜାଙ୍କୁଶବଳେ ବାରଣ କରିଥିବାର ରୀତ ।
ଲୋକାପେକ୍ଷା । ମହାତୁର ସଙ୍ଗେ ଅଟଇକ କକ୍ଷା । ୫୦ ।
କୃଷ୍ଣ ଅରୁଣଚରଣ ଦେଖି । ରାଧା ପଙ୍କଜାକ୍ଷୀ ମହାସୁଖୀ ।
କୃଷ୍ଣାନନ୍ଦସିନ୍ଧୁ ଧନୀ ମୁଖଇନ୍ଦୁ ଦେଖି ଉଚ୍ଛୁଳିଲା ପରା ଲକ୍ଷି ।
ନାନା ଭଙ୍ଗୀ । ମନୋହର କଲ୍ଲୋଳ କି ହେଲା ସଙ୍ଗୀ । ୫୧ ।
ଆଦ୍ୟେ କି ତପସ୍ୟା କରିଥିଲି । ସେ ପୁଣ୍ୟରୁ ଆଜ ଧନ୍ୟ ହେଲି ।
କିଶୋରୀରତନ ଶ୍ରୀନନ୍ଦନନ୍ଦନ ନୂତନ ମିଳନ କରାଇଲି ।
ଧୀରେ ଭେନ । ଦୀନ ଅଭିମନ୍ୟୁ ସଦା ପରାଧୀନ । ୫୨ ।

---

—ଆନନ୍ଦିତ ହୁଏ ବା ବୃଦ୍ଧି ହୁଏ । ଆନନ୍ଦ ବିହ୍ୱଳ—ଆନନ୍ଦରେ ବିହ୍ୱଳ ହେବା । ସ୍ତମ୍ଭ—ଜଡ, ନିଶ୍ଚେଷ୍ଟ । ପ୍ରେମାୟତ୍ତେ—ପ୍ରେମର ଅଧୀନ ହେତୁ । ଦେହ ବୃତ୍ତି—ଶରୀର ଜ୍ଞାନ ଲୋପ ହେଲା । ପୁଲକିତ—ରୋମାଞ୍ଚିତ ବା ଆନନ୍ଦପୂର୍ଣ୍ଣିତ । ରସ ପାନ୍ତି—ରସବର୍ଣ୍ଣାବଳି । ଉପମିତ—ସଦୃଶ ।

୫୦ । ପ୍ରେମୋତ୍କଣ୍ଠ—ପ୍ରେମୋନ୍ମତ୍ତ । ମନଦନ୍ତୀ—ମନରୂପ ହସ୍ତୀ । ପଦ୍ମିନୀକି—ପଦ୍ମିନୀ ଜାତୀୟ ଶ୍ରୀରାଧା ରୂପିଣୀ ପଦ୍ମଲତା । ବିବେକ ମାହୁନ୍ତ—ବିଚାର ଶକ୍ତିରୂପ ହସ୍ତୀଚାଳକ । ଲଜ୍ଜାଙ୍କୁଶ ବଳେ—ଲଜ୍ଜା ରୂପ ଅଙ୍କୁଶ ଘାତରେ । ବାରଣ—ନିବାରଣ । ରୀତ—ପ୍ରକାର । ଲୋକାପେକ୍ଷା—ଲୋକ ମର୍ଯ୍ୟାଦାକୁ ଅପେକ୍ଷା କରିବା । ମହାତୁର—ଅତି ଉଦ୍ବେଗ । କକ୍ଷା—ବିବାଦ ।

୫୧ । ଅରୁଣଚରଣ—ନାଲି ପାଦ । ପଙ୍କଜାକ୍ଷୀ—ପଦ୍ମନେତ୍ରା । କୃଷ୍ଣାନନ୍ଦସିନ୍ଧୁ—କୃଷ୍ଣଙ୍କ ଆନନ୍ଦରୂପ ସମୁଦ୍ର ଦେଖି । ଧନୀ ମୁଖଇନ୍ଦୁ—ରାଧାଙ୍କ ମୁଖଚନ୍ଦ୍ର । କଲ୍ଲୋଳ—ତରଙ୍ଗ ।

୫୨ । ଧୀରେ—ପଣ୍ଡିତମାନେ । ଦୀନ—ଗରିବ । ପରାଧୀନ—କୃଷ୍ଣାଧୀନ ।

## ତୃତୀୟ ଖଣ୍ଡ

ସମାପ୍ତ

ମୁଦ୍ରାକର—ମହମ୍ମଦ ଅବ୍ଦୁଲ ହାଦ, ଲକ୍ଷ୍ମୀନାରାୟଣ ପ୍ରେସ, କଟକ—୧୯୫୦

Digitized by srujanika@gmail.com